# ଡକ୍ଟର ମାୟାଧର ମାନସିଂହଙ୍କ କାବ୍ୟକୀର୍ତ୍ତି



ଶୁଣିବି ଯେବେ ପ୍ରିୟତମା ମୋର
ପ୍ରଣୟୀ ତବ ଜଗତେ ନାହିଁ
ଅଣିବି ମୋର ତନ୍ତ୍ରୀ ଧାରଣା
ଦେବ ରେ ଚାଲି ଦେବୁ ନାହିଁ
ପାରିବ ଯଦି ଭୁଣ୍ଡି ଏତେ
ପଦ୍ମପାଦ ଗୁଳିକା ପ୍ରାନ୍ତ
ଜୀବନ ପୁଣି ଲଭିବ ସଖୀ
ନିମ୍ନୁ ମୁଁ ମରଣ ଚାଲେ ।

## ଡକ୍ଟର ମନୋରମା ବିଶ୍ୱାଳ ମହାପାତ୍ର



ଡକ୍ଟର ଶ୍ରୀମତୀ ମନୋରମା ବିଶ୍ୱାଳ ମହାପାତ୍ର ଓଡ଼ିଆ ଭାଷା ଏବଂ ସାହିତ୍ୟର ଏକ ଶକ୍ତିଶାଳୀ ପ୍ରତିଭା । ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ହେବାପରେ ଶ୍ରୀମତୀ ମନୋରମା ୧୯୭୧ରୁ ଓଡ଼ିଶାର ବିଭିନ୍ନ ସରକାରୀ କଲେଜରେ ଅଧ୍ୟାପନା କରିଆସୁଛନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟରୁ ସେ ପି.ଏଚ.ଡି. ଡିଗ୍ରୀ ମଧ୍ୟ ହାସଲ କରିଛନ୍ତି । ଅଦ୍ୟାବଧି ତାଙ୍କର ଆଠଖଣ୍ଡ କବିତା ପୁସ୍ତକ ପ୍ରକାଶିତ ହୋଇଛି । ବିଶଲ୍ୟ, ଭ୍ରୂଣତା, ଫୁଲଫୁଟା ମୁହୂର୍ତ୍ତ, ସ୍ୱାତୀ ଲଗ୍ନ, ସ୍ମୃତି, ଶ୍ରାବଣ ଓ ପ୍ରତିବିମ୍ବ, କିଛୁ ରାତିର ସୂର୍ଯ୍ୟ ଏବଂ ଏକଲା ନଈର ଗୀତ । ଏହା ବ୍ୟତୀତ ତାଙ୍କର ଦୁଇଖଣ୍ଡ ଶିଶୁ ସାହିତ୍ୟ ମଧ୍ୟ ପ୍ରକାଶିତ । ସମ୍ପ୍ରତି ସେ ରମାଦେବୀ ମହିଳା ମହାବିଦ୍ୟାଳୟ, ଭୁବନେଶ୍ୱରରେ ପ୍ରାଧ୍ୟାପିକା ଅଛନ୍ତି ।

# ମାନସିଂହଙ୍କ କାବ୍ୟକୀର୍ତ୍ତି

ଅଧ୍ୟାପିକା ଡକ୍ଟର ମନୋରମା ବିଶ୍ୱାଳ ମହାପାତ୍ର



ଓଡ଼ିଶା ବୁକ୍ ଷ୍ଟୋର

# ମାନସିଂହଙ୍କ କାବ୍ୟକୀର୍ତ୍ତି

ଲେଖିକା :
**ପ୍ରାଧ୍ୟାପିକା ଡକ୍ଟର ମନୋରମା ବିଶ୍ୱାଳ ମହାପାତ୍ର**
ପ୍ରୀତମପୁରୀ, ୧୨୫, ଆଚାର୍ଯ୍ୟବିହାର ଭୁବନେଶ୍ୱର-୧୩

ପ୍ରକାଶକ :
**ଶ୍ରୀ ଗୋବିନ୍ଦ ଚରଣ ପାତ୍ର**
**ଓଡ଼ିଶା ବୁକ୍ ଷ୍ଟୋର**
ବିନୋଦବିହାରୀ, କଟକ-୭୫୩ ୦୦୨
ପ୍ରଚ୍ଛଦ :
ଶ୍ରୀ ଅସୀତ୍ ମୁଖାର୍ଜୀ
ପ୍ରଥମ ପ୍ରକାଶ :
ବିଷୁବ ସଂକ୍ରାନ୍ତି—୧୯୯୨
ମୁଦ୍ରଣ .
**ଗୀତାଞ୍ଜଳି ପ୍ରେସ**
କଟକ-୨
**ମୂଲ୍ୟ : ପଚାଶ ଟଙ୍କା ମାତ୍ର**

**MANSING'S KAVYAKIRTI**

**Dr. Manorama Biswal Mohapatra**
"PRITAMPURI", 125 Acharya Vihar
Bhubaneswar-13, Phone-53113

Published by :
**Sri Govinda Charan Patra**
**ORISSA BOOK STORE**
Binod Behari, Cuttack-753 002
Cover design :
Asit Mukherjee
1st. Publication :
Visuva Sankranti—1992

Printed at :
**Gitanjali Press**
Cuttack-2
Price : **Rs. 50-00**

# ସ୍ୱୀକୃତି

ସାହିତ୍ୟର ବିଭିନ୍ନ ବିଭାଗ ମଧ୍ୟରେ କବିତା ସର୍ବାଧିକ ଆକର୍ଷଣୀୟ । ବିଶ୍ୱଭାରତୀରେ ଏମ୍.ଏ. ପଢ଼ିଲାବେଳେ ଆଧୁନିକ କବିତା ଥିଲା ମୋର ବିଶେଷ ପତ୍ର । ଏହା ବ୍ୟତୀତ ମାନସିଂହ କବିତା ପ୍ରତି ମୋର ଆଗ୍ରହ ଛାତ୍ର ଜୀବନରୁ ହିଁ ଆରମ୍ଭ ହୋଇଥିଲା ।

ମୋର ଗବେଷଣା କାର୍ଯ୍ୟକୁ ତ୍ୱରାନ୍ୱିତ କରିଛନ୍ତି ମୋର ଗାଇଡ଼୍ (guide) ସାହିତ୍ୟାଲୋଚକ, ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ପ୍ରଫେସର ଡଃ ନିତ୍ୟାନନ୍ଦ ଶତପଥୀ । ଆଜି ନିବନ୍ଧଟି ଶେଷ ହେବାର ଅବସରରେ ତାଙ୍କୁ ଗଭୀର କୃତଜ୍ଞତା ଜଣାଉଛି ।

ଗବେଷଣା କାର୍ଯ୍ୟରେ ଶ୍ରୀମତୀ ହେମଲତା ମାନସିଂହ, ଡକ୍ଟର ନଟବର ସାମନ୍ତରାୟ, କବି ରାଧାମୋହନ ଗଡ଼ନାୟକ, କବି ଦୁର୍ଗାଚରଣ କୁଅଁର, ପ୍ରଫେସର ଡକ୍ଟର ଖଗେଶ୍ୱର ମହାପାତ୍ର, ଡଃ କୃଷ୍ଣଚରଣ ବେହେରା, ଡକ୍ଟର ନଗେନ୍ଦ୍ରନାଥ ପ୍ରଧାନ ଏବଂ ଡକ୍ଟର ଅସୀତ୍ କବିଙ୍କର ଉତ୍ସାହ ଓ ଉପଦେଶ ଏହି କଷ୍ଟସାଧ୍ୟ କାର୍ଯ୍ୟରେ ଅଗ୍ରସର ହେବା ନିମନ୍ତେ ମୋତେ ଯଥେଷ୍ଟ ପ୍ରେରଣା ଯୋଗାଇଛି । ସୂଚିତ ବ୍ୟକ୍ତିମାନଙ୍କର ଉଦାର ବୌଦ୍ଧିକ ସହାୟତା ଯୋଗୁଁ ମୁଁ ସେମାନଙ୍କ ନିକଟରେ ଚିରକୃତଜ୍ଞ ।

ନିବନ୍ଧ ରଚନାକାଳରେ ଆବଶ୍ୟକତାନୁଯାୟୀ ବିଭିନ୍ନ ସମୟରେ ମୋତେ ଉତ୍କଳ ବିଶ୍ୱବିଦ୍ୟାଳୟ ପାଠାଗାର, ଶାନ୍ତିନିକେତନସ୍ଥିତ ଓଡ଼ିଆ ବିଭାଗ ପାଠାଗାର, ଓଡ଼ିଶା ଷ୍ଟେଟ୍ ଆର୍କାଇଭସ୍, ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର, ରିଜିଓନାଲ କଲେଜ ଅଫ୍ ଏଡୁକେଶନ ଲାଇବ୍ରେରୀ, ବି. ଜେ. ବି. କଲେଜ ଲାଇବ୍ରେରୀ, ନେସ୍ନାଲ ଲାଇବ୍ରେରୀ କଲିକତାର ସାହାଯ୍ୟ ନେବାକୁ ପଡ଼ିଛି । ଉକ୍ତ ଅନୁଷ୍ଠାନଗୁଡ଼ିକର କର୍ମକର୍ତ୍ତା ଓ ଗ୍ରନ୍ଥାଗାର ପରିଚାଳକମାନେ ସେମାନଙ୍କର ସାଗ୍ରହ ସହଯୋଗ ନିମନ୍ତେ ମୋର ଧନ୍ୟବାଦାର୍ହ ।

ସର୍ବୋପରି ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ଏବଂ ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗ ଏବଂ ଶିକ୍ଷା ନିର୍ଦ୍ଦେଶାଳୟ ଗବେଷଣା ବୃତ୍ତିସହ ଆବଶ୍ୟକୀୟ ଅବକାଶ ପ୍ରଦାନ କରି ମୋତେ ଅନୁଗୃହୀତ କରିଛନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗ ଏହି ବୃତ୍ତିର ଉପଯୋଗ ନିମନ୍ତେ ମୋତେ ସୁଯୋଗ ଦେଇଥିବାରୁ ମୁଁ ଏହି ଅବସରରେ ସାଧୁବାଦ ଜଣାଉଛି ।

**ମନୋରମା ମହାପାତ୍ର**

ବିଷୁବ ସଂକ୍ରାନ୍ତି
୧୪ ଅପ୍ରେଲ, ୧୯୯୨

## ଲେଖିକାଙ୍କର ଅନ୍ୟାନ୍ୟ ସୃଷ୍ଟି

**କବିତା**

* ଜଣଲସ୍ବ — ୧୯୬୩
* ବ୍ରତଗ୍ନା — ୧୯୬୭
* ଫୁଲଫୁଟା ମୁହୂର୍ତ୍ତି — ୧୯୬୮
* ସ୍ମୃତି, ଶ୍ରାବଣ ଓ ପ୍ରତିବିମ୍ବ — ୧୯୭୮
* ସ୍ୱାତୀଲଗ୍ନ — ୧୯୭୯
* ଜହ୍ନରାତିର ମୁହଁ — ୧୯୮୧
* କେତେ କଥା କେତେ ଗୀତ (ଶିଶୁ ସାହିତ୍ୟ) — ୧୯୮୨
* ଆମେସବୁ ଟିକିଫୁଲ (ଶିଶୁ ସାହିତ୍ୟ) — ୧୯୮୭
* ସ୍ୱାତୀ ଲଗ୍ନ (ହିନ୍ଦି ରୂପାନ୍ତର) — ୧୯୮୮
* ଏକଲା ନଈର ଗୀତ — ୧୯୯୦
* ଥରେ ଖାଲି ଡାକଦେଲେ (ଯନ୍ତ୍ରସ୍ଥ)
* ମେଘହଂସେ ଆବାର ଫିରବେ (ବଙ୍ଗଳା ରୂପାନ୍ତର) (ଯନ୍ତ୍ରସ୍ଥ)

**ପ୍ରାପ୍ତିସ୍ଥାନ :**

* ଓଡ଼ିଶା ବୁକ୍ ଷ୍ଟୋର୍, କଟକ ।
* ବିଦ୍ୟାପୁରୀ, କଟକ ।
* ପ୍ରାଚୀ ପ୍ରକାଶନ, ଏଲ୍-୩ ଲାଜପତ୍ ନଗର-୩, ନୂଆଦିଲ୍ଲୀ-୨୪ ।
* ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ ।
* ପ୍ରୀତମ୍‌ପୁରୀ, ୧୨୫ ଆଚାର୍ଯ୍ୟ ବିହାର, ଭୁବନେଶ୍ୱର-୧୩ ।

# ମୁଖବନ୍ଧ

କବି ମାନସିଂହ ଓଡ଼ିଆ ସାହିତ୍ୟର ଏକ ଉଜ୍ଜ୍ୱଳ ପ୍ରତିଭା । ତାଙ୍କ ପ୍ରତିଭା ବହୁମୁଖୀ । ତାଙ୍କ କାବ୍ୟ କବିତା ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ନୂତନ ଆଲୋଡ଼ନ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ସର୍ବଭାରତୀୟ ସ୍ତରରେ ମଧ୍ୟ ସ୍ୱୀକୃତି ଲାଭ କରିଛି । ସବୁଜ ଗୋଷ୍ଠୀର ସମସାମୟିକଭାବେ କବି ମାନସିଂହ ସାହିତ୍ୟ ସୃଷ୍ଟି କରିଥିଲେ ହେଁ ସ୍ୱକୀୟ ମୌଳିକତା ଓ ନିଜସ୍ୱ ବିଗ୍ରହଧାରାରେ ତାଙ୍କ ସୃଷ୍ଟିର ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୋଇଥାଏ । ତାଙ୍କ ସୃଷ୍ଟିଗୁଡ଼ିକରେ ପ୍ରେମ, ସୌନ୍ଦର୍ଯ୍ୟ ଚେତନା, ପ୍ରକୃତିପ୍ରୀତି, ଦେଶପ୍ରୀତି ଆଦି ବିଷୟବସ୍ତୁଗୁଡ଼ିକ ପ୍ରଚୁର ରୋମାଣ୍ଟିକ୍ ପ୍ରବଣତାରେ ପରିପୃକ୍ତ । ଏହି ରୋମାଣ୍ଟିକ୍ ପ୍ରବଣତା କବି ପ୍ରାଣର ନିଜସ୍ୱ ଦୃଷ୍ଟିଭଙ୍ଗୀ ହେଲେ ମଧ୍ୟ ପାଶ୍ଚାତ୍ୟ ରୋମାଣ୍ଟିକ୍ କବିମାନଙ୍କ ଅନୁଭୂତି ଓ ଅଭିଜ୍ଞତା ଦ୍ୱାରା ଏହା ପ୍ରଭାବିତ ବୋଲି କହିବାକୁ ହେବ । ଏ ସମ୍ପର୍କରେ କବି ନିଜେ ସ୍ୱୀକାର କରିଛନ୍ତି—"କାବ୍ୟଯୋଗ୍ୟ ଅନୁଭୂତି ଲେଖକର ଜୀବନରେ ଘଟିଥିଲେ ହେଁ ଇଂରେଜ କବିଙ୍କ ସଙ୍ଗେ ପରିଚୟ ଘଟି ନ ଥିଲେ ସେ ଅନୁଭୂତି ଏ ପ୍ରକାର ଆତ୍ମପ୍ରକାଶ କରି ନ ଥାନ୍ତା । ଆମ ସାହିତ୍ୟରେ ପ୍ରେମ କବିତାର ଅରଣ୍ୟ ରହିଛି କିନ୍ତୁ ସେଥିରେ ବିଚିତ୍ରତା ନାହିଁ ; ସେ ଜଙ୍ଗଲ ଯେପରି ଗୋଟିଏ ଜଙ୍ଗଲ । କିନ୍ତୁ ଇଂରେଜୀ ସାହିତ୍ୟ ପ୍ରତ୍ୟେକ କବିର ବ୍ୟକ୍ତିଗତ ବିଭିନ୍ନ ଅଭିଜ୍ଞତାରେ ଶବଳିତ ।" କବି ମାନସିଂହଙ୍କ ପୂର୍ବରୁ ପ୍ରୀତି ସାହିତ୍ୟର ପରମ୍ପରା ଓଡ଼ିଆ ସାହିତ୍ୟରେ ଅବଶ୍ୟ ରହିଛି ; କିନ୍ତୁ ମାନସିଂହଙ୍କ ଗୀତି ଗୀତି କବିତାରେ ପ୍ରୀତିର ଗଭୀରତା ଏବଂ ପ୍ରାଣପ୍ରାଚୁର୍ଯ୍ୟ ଅନ୍ୟତ୍ର ବିରଳ । "ପରକୀୟାରୁ ସ୍ୱକୀୟା ବାଛିଦେଇ କ୍ରମେ ଏକ ଇନ୍ଦ୍ରିୟାତୀତର ଅନୁଚିନ୍ତାରେ ଏହା ଯେତିକି ଦୈହିକ ସେତିକି ଊର୍ଦ୍ଧ୍ୱଗ । ଓଡ଼ିଆ କାବ୍ୟ କବିତାର ଇତିହାସରେ ମାନସିଂହ ଥିଲେ ରୋମାଣ୍ଟିକ୍ ଭାବଶୈଳୀର ଅଭ୍ୟୁତ୍ଥାନପନ୍ଥୀ ।" ରୂପ ଓ ଅରୂପ, ଇନ୍ଦ୍ରିୟ ଓ ଅତୀନ୍ଦ୍ରିୟର ସୀମା ମଧ୍ୟରେ ଶିଳ୍ପସଙ୍ଗତ ସାମଞ୍ଜସ୍ୟ ରକ୍ଷାକରି ପ୍ରେମପ୍ରତି ସ୍ୱୀୟ ଦୃଷ୍ଟିଭଙ୍ଗୀ କବି ମାନସିଂହ ଯେପରି ପ୍ରକାଶ କରିଛନ୍ତି ; ସେ ଦୃଷ୍ଟିଭଙ୍ଗୀ ତାଙ୍କ ସମସାମୟିକ ଅନ୍ୟାନ୍ୟ କବିଙ୍କ ଶିଳ୍ପ ସୃଷ୍ଟିରେ ପରିଲକ୍ଷିତ ହେଲେହେଁ ତାହା ବିରଳ । ସମାଲୋଚକ ଶ୍ରୀ ଚିନ୍ତାମଣି ବେହେରାଙ୍କ ମତ ଏ ସମ୍ପର୍କରେ ଅଧିକ ପ୍ରଣିଧାନଯୋଗ୍ୟ । "ପ୍ରେମର ଇନ୍ଦ୍ରିୟ ଓ ଅତୀନ୍ଦ୍ରିୟ ସ୍ୱରୂପର ଉପଲବ୍ଧି ଏବଂ ତାର ଶିଳ୍ପସଙ୍ଗତ ଅଭିବ୍ୟକ୍ତିରେ ହସ୍ତ ନିପୁଣତା ଅର୍ଜନ କରିବାରେ ମୋର

ମନେହୁଏ ବୈଷ୍ଣବ ଯୁଗର କବି ଅଭିମନ୍ୟୁ ଓ ଗୋପାଳକୃଷ୍ଣଙ୍କୁ ବାଦ୍‌ଦେଲେ କବି ମାନସିଂହ ହିଁ ଅଦ୍ୱିତୀୟ ଶିଳ୍ପୀ ; ଯେ କି ରୂପ ଅରୂପର ମିଳନରେ ମନ୍ତ୍ରଙ୍କ ପୁରୋହିତ ଭଳି ଉଭୟ ହସ୍ତରେ ମଙ୍ଗଳସୂତ୍ର ଯଥାଯଥ ଭାବରେ ବାନ୍ଧି ନିଜ ସିଦ୍ଧ-ହସ୍ତତାର ପରିଚୟ ପ୍ରଦାନ କରିଛନ୍ତି ।"

ପାଶ୍ଚାତ୍ୟ ଦେଶର କୌଣସି ଏକ ଅଖ୍ୟାତ ଅଞ୍ଚଳରେ ଯଦି କବି ମାନସିଂହ ଜନ୍ମଗ୍ରହଣ କରିଥାଆନ୍ତେ ତାଙ୍କର ସମସ୍ତ କାବ୍ୟକୃତି ଉପରେ ବହୁ ସମାଲୋଚକ ଏକାଧିକ ପୁସ୍ତକ ରଚନା କରିଥାଆନ୍ତେ—କିନ୍ତୁ ଆମ ଦେଶରେ କବି ମାନସିଂହ ଯଦିଓ ରୋମାଣ୍ଟିକ୍ କବିତାର ପରମ୍ପରାର ଅଭ୍ୟୁତ୍‌ଥାନପନ୍ଥୀ ଭାବରେ ଚିହ୍ନିତ ; ତଥାପି ତାଙ୍କ ସାହିତ୍ୟକୃତି ଉପରେ ମାତ୍ର ତିନୋଟି ପୁସ୍ତକ ସଙ୍କଳନ ଏଯାବତ୍ ପ୍ରକାଶିତ ହୋଇଛି ।

ତାଙ୍କ ସାହିତ୍ୟ ପ୍ରତିଭାର ଉତ୍କର୍ଷ ଓ ଅପକର୍ଷ ଦର୍ଶାଇ ସାମୟିକ ପତ୍ର-ପତ୍ରିକାରେ ପ୍ରକାଶିତ ଅଳ୍ପ କେତୋଟି ଆଲୋଚନା ଆଖିରେ ପଡ଼େ । ମାନସିଂହଙ୍କ ମୃତ୍ୟୁ ପରେ ଏକାମ୍ର ଥିଏଟର ଦ୍ୱାରା 'ମାନସିଂହ ସ୍ମରଣିକା' (ଅକ୍ଟୋବର ୧୯୭୭) ପ୍ରକାଶ ପାଇଥିଲା । ସେଥିରେ ମାନସିଂହଙ୍କର ସ୍ମୃତିଚାରଣ ବ୍ୟତୀତ ଅନ୍ୟ କୌଣସି ଉପାଦେୟ ଆଲୋଚନା ନ ଥିଲା । ୧୯୭୮ରେ ଡ. ରାଧାଶ୍ୟାମ ବେହେରାଙ୍କ ଦ୍ୱାରା ସଙ୍କଳିତ ହୋଇ 'ମାନସିଂହ ସୃଷ୍ଟି ସମୀକ୍ଷା' ଏବଂ ୧୯୭୯ରେ ଓଡ଼ିଶା ପୂଜ୍ୟପୂଜା ସଂସଦ ଆନୁକୂଲ୍ୟରେ ଡ. ନିତ୍ୟାନନ୍ଦ ଶତପଥୀଙ୍କ ସମ୍ପାଦନାରେ ମାନସିଂହ ପରିକ୍ରମା ପ୍ରକାଶିତ ହେଲା । ଅଧ୍ୟାପକ ଶ୍ରୀଚରଣ ମହାନ୍ତିଙ୍କର ମଧ୍ୟ ଏ କ୍ଷେତ୍ରରେ ଆଂଶିକ ପଦକ୍ଷେପ ଅଭିନନ୍ଦନୀୟ । ତାଙ୍କ ରଚିତ ପୁସ୍ତକ 'ମାନସିଂହ ମାନସ' (୧୯୮୩) । ଏହା ହିଁ ଥିଲା ଯଥାର୍ଥରେ କବି ମାନସିଂହଙ୍କ ସମ୍ପର୍କରେ କେତୋଟି ଆଲୋଚନା ଗ୍ରନ୍ଥ ମାତ୍ର ।

ମାନସିଂହ ସାହିତ୍ୟ ସମ୍ପର୍କରେ ମୋର ଅନେକ ଦିନର ଆଗ୍ରହ ଏ ଗବେଷଣାର ମୂଳ ପ୍ରେରଣା କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ନିବନ୍ଧର ପ୍ରସ୍ତୁତି ନିମନ୍ତେ କବିପତ୍ନୀ ହେମଲତା ମାନସିଂହଙ୍କ ସହିତ ସାକ୍ଷାତ କରି ବହୁ ଉପାଦାନ ସଂଗ୍ରହ କରିଛି । ମାନସିଂହଙ୍କ ସମଗ୍ର ସାହିତ୍ୟକୃତି ଉପରେ ସନ୍ଦର୍ଭ ନ ଲେଖି ତାଙ୍କର କାବ୍ୟ କବିତା ଉପରେ ମୋର ଗବେଷଣା ଆଧାରିତ । ଆଲୋଚନାର ସୁବିଧା ନିମନ୍ତେ ସୂଚିତ ସନ୍ଦର୍ଭଟି କେତୋଟି ପରିଚ୍ଛେଦରେ ବିଭକ୍ତ ।

ପ୍ରଥମ ପରିଚ୍ଛେଦରେ କବି ମାନସିଂହଙ୍କର ଆବିର୍ଭାବ ଏବଂ ପ୍ରାକ୍ ଓ ସମକାଳୀନ ସାହିତ୍ୟିକ ପରିବେଶ ସମ୍ପର୍କରେ ସୂଚନା ଦେଇଛି । ଏ ସନ୍ଦର୍ଭରେ

ତତ୍କାଳୀନ ଓଡ଼ିଆ ସାହିତ୍ୟରେ ଆଧୁନିକତାର ଅଭ୍ୟୁଦୟ ପରି କିପରି ଭାବରେ ଘଟିଥିଲା ଏବଂ ପ୍ରାକ୍ ସବୁଜ ଜାତୀୟତାବାଦୀ ଚେତନା, ମାନବବାଦୀ ଚେତନା, ରୋମାଣ୍ଟିକ୍ ଚେତନା, ଆଧ୍ୟାତ୍ମିକ ଚେତନା ଏବଂ ଇନ୍ଦ୍ରିୟୋତ୍ତର ଅନୁଭବ ମାନସିଂହ ଚେତନାର ପୃଷ୍ଠଭୂମି ଭାବରେ ଦେଖାଦେଇଛି, ତାହା ଦର୍ଶାଇବା ସଙ୍ଗେ ସଙ୍ଗେ ତତ୍କାଳୀନ କବିତାର ଆଙ୍ଗିକ ବିଭବ ସମ୍ପର୍କରେ ମଧ୍ୟ ଆଲୋକପାତ କରାଯାଇଛି । ଓଡ଼ିଆ ସବୁଜ ସାହିତ୍ୟ ସହିତ ବଙ୍ଗୀୟ କଲ୍ଲୋଲଯୁଗର ସୂଚନା କ୍ରମେ 'ନବଯୁଗ ସାହିତ୍ୟ ସଂସଦ ମାଧ୍ୟମରେ ପ୍ରଗତିବାଦୀ ଆନ୍ଦୋଳନର ଆବିର୍ଭାବ ସମ୍ପର୍କରେ ଏହି ପର୍ଯ୍ୟାୟରେ ସୂଚନା ଦିଆଯାଇଛି ।

ଏହି ପ୍ରବନ୍ଧର ଦ୍ୱିତୀୟ ପରିଚ୍ଛେଦରେ କବି ମାନସିଂହଙ୍କ କାବ୍ୟକବିତାର ସଂକ୍ଷିପ୍ତ ପରିକ୍ରମା କରାଯାଇଛି । କବି ମାନସିଂହଙ୍କ କାବ୍ୟକୃତିସମୂହର ମୂଲ୍ୟାୟନ ହେଉଛି ଏହି ଅଧ୍ୟାୟର ଅନ୍ୟତମ ଲକ୍ଷ୍ୟ । ମାନସିଂହଙ୍କ ପ୍ରାରମ୍ଭିକ କାବ୍ୟ-ଚେତନାର ନୂତନ ଚିତ୍ରଲିପି ଅଙ୍କିତ ହୋଇଛି କୋଣାର୍କ କାବ୍ୟରେ । କବି ମାନସିଂହଙ୍କ ଜାତୀୟ ଚେତନା କିପରି ଭାବରେ 'କୋଣାର୍କ'ରୁ ଆରମ୍ଭ ହୋଇ 'ସାଧବ ଝିଅ' ଏବଂ 'କମଳାୟନ'ରେ ବିକଶିତ ହୋଇଛି ; ତାହା ଏଥିରେ ପର୍ଯ୍ୟାଲୋଚିତ । କବି ମାନସିଂହଙ୍କ ଅନ୍ୟାନ୍ୟ କାବ୍ୟ 'ଜେମା', 'ଉପେକ୍ଷିତା', 'ଶୁଭଦୃଷ୍ଟି', 'କିଙ୍କିଣୀ'ର ମଧ୍ୟ ଆଲୋଚନା ହୋଇଛି । ମାନସିଂହଙ୍କ କବିତା ଗ୍ରନ୍ଥ ମଧ୍ୟରେ ସେଦିନର କବିତା, ଧୂପ, ହେମଶସ୍ୟ, ହେମପୁଷ୍ପ, ବାପୁତର୍ପଣ, ଅକ୍ଷତ, ମାଟିବାଣୀ, ଜୀବନଚିତା, କୃଷ୍ଣ, ସିନ୍ଧୁ ଓ ବିନ୍ଦୁ, ସ୍ୱରାଜ୍ୟାଶ୍ରମ, କିଶୋର କବିତା ଏବଂ ଗୀତରେଣୁ ଇତ୍ୟାଦିର ବିମର୍ଶନା ମଧ୍ୟ ଏ ପରିଚ୍ଛେଦର ଆଲୋଚନାର ବିଷୟ । ମାନସିଂହଙ୍କ କାବ୍ୟକୃତିରେ ରବୀନ୍ଦ୍ରନାଥଙ୍କ କାବ୍ୟର ପ୍ରଭାବ ସନ୍ଦର୍ଭରେ ଆଂଶିକ ଭାବରେ ଆଲୋଚିତ ହୋଇଛି । ପରବର୍ତ୍ତୀ ପରିଚ୍ଛେଦରେ ଏହା ଅଧିକ ପ୍ରାଞ୍ଜଳ ଭାବରେ ଉପସ୍ଥାପିତ ହୋଇଅଛି ।

ମାନସିଂହ କବିତାର ରୋମାଣ୍ଟିକ୍ ଚେତନା ଏହି ତୃତୀୟ ପରିଚ୍ଛେଦରେ ଆଲୋଚିତ ହୋଇଛି । ତାଙ୍କ କବିତାରେ ରୋମାଣ୍ଟିକ୍ ଚେତନାକୁ ଜାତୀୟତା-ବୋଧ, ପ୍ରଣୟଚେତନା, ପ୍ରକୃତିପ୍ରାଣତା ଏବଂ ରୂପପ୍ରାଣତା ଆଦି ବିଭାବଗୁଡ଼ିକ କିପରି ଭାବରେ ଆଚ୍ଛନ୍ନ କରିଛି ; ତାହା ଏହି ପରିପ୍ରେକ୍ଷିରେ ଆଲୋଚନା କରାଯାଇଛି । ରବୀନ୍ଦ୍ରନାଥଙ୍କ ଅମର୍ତ୍ତ୍ୟାନୁଭୂତି ସହିତ ମାନସିଂହଙ୍କ ଅମର୍ତ୍ତ୍ୟାନୁ-ଭୂତିର ଏକ ତୁଳନାତ୍ମକ ଆଲୋଚନା ମଧ୍ୟ ଏଥିରେ ସ୍ଥାନିତ ହୋଇଛି । ଇନ୍ଦ୍ରିୟୋତ୍ତର ଭାବନାର ଏକ ମାର୍ମିକ ବିଶ୍ଳେଷଣ ସହିତ କବିପ୍ରାଣର ସମ୍ପୂର୍ଣ୍ଣ କିର୍ଯ୍ୟାସ ଏଥିରେ ବିଶ୍ଳେଷିତ ହୋଇଛି ।

ଚତୁର୍ଥ ପରିଚ୍ଛେଦରେ ମାନସିଂହଙ୍କର ସମସ୍ତ ଗୀତିନାଟ୍ୟର ଏକ ସ୍ଥୂଳ ଆଲୋଚନା କରାଯାଇଛି । ଏ ପ୍ରସଙ୍ଗରେ ଓଡ଼ିଆ ନାଟକର ପୂର୍ବାବସ୍ଥା, ଗୀତିନାଟ୍ୟ ଓ ଯାତ୍ରାର ଇତିହାସ ସହିତ ମାନସିଂହଙ୍କ ଗୀତିନାଟ୍ୟର ଆଲୋଚନା ଅନୁଧ୍ୟାନର ବିଷୟ । ରବୀନ୍ଦ୍ରନାଥଙ୍କ ଗୀତିନାଟ୍ୟର ପ୍ରଭାବ ମାନସିଂହଙ୍କୁ କେତେ ଭାବରେ ପ୍ରଭାବିତ କରିଛି, ତାହା ମଧ୍ୟ ଆଲୋଚନାର ବିଷୟ ।

କବି ମାନସିଂହଙ୍କୁ ପ୍ରଗତିବାଦୀ କବି ଭାବରେ ଚିହ୍ନିତ କରି ମୁଁ ଏହି ପଞ୍ଚମ ପରିଚ୍ଛେଦଟି ଆରମ୍ଭ କରିଛି । ଏଥିରେ 'କମଳାୟନ' କାବ୍ୟର ସମ୍ପୂର୍ଣ୍ଣ ପର୍ଯ୍ୟାଲୋଚନା କରାଯାଇଛି । 'କମଳାୟନ' କାବ୍ୟରେ ମାନସିଂହଙ୍କ ପ୍ରଗତିବାଦୀ ଚେତନା କିପରି ଭାବରେ ମହିମାନ୍ୱିତ ହୋଇଛି ଏବଂ "କବିଙ୍କର ବିଶିଷ୍ଟ କବିତା ଯେପରି ଏକ ଏକ ନୂତନ ଏକ୍‌ସପେରିମେଣ୍ଟ ବା ଉଦ୍ୟମ, କମଳାୟନ ମଧ୍ୟ ସେହିପରି ଆଧୁନିକ ଯୁଗର ମହାକାବ୍ୟ ରଚନାର ଏକ ଚେଷ୍ଟା"—ଏହା ମାନସିଂହ ନିଜେ ସ୍ୱୀକାର କରିଛନ୍ତି । 'କମଳାୟନ' କାବ୍ୟ ମାନସିଂହଙ୍କ କାବ୍ୟ-କୃତିର ଏକ ଅମଳିନ ସୃଷ୍ଟି—ଏହା ମୁଁ ଏଥିରେ ପ୍ରତିପାଦିତ କରିଛି ।

ଷଷ୍ଠ ପରିଚ୍ଛେଦରେ କବିଙ୍କର ଶିଳ୍ପଗତ ଦୃଷ୍ଟିଭଙ୍ଗୀ ଏବଂ ଶିଳ୍ପାଦର୍ଶ ସମ୍ପର୍କୀୟ ଆଲୋଚନା ସ୍ଥାନିତ ହୋଇଛି । ପ୍ରତ୍ୟେକ କବି ଏବଂ ଶିଳ୍ପୀ ଜୀବନର ବିଷ ପାନ କରି ଅମୃତତ୍ୱର ସନ୍ଧାନ ଦିଅନ୍ତି । କବି ମାନସିଂହଙ୍କର ଏହାହିଁ ଥିଲା ଶିଳ୍ପାଦର୍ଶ । ଏହା ବ୍ୟତୀତ ଛନ୍ଦ ସମ୍ପର୍କୀୟ ବିଭିନ୍ନ ଆଲୋଚନା ମଧ୍ୟ ଏଥିରେ ବିଶ୍ଳେଷିତ ହୋଇଛି ।

କବି ମାନସିଂହଙ୍କ ଜୀବନୀ ଓ ଜୀବନାଦର୍ଶ ସପ୍ତମ ଅଧ୍ୟାୟର ବର୍ଣ୍ଣିତ ବିଷୟ । ସ୍ରଷ୍ଟାଙ୍କ ଜୀବନଧାରା ବିଶ୍ଳେଷଣ ପୂର୍ବକ, କବିବ୍ୟକ୍ତିତ୍ୱ, ଜୀବନ ଓ ଜଗତ ପ୍ରତି କବିଙ୍କର ସ୍ୱତନ୍ତ୍ର ଓ ବିଶେଷ ଦୃଷ୍ଟିଭଙ୍ଗୀ ଏବଂ ତାଙ୍କ ଜୀବନର ଉତ୍ଥାନ ପତନ ସହିତ ନିବିଡ଼ ଯୋଗାଯୋଗ ଏହି ପର୍ଯ୍ୟାୟର ବିଷୟବସ୍ତୁ । ସର୍ବୋପରି ଆଲୋଚନାକ୍ରମେ ଓଡ଼ିଆ କବିତା କ୍ଷେତ୍ରରେ ମାନସିଂହଙ୍କ କାବ୍ୟ ବ୍ୟକ୍ତିତ୍ୱର ଆକଳନ କରାଯାଇଛି ଓ ତାଙ୍କ ବୈଶିଷ୍ଟ୍ୟ ପ୍ରତିପାଦନ ନିମନ୍ତେ ଉଦ୍ୟମ ହୋଇଛି ।

**ମନୋରମା ମହାପାତ୍ର**

## କ୍ରମବିନ୍ୟାସ

ସ୍ୱୀକୃତି ... କ

ମୁଖବନ୍ଧ ... ଗ

**ପ୍ରଥମ ପରିଚ୍ଛେଦ :** ... ୧

ଆଧୁନିକ ଓଡ଼ିଆ ସାହିତ୍ୟରେ ଉତ୍କଳର ମାୟାଧର ମାନସିଂହଙ୍କ ଆବିର୍ଭାବ ; ପ୍ରାକ୍ ଓ ସମକାଳୀନ ସାହିତ୍ୟିକ ପରିବେଶ ; ପ୍ରାକ୍ ଓ ସବୁଜ ଜାତୀୟତାବାଦୀ ଚେତନା; ପ୍ରାକ୍ ସବୁଜ ରୋମାଣ୍ଟିକ୍ ଭାବନା , ପ୍ରାକ୍ ସବୁଜମାନବବାଦୀ ଚେତନା ; ପ୍ରାକ୍ ସବୁଜ ଆଧ୍ୟାତ୍ମିକ ଚେତନା ଓ ଇନ୍ଦ୍ରିୟୋତ୍ତର ଅନୁଭବ

**ଦ୍ୱିତୀୟ ପରିଚ୍ଛେଦ :** ... ୩୪

କବି ମାନସିଂହଙ୍କ କାବ୍ୟ କବିତାର ସଂକ୍ଷିପ୍ତ ପରିଚୟ ଓ ପରିକ୍ରମା

**ତୃତୀୟ ପରିଚ୍ଛେଦ :** ... ୬୪

ମାନସିଂହଙ୍କ କବିତାରେ ରୋମାଣ୍ଟିକ୍ ଚେତନା :

(କ) ଜାତୀୟତାବୋଧ ; (ଖ) ପ୍ରଣୟ ଚେତନା ଏବଂ ରୂପ-ପ୍ରାଣତା ; (ଗ) ପ୍ରକୃତିପ୍ରାଣତା ; (ଘ) ବିଷାଦବାଦ (ଙ) ଇନ୍ଦ୍ରିୟୋତ୍ତର ଭାବନା ; (ଚ) ରବୀନ୍ଦ୍ର ପ୍ରଭାବ ଓ ମର୍ତ୍ତ୍ୟାନୁଭୂତି

**ଚତୁର୍ଥ ପରିଚ୍ଛେଦ :** ... ୯୭

କବି ମାନସିଂହଙ୍କର କାବ୍ୟ ନାୟିକା

**ପଞ୍ଚମ ପରିଚ୍ଛେଦ :** ... ୧୨୧

ସମସାମୟିକ ମାନବବାଦୀ କାବ୍ୟ ଆନ୍ଦୋଳନ ଓ କବି ମାନସିଂହ

**ଷଷ୍ଠ ପରିଚ୍ଛେଦ :** ... ୧୪୧
ମାନସିଂହଙ୍କ କାବ୍ୟ କବିତାର ଶିଳ୍ପଦୃଷ୍ଟି ଓ ଶିଳ୍ପାଦର୍ଶ

**ସପ୍ତମ ପରିଚ୍ଛେଦ :** ... ୧୫୯
ଓଡ଼ିଆ ସାହିତ୍ୟରେ ଡକ୍ଟର ମାୟାଧର ମାନସିଂହଙ୍କ ସ୍ଥାନ

**ଉପସଂହାର** ... ୧୭୨
(କ) ନାମାନୁକ୍ରମଣିକା
(ଖ) ସହାୟକ ଗ୍ରନ୍ଥସୂଚୀ



# ପ୍ରଥମ ପରିଚ୍ଛେଦ

## ଆଧୁନିକ ଓଡ଼ିଆ ସାହିତ୍ୟରେ ଡଃ ମାୟାଧର ମାନସିଂହଙ୍କ ଆବିର୍ଭାବ ; ପ୍ରାକ୍ ଓ ସମକାଳୀନ ସାହିତ୍ୟିକ ପରିବେଶ

"ନରତ୍ୱଂ ଦୁର୍ଲଭଂ ଲୋକେ ବିଦ୍ୟାତତ୍ର ସୁଦୁର୍ଲଭା,
କବିତ୍ୱଂ ଦୁର୍ଲଭଂ ତତ୍ର ଶକ୍ତିସ୍ତତ୍ର ସୁଦୁର୍ଲଭା" —ଅଗ୍ନି ପୁରାଣ

ଏହି ଉକ୍ତିଟି କବି ମାନସିଂହଙ୍କ ଜୀବନ ପ୍ରତି ଏକାନ୍ତ ପ୍ରଯୁଜ୍ୟ । "ମନୁଷ୍ୟ ଜୀବନ ଲାଭ କରିବା, ବିଦ୍ୟାଲାଭ କରିବା, ସର୍ବୋପରି କବିତା ରଚନା କରିବା, ସେଥିରେ ପୁଣି ଶକ୍ତିଶାଳୀ ହେବା ସଚରାଚର ଅତ୍ୟନ୍ତ ଦୁର୍ଲଭ ।" କବି ମାନସିଂହ ସେହିପରି ଏକ ସାଧାରଣ ପରିବେଶ ମଧ୍ୟରେ ଜନ୍ମଲାଭ କରି ସୁଦୁର୍ଲଭ କାବ୍ୟପ୍ରତିଭାର ଅଧିକାରୀ ହୋଇପାରିଥିଲେ । ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ପୁରୀ ଜିଲ୍ଲାର ନନ୍ଦଳା ଗ୍ରାମରେ କବିଙ୍କର ଜନ୍ମ । (୧) ନଗର ଜୀବନର ସାଂସ୍କୃତିକ ପରିବେଶ ସାହିତ୍ୟ ଓ କଳାର ସାଧନା ପାଇଁ ଯେଉଁ ପ୍ରେରଣା ଯୋଗାଇଥାଏ ତାହା ମିଳିବାର ସୁଯୋଗ ନ ଥିଲା । ତାଙ୍କ ଜୀବନ ହିଁ ଥିଲା କବିତା, କବି ହେବାପାଇଁ ତାଙ୍କୁ ଉଦ୍ୟମ କରିବାକୁ ପଡ଼ି ନ ଥିଲା । ଯଥାର୍ଥରେ ବାମନ କହିଛନ୍ତି—"କବିତ୍ୱଂ ବୀଜଂ ପ୍ରତିଭାନଂ । କବିତ୍ୱସ୍ୟ କବିତ୍ୱବୀଜଂ । ଜନ୍ମାନ୍ତରଗତ ସଂସ୍କାର ବିଶେଷଃ କଶ୍ଚିତ୍ । ଯସ୍ମାତବିନା କାବ୍ୟଂ ନ ନିଷ୍ପଦ୍ୟତେ । ନିଷ୍ପନଂ ବା ହାସ୍ୟାଽସ୍ପେତନଂସ୍ୟାତ୍" । ପୂର୍ବଜନ୍ମର ସଂସ୍କାର ନେଇ ପ୍ରତିଭାଶାଳୀ କବି ଜନ୍ମଗ୍ରହଣ କରିଥାଏ । ଏହି ପୂର୍ବସଂସ୍କାର କିମ୍ବା ପ୍ରତିଭା ବିନା ଯେଉଁ କାବ୍ୟ କବିତାର ସୃଷ୍ଟିହୁଏ ତାହା କେବଳ ପାଠକ ସମାଜର ହାସ୍ୟ, ବ୍ୟଙ୍ଗ, ବିଦ୍ରୂପ ଓ କଠୋର ସମାଲୋଚନାର ସାମଗ୍ରୀ ହୋଇପଡ଼େ । କବିର ବ୍ୟକ୍ତିତ୍ୱ ଏବଂ କବିତାର ସୌନ୍ଦର୍ଯ୍ୟକୁ ଲକ୍ଷ୍ୟକରି କବି ମାନସିଂହ କହିଥିଲେ,

---

(୧) ୧୯୦୫, ନଭେମ୍ବର ୧୩, ଗ୍ରାମ-ନନ୍ଦଳା

୨ ।

"ମଣିଷ ମନର କଥା ଜାଣିବାକୁ ହେଲେ ଏବଂ ମଣିଷ ବୁଝିବା ଭଳି ଭାଷାରେ ତାକୁ ବ୍ୟକ୍ତ କରିବାକୁ ହେଲେ ; କବି ଓ ଲେଖକଙ୍କୁ ଜଣେ କେବଳ ସାଧାରଣ ମଣିଷ ପରି ବଞ୍ଚିବାକୁ ହେବ ନାହିଁ ; ତା'ଠାରୁ ଅଧିକ ଗମ୍ଭୀର, ନିବିଡ଼ ଅର୍ଥମୟ ଜୀବନଯାପନ କରିବାକୁ ପଡ଼ିବ । ପୁଣି ସହସ୍ର ମନର ସ୍ୱପ୍ନର ଧାରା ବୁଝିବାକୁ ହେଲେ କବି ଓ ଲେଖକଙ୍କୁ ମଧ୍ୟ ଧୂଳିମଳିନ, କର୍ମକ୍ଳାନ୍ତ ଓ ପଥଶ୍ରାନ୍ତ ହେବାକୁ ପଡ଼ିବ । ମୁଁ ମନେ କରେନାହିଁ ଯେ କୌଣସି କବିର ପ୍ରତିଭା ଜୀବନର ଏଇ ପାର୍ଥିବ ଦୈନନ୍ଦିନ ଜୀବନର ଦାବୀ ଗ୍ରହଣରେ ବିକଳ ହୋଇଯାଏ । ବରଂ ଏଇସବୁ ନିତିଦିନର ଅଭିଜ୍ଞତା ହିଁ କବି ଓ ଲେଖକର ପ୍ରକୃଷ୍ଟ ଉପାଦାନ। × × × ବିଦ୍ରୋହୀ ହୁଅନ୍ତୁ, ସଂସ୍କାରକ ହୁଅନ୍ତୁ, ସ୍ୱପ୍ନଦ୍ରଷ୍ଟା ହୁଅନ୍ତୁ, ଦାର୍ଶନିକ ହୁଅନ୍ତୁ ବା ପ୍ରଚାରକ ହୁଅନ୍ତୁ କବି ଓ ଲେଖକ ମନେରଖିବେ ଯେ ସେ ଆନନ୍ଦ ଓ ସୌନ୍ଦର୍ଯ୍ୟ ଏହି ଯୁଗ୍ମ ଦେବତାଙ୍କର ମାନସପୁତ୍ର । ସୌନ୍ଦର୍ଯ୍ୟ ହିଁ ଆନନ୍ଦ ଦାନକରେ । ଧନ ପଦ ସମ୍ମାନରୁ ଏକ ବିକୃତ ସୁଖ ମିଳିପାରେ; କିନ୍ତୁ ଆନନ୍ଦ ମିଳେନା । ଆନନ୍ଦ ଆଧ୍ୟାତ୍ମିକ, ସୁଖ ବାହ୍ୟ, ଯାହା ସୁନ୍ଦର ତାହାହିଁ ସତ୍ୟ ଅର୍ଥାତ୍ ସ୍ଥାୟୀ ।(୨) କବି ମାନସିଂହ କିପରି ବଳିଷ୍ଠ କବିପୁରୁଷର ପ୍ରାଣଧର୍ମରେ ଆତ୍ମମଗ୍ନ ଥିଲେ ତାହା ତାଙ୍କ ବକ୍ତବ୍ୟରୁ ଅନୁମିତ ହୋଇଥାଏ ।

ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାର ସମ୍ପର୍କରୁ ଓଡ଼ିଆ ସାହିତ୍ୟରେ ଆଧୁନିକତାର ଅଭ୍ୟୁଦୟ ଘଟିଥିଲା । ୧୮୦୩ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଇଂରେଜମାନଙ୍କ ଅଧୀନକୁ ଆସିଲା ଏବଂ ଏହି ସମୟରୁ ଧୀରେ ଧୀରେ ଇଂରେଜମାନେ ସେମାନଙ୍କ ଧର୍ମ, ସଭ୍ୟତା, ଶିକ୍ଷା-ଦୀକ୍ଷା ଓ ଆଚାର ବ୍ୟବହାରମାନ ଏ ଦେଶରେ ପ୍ରବର୍ତ୍ତନ କରିବାକୁ ଲାଗିଲେ । ଫଳରେ କାଳକ୍ରମେ ଏ ଦେଶ ଲୋକଙ୍କର ରୁଚି ପରିବର୍ତ୍ତିତ ହେଲା ଓ ସେମାନେ ପ୍ରାଚୀନ ସାହିତ୍ୟର ଗତାନୁଗତିକତାକୁ ପରିହାର କରି ଆଧୁନିକତାକୁ ବରଣ କଲେ । ତେଣୁ ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ସୃଷ୍ଟି ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଂଘର୍ଷରୁ ଘଟିଅଛି ବୋଲି କୁହାଯାଏ । ଓଡ଼ିଶାରେ ଏହି ସଂଘର୍ଷର ସୂତ୍ରପାତ କମ୍ପାନୀ ସରକାରଙ୍କ ଅମଳରୁ ହିଁ ଘଟିଥିଲା ଏବଂ ଏହା ସମୟକ୍ରମେ ଏ ଦେଶର ସମାଜ ଧର୍ମ ଧାରଣା ଓ ସଭ୍ୟତା, ସଂସ୍କୃତି ଓ ସର୍ବୋପରି ସାହିତ୍ୟ କ୍ଷେତ୍ରରେ ଏକ ଅଭୂତପୂର୍ବ ପରିବର୍ତ୍ତନ ଆଣିଦେଲା । ଓଡ଼ିଆ ଭାଷାରେ ଖ୍ରୀଷ୍ଟଧର୍ମ ପ୍ରଚାର କରିବା ଲାଗି କ୍ରମଶଃ ମିସନାରୀ ପାଦ୍ରୀମାନେ ସକ୍ରିୟ ହୋଇଉଠିଲେ । ଏହି ମିସନାରୀମାନଙ୍କ ଉଦ୍ୟମରେ ସେତେବେଳେ କେତେକ ଦେଶୀୟ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା ଏବଂ ଏହି ବିଦ୍ୟାଳୟଗୁଡ଼ିକରେ ଓଡ଼ିଆ ଭାଷା ଶିକ୍ଷା ଲାଗି

(୨) କବି ଓ କବିତା—ମାନସିଂହ ଗ୍ରନ୍ଥାବଳୀ, ୧ମ ଭାଗ—୧ମ ଖ—ପୃ-୫୬୧

ପ୍ରଥମେ ଖ୍ରୀଷ୍ଟିୟାନ ପାଦ୍ରୀମାନେ ଅଭିଧାନ ଓ ବ୍ୟାକରଣ ରଚନା କଲେ । ଓଡ଼ିଶାରେ ଆଧୁନିକ ଶିକ୍ଷାର ପ୍ରସାର ଓ ବିଦ୍ୟାଳୟ ସ୍ଥାପନ ସହଜସାଧ୍ୟ ବୋଲି ମନେକରାଯାଉ ନ ଥିଲା । ଏ ଦେଶ ଲୋକଙ୍କର ଆଧୁନିକ ଇଂରାଜୀ ଶିକ୍ଷା ପ୍ରତି ଏକ ବ୍ୟାପକ ଘୃଣା ରହିଥିଲା । ଇଂରାଜୀ ପଢ଼ିଲେ ଧର୍ମହାନି ଘଟିବାର ଆଶଙ୍କା ଲୋକେ ପୋଷଣ କରୁଥିଲେ । ତେଣୁ ନିଜର ସନ୍ତାନସନ୍ତତିଙ୍କୁ ମିସନାରୀ ଓ କମ୍ପାନୀ ସରକାରଙ୍କ ଦ୍ୱାରା ପ୍ରତିଷ୍ଠିତ ବିଦ୍ୟାଳୟକୁ ପଠାଉ ନ ଥିଲେ । ଫଳରେ ଇଂରାଜୀ ଶିକ୍ଷା ପ୍ରତି ଓଡ଼ିଆ ଲୋକଙ୍କ ଭିତରେ ଯଥାର୍ଥ ଆଗ୍ରହ ସୃଷ୍ଟି ହୋଇପାରି ନ ଥିଲା । ପରବର୍ତ୍ତୀ ସମୟରେ ଇଂରାଜୀ ନ ପଢ଼ିଲେ ସରକାରୀ ଚାକିରୀ ମିଳିବ ନାହିଁ—ଏହି ଧାରଣା କ୍ରମେ ଲୋକଙ୍କ ଭିତରେ ସୃଷ୍ଟି ହେଲା । ତେଣୁ ଇଂରେଜୀ ଶିକ୍ଷାପ୍ରତି ନାନାଧରଣର କୁସଂସ୍କାରପୂର୍ଣ୍ଣ ମନୋଭାବ ଥିଲେ ମଧ୍ୟ, ଜୀବିକା ଉପାର୍ଜନ ଲାଗି ଏ ଦେଶର ଲୋକେ ଇଂରାଜୀ ଶିକ୍ଷା ପ୍ରତି ଆକୃଷ୍ଟ ହୋଇପଡ଼ିଲେ । ୧୮୭୦ ବେଳକୁ ଯେଉଁମାନେ ଆଧୁନିକ ଓଡ଼ିଆ ସାହିତ୍ୟ ବିକାଶରେ ସଫଳ ଅଂଶ ଗ୍ରହଣ କଲେ ସେମାନେ ସମସ୍ତେ ଇଂରାଜୀ ଶିକ୍ଷାର ଯଥାର୍ଥତା ଉପଲବ୍ଧି କରିଥିଲେ ଏବଂ ନିଜେ ଇଂରାଜୀ ଶିକ୍ଷାରେ ଥିଲେ ସୁଶିକ୍ଷିତ । ଜୀବିକାର୍ଜନ ଲାଗି ଆଧୁନିକ ଶିକ୍ଷାଲାଭ ଇଂରାଜୀ ଭାଷାଶିକ୍ଷା ସୂତ୍ରରେ ପାଶ୍ଚାତ୍ୟ ସାହିତ୍ୟ ଓ ସଂସ୍କୃତି ସହିତ ପରିଚିତ ହେବାଦ୍ୱାରା ଖ୍ରୀ. ୧୮୭୦-୮୦ ବେଳକୁ ଏ ଦେଶର ଲୋକଙ୍କ ମନୋବୃତ୍ତିରେ ଓ ଚିନ୍ତାଧାରାରେ ଘୋର ପରିବର୍ତ୍ତନ ସାଧିତ ହୋଇ ସେମାନଙ୍କର ରୁଚିକୁ ଆଧୁନିକ ସାହିତ୍ୟ ସୃଷ୍ଟି ପ୍ରତି ଉନ୍ମୁଖ କରି ପକାଇଥିଲା । ତେଣୁ ଆଧୁନିକ ଓଡ଼ିଆ ସାହିତ୍ୟର ବିକାଶ ମଧ୍ୟ ଅବାରିତ ହୋଇପଡ଼ିଲା । ଆଧୁନିକ ଓଡ଼ିଆ ସାହିତ୍ୟ ଉନ୍ମେଷର ପ୍ରାକ୍‌କାଳରେ ମୁଦ୍ରାଯନ୍ତ୍ର ଓ ସାହିତ୍ୟ ପ୍ରକାଶନର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବୋଲି ମନେ ହୋଇଥିଲା । ଓଡ଼ିଶାରେ ପ୍ରଥମେ ଖ୍ରୀଷ୍ଟିୟାନ ପାଦ୍ରୀମାନଙ୍କ ଦ୍ୱାରା କଟକରେ ମିସନ୍ ପ୍ରେସ୍ ସ୍ଥାପିତ ହେଲା । ଏହି ମୁଦ୍ରାଯନ୍ତ୍ରରୁ ୧୮୪୯ରେ 'ଜ୍ଞାନାରୁଣ' ନାମକ ଓଡ଼ିଆରେ ପ୍ରଥମ ପତ୍ରିକା ପ୍ରକାଶ ପାଇଥିଲା । ଆଧୁନିକ ସାହିତ୍ୟର ପ୍ରତିଷ୍ଠାତା ବରେଣ୍ୟ ରାଧାନାଥ-ମଧୁସୂଦନ-ଫକୀରମୋହନଙ୍କ ପ୍ରଚେଷ୍ଟାରେ ପ୍ରତିଷ୍ଠିତ ବିଭିନ୍ନ ପତ୍ରିକା ଓ ସାହିତ୍ୟିକ ସଙ୍ଗଠନ ମାଧ୍ୟମରେ ଯଥାର୍ଥ ଆଧୁନିକ ସାହିତ୍ୟ ସୃଷ୍ଟିର ମାର୍ଗ ଉନ୍ମୋଚିତ ହୋଇଥିଲା । ରାଧାନାଥଙ୍କ 'ମେଘଦୂତ' ଅନୁବାଦ, 'ଇଟାଲୀୟ ଯୁବା' ଓ ବିବେକୀ ପ୍ରବନ୍ଧ ସହିତ ମଧୁସୂଦନଙ୍କ କେତେକ ପଦ୍ୟ ଓ ଗଦ୍ୟ ରଚନା 'ଉତ୍କଳ ଦର୍ପଣ' ପୃଷ୍ଠାକୁ ମଣ୍ଡନ କରିଥିଲା । (୩) ଉତ୍କଳ ମଧୁପ, ଉତ୍କଳ ଦୀପିକା, ସମ୍ବାଦ ବାହିକା, 'ସ୍ୱଦେଶୀ' ପ୍ରଭୃତି ସାପ୍ତାହିକ ଓ ପାକ୍ଷିକ ପତ୍ରିକା ପ୍ରକାଶିତ ହୋଇ ଆଧୁନିକ

(୩) ଓଡ଼ିଆ ସାହିତ୍ୟର ଇତିହାସ—ନଟବର ସାମନ୍ତରାୟ—୧ମ ସଂ—ପୃ ୬୭୫

ସାହିତ୍ୟ ଲାଗି ଏକ ଅନୁକୂଳ ବାତାବରଣ ପ୍ରସ୍ତୁତ କରିପାରିଥିଲା । ଏହା ସହିତ ଶିକ୍ଷାପ୍ରସାର କ୍ଷେତ୍ରରେ କଟକ କଲେଜ (୧୮୬୮)କୁ କେନ୍ଦ୍ରକରି ଯେଉଁ ବୈପ୍ଳବିକ ପରିବର୍ତ୍ତନ ଆସିଥିଲା ତାହା ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ନୂତନ ରୁଚି ପ୍ରତିଷ୍ଠା ପାଇଁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ପ୍ରଥମ ଯୁଦ୍ଧ ଶେଷ ବେଳକୁ ଓଡ଼ିଆ ସାହିତ୍ୟର ତ୍ରିରଥୀ ରାଧାନାଥ, ମଧୁସୂଦନ ଏବଂ ଫକୀରମୋହନ ଆଉ ନାହାନ୍ତି । ଫକୀରମୋହନ ୧୯୧୮ରେ ସ୍ୱର୍ଗାରୋହଣ କଲେ । ଗଙ୍ଗାଧର ଓ ନନ୍ଦକିଶୋର ଜୀବିତ ଥିଲେହେଁ ସାହିତ୍ୟର ନେତୃତ୍ୱ ଆଉ ସେମାନଙ୍କ ହାତରେ ନ ଥିଲା । ଆଧୁନିକ ଓଡ଼ିଆ ସାହିତ୍ୟର ଅଭ୍ୟୁଦୟ ଘଟିବା ସଙ୍ଗେ ସଙ୍ଗେ ନବୀନ ଓ ପ୍ରାଚୀନ ଆଦର୍ଶ ଘେନି ଇନ୍ଦ୍ରଧନୁ ଓ ବିଜୁଳି ପତ୍ରିକା ମାଧ୍ୟମରେ ବାଦାନୁବାଦ (୧୮୯୩-୯୪) ଦେଖାଦେଇଥିଲା । ଆଧୁନିକ ଯୁଗ ପ୍ରବର୍ତ୍ତକ ରାଧାନାଥ ଓ ମଧ୍ୟଯୁଗର ଶ୍ରେଷ୍ଠ କବି ଉପେନ୍ଦ୍ର ଭଞ୍ଜ ଏହି ବାଦାନୁବାଦର କେନ୍ଦ୍ରବିନ୍ଦୁ ଥିଲେ । ୧୮୯୬ ଖ୍ରୀଷ୍ଟାବ୍ଦରେ ମୟୂରଭଞ୍ଜର ଆଦର୍ଶବାଦୀ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ ପୃଷ୍ଠପୋଷକତାରେ ପ୍ରକାଶିତ 'ଉତ୍କଳ ପ୍ରଭା' ନୂତନପନ୍ଥୀଗଣଙ୍କୁ ଓ କର୍ମଯୋଗୀ ଗୌରୀଶଙ୍କର ସମ୍ପାଦିତ 'ଉତ୍କଳ ଦୀପିକା' ପୁରାତନପନ୍ଥୀଙ୍କୁ ଉତ୍ସାହିତ କରୁଥିଲା । ନୂତନପନ୍ଥୀଗଣ ରାଧାନାଥ-ମଧୁସୂଦନ ପ୍ରଚଳିତ କାବ୍ୟଧାରାର ସ୍ତୁତିଗାନ କରିବା ସଙ୍ଗେ ସଙ୍ଗେ ପ୍ରାଚୀନ ସାହିତ୍ୟ ପ୍ରତି ତୀବ୍ର ସମାଲୋଚନା ପ୍ରକାଶ କରିଥିଲେ । ଏହି ସମାଲୋଚକମାନେ 'ଗୋଲକଧନ୍ଦା' ବନାମ ଗୋପାଳବଲ୍ଲଭ ଦାସଙ୍କ ପ୍ରାଚୀନ ସାହିତ୍ୟ ପ୍ରତି ସ୍ତାବକତା ଘେନି କଠୋର ସମାଲୋଚନାର ସ୍ୱର ଉତ୍ତୋଳନ କରିଥିଲେ । ଆଧୁନିକ ସାହିତ୍ୟପନ୍ଥୀ ଶ୍ରୀ ରାମନାରାୟଣ ଲାଲ୍ ଲେଖିଥିଲେ—"ଓଡ଼ିଶାର ସାହିତ୍ୟ ଜଗତରେ କବି ଉପେନ୍ଦ୍ର ଭଞ୍ଜଙ୍କୁ ଶୀର୍ଷସ୍ଥାନ ଅଧିକାର କରି ବସିବାର ନୟନଗୋଚର ହୁଏ । ଅଶିକ୍ଷିତ ସମ୍ପ୍ରଦାୟର ତ କଥା ନାହିଁ । ସେମାନେ କବିଙ୍କୁ ଦେବଗୁରୁ ବୃହସ୍ପତି କିମ୍ବା କବିଗୁରୁ କାଳିଦାସଙ୍କ ସହିତ ଏକାସନେ ବସାଇ ସ୍ୱୀୟ ସ୍ୱୀୟ ନୟନ ମନକୁ ଚରିତାର୍ଥ କରୁଅଛନ୍ତି । × × ମାତ୍ର ଅତ୍ୟଧିକ ଆଶ୍ଚର୍ଯ୍ୟ ଓ କ୍ଷୋଭର ବିଷୟ ଏହି ଯେ ଆଧୁନିକ ଉଚ୍ଚ ଶିକ୍ଷାଭିମାନୀ ଯୁବକମଣ୍ଡଳୀଙ୍କ ମଧ୍ୟରୁ କେହି ପୂର୍ବର ଓ ଆଧୁନିକ ଅଶିକ୍ଷିତମାନଙ୍କର ଅନ୍ଧତମ ମତର ପରିପୋଷକ ହୋଇଛନ୍ତି । × × ଏହିପରି ହୋଇପାରେ ଯେ ସେମାନଙ୍କର ସେଥିରେ ଆଦୌ ଜ୍ଞାନ ନାହିଁ ; କିମ୍ବା ସେମାନେ ଭଞ୍ଜକବିଙ୍କର କାବ୍ୟସହିତ ଅନ୍ୟ କୌଣସି ଭାଷାର ଉତ୍କୃଷ୍ଟ କାବ୍ୟକୁ ତୁଳନା କରିବାର ସୁବିଧା ପାଇନାହାନ୍ତି, ଅଥବା କବି ରଚିତ

ପୁ ସ୍ତକାବଳୀ ପ୍ରତି ଦୃଷ୍ଟି ନିକ୍ଷେପ ନ କରି ପୂର୍ବ ପ୍ରଚଳିତ କିମ୍ବଦନ୍ତୀ ଅନୁସରଣରେ ସ୍ୱ ସ୍ୱ ମତ ବ୍ୟକ୍ତ କରିଥାଆନ୍ତି ।" (୪)

'ଉତ୍କଳ ପ୍ରଭା'ର ଘୋଷିତ ନୀତି ଓ ଆଧୁନିକତାର ପକ୍ଷ ସମର୍ଥନ ନାମରେ ପ୍ରାଚୀନ କାବ୍ୟର ପ୍ରତିକୂଳ ସମାଲୋଚନାକୁ ଗୌରୀଶଙ୍କରଙ୍କ 'ଉତ୍କଳ ଦୀପିକା' ଓ ବାଲେଶ୍ୱରର 'ସମ୍ବାଦ ବାହିକା' ସମର୍ଥନ କରି ନ ଥିଲେ । 'ଉତ୍କଳ ପ୍ରଭା'ରେ ପ୍ରକାଶିତ ଲାଲାଙ୍କ ମତ ଖଣ୍ଡନ କରି ଗୌରୀଶଙ୍କର ଲେଖିଥିଲେ —"ଯେଉଁ କବିଙ୍କୁ ସମସ୍ତ ଓଡ଼ିଶାବାସୀ ଅତିଶୟ ଆଦର ଓ ସମ୍ମାନ କରନ୍ତି ଏବଂ ଯାହାଙ୍କ ଦ୍ୱାରା ଉତ୍କଳ ସାହିତ୍ୟର ଗୌରବ ବୃଦ୍ଧି ହୋଇଅଛି ତାହାଙ୍କର ଅକାରଣ ନିନ୍ଦାର ପ୍ରତିବାଦ କରିବା ପାଇଁ କେହି ଆମମାନଙ୍କର ସାହାଯ୍ୟ ଲୋଡ଼ିଲେ; ତାହାକୁ ନିବାରଣ କରିବା ମଧ୍ୟ ଅନ୍ୟାୟ ବିବେଚନା କରୁ ।" ଲାଲାଙ୍କ ଭଞ୍ଜକାବ୍ୟ ଆଲୋଚନା ଘେନି ପୁଣି ଲେଖିଥିଲେ, "ଲାଲା ରାମନାରାୟଣ ଯେ ଶ୍ରମ ସ୍ୱୀକାର ପୂର୍ବକ ଉପେନ୍ଦ୍ରଭଞ୍ଜଙ୍କ ଗ୍ରନ୍ଥଗୁଡ଼ିକ ପଢ଼ିଛନ୍ତି, ଏଥିଲାଗି ସେ ଧନ୍ୟବାଦର ପାତ୍ର ଅଟନ୍ତି । ମାତ୍ର ଦୁଃଖର ବିଷୟ ଯେ ସେ ଆଧୁନିକ ଉଗ୍ର ସଂସ୍କାରକଙ୍କର ଆଖି ବାଟେ ଦେଖି ବିଚାର କରିବାକୁ ପ୍ରବୃତ୍ତ ହେବାରୁ ତାହାଙ୍କ ସମାଲୋଚନା ଚାଲୁନି ଖାଇବା ଗୁଡ଼ି ଛିଦ୍ର ଗଣିବା ନ୍ୟାୟକୁ ଅନୁସରି ଅଛି ଏବଂ ଏଇଥିପାଇଁ ଏତେ ଅନର୍ଥ ଉପସ୍ଥିତ ହୋଇଅଛି ।" (୫) ଏହି ବିବଦମାନ ସାମୁଖ୍ୟର ସମର୍ଥନ ପାଇଁ ପ୍ରାଚୀନପନ୍ଥୀଗଣ 'ଇନ୍ଦ୍ରଧନୁ' ଓ ନବ୍ୟପନ୍ଥୀଗଣ 'ବିଜୁଳି' ପତ୍ରିକା ପ୍ରକାଶ କରିଥିଲେ । ଶ୍ରୀ ଗୋଲକ ଧଳ ଛଦ୍ମନାମଧାରୀ ଲେଖକ ପ୍ରବୀନ ଓ ଲାଲା ମହାଶୟ ନବୀନ ପନ୍ଥୀଙ୍କର ନେତୃତ୍ୱ ନେଉଥିଲେ । ଏହି ସଙ୍ଘର୍ଷ ଦେଢ଼ବର୍ଷ ଦୁଇବର୍ଷ ଚାଲିଲା ପରେ 'ବିଜୁଳି' ପ୍ରକାଶନ ବନ୍ଦ ହୋଇ ଯାଇଥିଲା । ଏଣେ 'ଇନ୍ଦ୍ରଧନୁ' ପୃଷ୍ଠାରେ ବିପକ୍ଷବାଦୀମାନଙ୍କର କଠୋର ବାକ୍ୟବାଣର ଶରବ୍ୟ ହୋଇ କବି ରାଧାନାଥ ନିତାନ୍ତ ବ୍ୟତିବ୍ୟସ୍ତ ଓ ବିବ୍ରତ ହୋଇପଡ଼ିଲେ । ମାତ୍ର 'ଇନ୍ଦ୍ରଧନୁ' ଓ 'ବିଜୁଳି'ର ସଙ୍ଘର୍ଷରେ ଓଡ଼ିଆ ସାହିତ୍ୟ ଜଗତରେ ଏକ ନୂତନ ଦିଗ ଉଦ୍‌ଘାଟିତ ହେଲା । 'ଇନ୍ଦ୍ରଧନୁ' 'ବିଜୁଳି' ସମୟରୁ ଓଡ଼ିଆରେ ସାହିତ୍ୟ ସମାଲୋଚନାର ଓ ସାହିତ୍ୟ ସମାଲୋଚନାମୂଳକ ପ୍ରବନ୍ଧ ରଚନାର ଧାରା ପ୍ରବର୍ତ୍ତିତ ହୋଇଥିଲା ।

ରାଧାନାଥଙ୍କ ପୂର୍ବରୁ ଯେଉଁ ଦୁଇଟି କାବ୍ୟିକ ଯୁଗ ଅତିବାହିତ ତା' ମଧ୍ୟରୁ ଗୋଟିଏ ହେଉଛି ରୀତିକାବ୍ୟ ଓ ଅନ୍ୟଟି ବୈଷ୍ଣବ ଗୀତି କବିତାର

(୪) ସାହିତ୍ୟ ଓ ସଂସ୍କୃତି—ଡ଼ଃ ବଂଶୀଧର ମହାନ୍ତି—ପ୍ରଥମ ସଂସ୍କରଣ, ପୃ. ୧୩୫
(୫) ପ୍ରବନ୍ଧ ଓ ଅଭିଭାଷଣ—ପୃ. ୧୪୬

ଯୁଗ । ରୀତିଯୁଗ ଅପେକ୍ଷା ବୈଷ୍ଣବ ଗୀତିକବିତାର ଯୁଗରେ କାବ୍ୟସ୍ୱର ଥିଲା ଅଧିକ ବଳିଷ୍ଠ, ପ୍ରାଞ୍ଜଳ, ସ୍ୱାଭାବିକ ଓ ମାନବଧର୍ମୀ; କିନ୍ତୁ ରୀତିଯୁଗ ବା କାବ୍ୟ-ଯୁଗର ସାହିତ୍ୟ କୃତ୍ରିମତାର ପଥ ଅନୁସରଣ କରି ପରିଣତ ହୋଇଥିଲା କେବଳ ଏକମୁଖୀ ଓ ଭଙ୍ଗୀପ୍ରଧାନ ଶୋଭନ ଶିଳ୍ପରେ । ରୀତିଯୁଗର କବିତା ମଧ୍ୟରେ ଆମେ ଯେତେବେଳେ ପ୍ରବେଶ କରୁ; ଆମର ମନେହୁଏ ତା'ର ଜଗତ ଏକ ରୁଦ୍ଧ ଓ ବାଧ୍ୟବଦ୍ଧ ଜଗତ । ତା'ର ସବୁକିଛୁ ଯେପରି ଆକ୍ଷରିକ, ବ୍ୟାକରଣିକ । ସେଠାରେ କବିତାକୁ ଆବିଷ୍କାର କରିବାକୁ ସମୟ ଲାଗେ । ବହୁ ପ୍ରୟାସର ପ୍ରୟୋଜନ ହୁଏ; କିନ୍ତୁ ରାଧାନାଥ ସୃଷ୍ଟିର କାବ୍ୟପରିଧି ଏକ ସ୍ୱତନ୍ତ୍ର ଦୀପ୍ତିରେ ଉଦ୍ଭାସିତ । ତା'ର ବାତାବରଣ ଏକ ନୂତନ ମୌସୁମୀରେ ପରିପୂର୍ଣ୍ଣ । "ରାଧାନାଥ ଏକପକ୍ଷରେ ପ୍ରାଚୀନର ଅସ୍ତରାଗ ଏବଂ ଅନ୍ୟ ପକ୍ଷରେ ଆଧୁନିକର ଅଗ୍ରଦୂତ ଓ 'ପୂର୍ବରାଗ ।" "ରାଧାନାଥ ଓଡ଼ିଆ କାବ୍ୟ ସାହିତ୍ୟରେ ରେନେସାଁର ସାଧକ, ମାନବତନ୍ତ୍ରୀ ମୁକ୍ତ ସାଧନାର ଗୁରୁ । ଏଥିପାଇଁ ପଶ୍ଚିମୀ ସଭ୍ୟତାର ସଂସର୍ଗ, ପାଶ୍ଚାତ୍ୟ ଶିଳ୍ପ ସାଧନାର ଧାରାସହ ଭାରତୀୟ କବି ମନର ପରିଚୟ ଏ ଦେଶରେ ଅନୁକୂଳ ବାୟୁମଣ୍ଡଳ ସୃଷ୍ଟି କରି ସାରିଥିଲା । ରୋମାଣ୍ଟିକ କାବ୍ୟ ପ୍ରବାହର ଭଗୀରଥ ଭାବରେ ରାଧାନାଥ ଏ ଦେଶର କାବ୍ୟ ଲକ୍ଷ୍ମୀଙ୍କୁ ଦେଇଛନ୍ତି ଦୁର୍ବହ ଭୂଷଣ ଭାରର ପୀଡ଼ାରୁ ମୁକ୍ତି, କବିତାକୁ କରିଛନ୍ତି ଅଧିକତର ସନ୍ଧାନ-ଧର୍ମୀ । × × × ଉତ୍କଳୀୟ ପ୍ରକୃତି ରାଧାନାଥଙ୍କ ତୂଳିରେ ଲାଭ କରିଛି ଦ୍ୱିଜତ୍ୱ ଏବଂ କବି ରାଧାନାଥହିଁ ପ୍ରଥମ କରି ଉତ୍କଳଭାରତୀ ଭବନରେ ଏହି ଜୀବନ୍ତ ପ୍ରକୃତିର ଅଭିଷେକ ଉତ୍ସବ ସମାପନ କରି ତାକୁ ସ୍ୱତନ୍ତ୍ର ସ୍ଥାନ ଓ ସମ୍ମାନର ଅଧିକାରୀ କରାଇଛନ୍ତି । (୬)

## ପ୍ରାକ୍-ସବୁଜ ଜାତୀୟତାବାଦୀ ଚେତନା—

ରୋମାଣ୍ଟିକ ଚେତନା, ଜାତୀୟତାବୋଧ, ମାନବବାଦୀ ଭାବନା, ଆଧ୍ୟାତ୍ମିକ ଚେତନା ଏବଂ ଇନ୍ଦ୍ରିୟୋତ୍ତର ଅନୁଭବ ଭିତରେ ପ୍ରାକ୍ ସବୁଜ ସାହିତ୍ୟ ମୁଖ୍ୟତଃ ପରିପୁଷ୍ଟ । ଜାତୀୟତାର ମୂଳଦୁଆ ରାଧାନାଥଙ୍କ ଯୁଗରେ ପଡ଼ିଥିଲା, ମାତ୍ର ସତ୍ୟବାଦୀ ଯୁଗରେ ଏହାର ଭୂୟୋ ବିକାଶ ଘଟିବାର ଆମେ ଦେଖୁଁ । ଜାତୀୟତା କେବଳ ଆଞ୍ଚଳିକ ପ୍ରୀତି ବା ଭୂମିଖଣ୍ଡର ଜଡ଼ଶରୀରରେ ଆବଦ୍ଧ ନ ହୋଇ ଉଦାର, ମହତ ସାର୍ବଜନୀନ ମାନବିକ ଆଦର୍ଶର ଅନୁସରଣ କଲା । ଊନବିଂଶ ଶତକରେ ଆମ ସାହିତ୍ୟ ଓ ଚିନ୍ତା ଜଗତରେ ଯେଉଁ ନବଜାଗରଣ ଦେଖାଦେଇଥିଲା ତା'ର ପ୍ରକୃତ ସ୍ୱରୂପ ବିଂଶ ଶତକର ଆରମ୍ଭରେ ମଧୁବାବୁଙ୍କ

(୬) କାବ୍ୟ ଓ କଳାକାର—ଶ୍ରୀଯୁକ୍ତ ଚିନ୍ତାମଣି ବେହେରା—ପୃ. ୪୦

ବ୍ୟକ୍ତିତ୍ୱ ଓ ଉତ୍କଳ ସମ୍ମିଳନୀର ଗଠନ ମଧ୍ୟରେ ଧରା ଦେଇଥିଲା । ୧୯୦୩ର ଉତ୍କଳ ସମ୍ମିଳନୀରେ ମଧୁବାବୁ ପ୍ରଥମେ ସ୍ୱତନ୍ତ୍ର ରାଜନୈତିକ ଉତ୍କଳର ପରିକଳ୍ପନା କଲେ ଓ ଏହି ପରିକଳ୍ପନାକୁ କାର୍ଯ୍ୟରେ ପରିଣତ କରିବାକୁ ଲାଗିଲେ । ମାତ୍ର ଗୋପବନ୍ଧୁ ସର୍ବପ୍ରଥମେ ଆମ ଚିନ୍ତାର ପରିଧି ବିସ୍ତୃତ କଲେ ଉତ୍କଳରୁ ଭାରତ ଓ ଭାରତରୁ ସମଗ୍ର ବିଶ୍ୱଦରର ତାଙ୍କର ଆଦର୍ଶ ଗଢି କଲା । ସେ ଉତ୍କଳ ସେବାରେ ବିଶ୍ୱସେବାରେ ଆଦର୍ଶ କଳ୍ପନା କଲେ । ସମଗ୍ର ଜାତୀୟ ଜୀବନରେ ଏକ ନୂତନ ଆଭିମୁଖ୍ୟ ଫୁଟାଇବା ଥିଲା ତାଙ୍କ ଲକ୍ଷ୍ୟ । ଶିକ୍ଷା ନୀତିରେ, ସାହିତ୍ୟରେ, ବସନ ଭୂଷଣରେ, ସମାଜ ଗଠନରେ ଏହି ନବ ଆଦର୍ଶ ପରୀକ୍ଷା କେନ୍ଦ୍ର ଥିଲା ସତ୍ୟବାଦୀ । ଏହି ବୃହତ୍ତର ଜୀବନ ଜାହ୍ନବୀର ପବିତ୍ର ଧାରା ସତ୍ୟବାଦୀ ଯୁଗର କାବ୍ୟରେ ପ୍ରବାହିତ ହୋଇଅଛି । ମହାମନୀଷୀ ବାର୍ଣ୍ଣାଡ଼ ଶଙ୍କ କଥାରେ କହିଲେ, "ଯିଏ ନିଜ କଥା ଓ ନିଜକାଳ କଥା ଲେଖନ୍ତି; ସେଇ କେବଳ ସାର୍ବଜନୀନ ଓ ଚିରନ୍ତନ ସାହିତ୍ୟ ସୃଷ୍ଟି କରିଥାଆନ୍ତି ।" ରାଧାନାଥଙ୍କ ଅତୀତ ଚିତ୍ର, ସମକାଳୀନ ସମସ୍ୟାବଳୀର ପୃଷ୍ଠଭୂମିରେ ଜାତୀୟ ଜୀବନରୁ ଗୌଣ ମନୋଭାବ ଦୂର କରିବା ଉଦ୍ଦେଶ୍ୟରେ କଳ୍ପିତ । ପ୍ରକୃତି ଚିତ୍ରଣରେ ଦେଶାତ୍ମବୋଧ ଦୀପ୍ତ କରିବା ଅଭିପ୍ରାୟ ସ୍ପଷ୍ଟ ପ୍ରକାଶିତ । ମାତ୍ର ଇତିହାସ ଦୃଷ୍ଟିରୁ ଦେଖିଲେ ଊନବିଂଶ ଶତକର ଜାତୀୟତା ଓ ରାଜନୈତିକ ଆଦର୍ଶ ରାଧାନାଥଙ୍କ ଚିନ୍ତାରେ ସ୍ୱାଭାବିକ ଭାବରେ ପ୍ରତିଫଳିତ ହୋଇଛି ।

"ଇଂରେଜମାନଙ୍କ ସମ୍ପର୍କରେ ଆସିବା ପରେ ପ୍ରଥମେ ଆମ ଦେଶରେ ଏକ ପ୍ରକାର ଗୌଣ ମନୋଭାବର ଉଦୟ ହୋଇଥିଲା । ସେଥିରୁ ଦେଶବାସୀଙ୍କ ମନକୁ ମୁକ୍ତ କରିବା ଜାତୀୟବାଦୀମାନଙ୍କର ପ୍ରଥମ କାର୍ଯ୍ୟ ହୋଇଥିଲା । ପାଶ୍ଚାତ୍ୟ-ମାନଙ୍କଠାରୁ ଆମେ କେଉଁ ପରିମାଣରେ ସ୍ୱତନ୍ତ୍ର ତାହା ଦେଖାଇଦେବାର ଉଦ୍ୟମ ହେଲା । ସେଥିଲାଗି ଆମର ଚିନ୍ତାନାୟକମାନେ ଆମର ଗୌରବାବହ ଅତୀତ ଉପରେ ଦୃଷ୍ଟି ପକାଇଲେ । ମାତ୍ର ଅତୀତ ବହୁପ୍ରକାର ଦର୍ଶନ ପରମ୍ପରାପୁଷ୍ଟ ଧାର୍ମିକ ଚିନ୍ତାରେ ଆଚ୍ଛନ୍ନ ଥିଲା । × × × ଆମ ଜାତୀୟ ଜାଗରଣରେ ଏହି ପଶ୍ଚାତ୍ ଦୃଷ୍ଟି ଆଧୁନିକ କାବ୍ୟଧାରାର ଏକ ବଡ଼ ପ୍ରେରଣା । (୭) ଊନବିଂଶ ଶତକରେ ଧର୍ମ, ସମାଜ ସଂସ୍କାର ଓ ସାଂସ୍କୃତିକ ସଙ୍ଗଠନ କ୍ଷେତ୍ରରେ ହିନ୍ଦୁମାନଙ୍କ ମଧ୍ୟରେ ଅନେକ ବରିଷ୍ଠ ବ୍ୟକ୍ତି ଜନ୍ମଗ୍ରହଣ କରିଥିଲେ । ସିପାହୀ ବିଦ୍ରୋହ ପରେ ଭାରତରେ ଇଂରେଜ ଶାସନ ଦୃଢ଼ ହୋଇଗଲା । ଏହି ସମୟରେ ଭାରତୀୟ ଚିନ୍ତା ଜଗତରେ ଯେଉଁ ଶୂନ୍ୟତା ସୃଷ୍ଟି ହୋଇଥିଲା ତାହା ହିନ୍ଦୁମାନେ ଉପନିଷଦର

(୭) ଆଧୁନିକ ଓଡ଼ିଆ କାବ୍ୟଧାରା—ଡ଼ଃ ନରେନ୍ଦ୍ରନାଥ ମିଶ୍ର—ପୃ ୯୧ ।

ଦର୍ଶନ ଦୃଷ୍ଟି, ପ୍ରାଚୀନ ଭାରତର ଗୌରବମୟ ଇତିହାସ ଓ ତାର ପୁନଃପ୍ରତିଷ୍ଠା ଭାବନାରେ ପୂର୍ଣ୍ଣ କରିନେଇଥିଲେ । ଏ ଦିଗରେ ରାମମୋହନ, ବିବେକାନନ୍ଦ ଭଳି ଚିନ୍ତାନାୟକଙ୍କ ନାମ ସ୍ମରଣୀୟ । ହିନ୍ଦୁଭାବ ପ୍ରଭାବିତ ଜାତୀୟତା କିପରି ଓଡ଼ିଆ କବିତାରେ ପ୍ରତିଫଳିତ ହୋଇଥିଲା ତାହା ରାଧାନାଥଙ୍କର 'ଶିବାଜୀଙ୍କ ଉତ୍ସାହ ବାଣୀ' ଓ 'ମହାଯାତ୍ରା' ପଢ଼ିଲେ ଜଣାଯାଏ । ଫକୀରମୋହନ ଓ ମଧୁସୂଦନ ଅତୀତର ଗୌରବ ଗାନକରି ଯେଉଁ ଉଦ୍‌ବୋଧନ କବିତାସବୁ ଲେଖିଛନ୍ତି ତାହା ଏହି ଦୃଷ୍ଟିରୁ ହିନ୍ଦୁଭାବ ଭାବିତ । 'ମହାଯାତ୍ରା'ରେ ହିନ୍ଦୁ ଜାତୀୟତାର ରୂପ ରାଧାନାଥ ତୀବ୍ର ଭାଷାରେ ପ୍ରକାଶ କରିଛନ୍ତି । ମୁସଲମାନଙ୍କ ଚରିତ୍ର ବର୍ଣ୍ଣନା କରିବାକୁ ଯାଇ ଅମନୁଷ୍ୟତାର ସମସ୍ତ କଳଙ୍କ ସେମାନଙ୍କଠାରେ ଆରୋପ କରିଛନ୍ତି ।

ଭାରତୀୟ ଜାତୀୟ କଂଗ୍ରେସର ତତ୍‌କାଳୀନ ଶ୍ରେଷ୍ଠ ଜନନେତା ମହାତ୍ମା ଗାନ୍ଧୀ ୧୯୨୦ ମସିହା କଲିକତାର କଂଗ୍ରେସ ଅଧିବେଶନରେ ସ୍ୱାଧୀନତା ଲାଭପାଇଁ ଏକ ପ୍ରାୟୋଗିକ ଯୁଦ୍ଧର ଆହ୍ୱାନ ଦେଲେ । ସେ ଯୁଦ୍ଧର ମୂଳମନ୍ତ୍ର ଥିଲା ବିଦେଶୀ ବର୍ଜନ ଓ ଅସହଯୋଗ । ଏହାଦ୍ୱାରା ଭାରତୀୟ ଅର୍ଥନୀତିକୁ ସଙ୍ଗଠିତ କରିବା ଓ ଦେଶବାସୀଙ୍କୁ ସ୍ୱାବଲମ୍ବୀ କରିବା ମହାତ୍ମା ଗାନ୍ଧୀଙ୍କର ଲକ୍ଷ୍ୟ ଥିଲା । ୧୯୨୧ଠାରୁ ଏହି ଅସହଯୋଗର ବାତ୍ୟା ସମଗ୍ର ଭାରତୀୟ ଆକାଶରେ ପ୍ରବଳ ବେଗରେ ପ୍ରବାହିତ ହେବାକୁ ଲାଗିଲା । ଜାତୀୟ ଆହ୍ୱାନର ଏହି ସଂଗ୍ରାମଠାରୁ ଓଡ଼ିଶା ଦୂରେଇ ଯାଇ ନ ଥିଲା । ସତ୍ୟବାଦୀ ସଙ୍ଗଠନରେ କେବଳ ନୁହେଁ ଓଡ଼ିଆ ଜାତୀୟ ସାହିତ୍ୟ ମେରୁଦଣ୍ଡରେ ଏହି ଭାରତୀୟ ସ୍ୱାଧୀନତା ପ୍ରଚଣ୍ଡ ଆଘାତ ଦେଇଥିଲା । ସେଥିପାଇଁ ସତ୍ୟବାଦୀର କବିମାନେ ସେମାନଙ୍କ ପ୍ରଦେଶ ଭିତ୍ତିକ ଉଗ୍ର ଜାତୀୟବାଦୀ କାବ୍ୟ ପ୍ରେରଣାକୁ ପରିହାର କରି ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଜଡ଼ିତ ହୋଇପଡ଼ିଲେ । ଜାତୀୟ ମମତାରେ ଉଦ୍‌ବୁଦ୍ଧ ସତ୍ୟବାଦୀ ଗୋଷ୍ଠୀ ଜନ୍ମଭୂମିର ସେବାକୁ ଅଗ୍ରାଧିକାର ଦେଇ ମହାଭାରତୀୟ ଭାବର ବିକାଶକୁ ଦୃଷ୍ଟି ରଖିଥିଲେ । ଉତ୍କଳୀୟ ଯୁବକ ପ୍ରାଣରେ ନବଯୁଗର ନୂତନ ଭାବଚେତନାର ଉନ୍ମୀଳନ ଲାଗି ପଣ୍ଡିତ ଗୋପବନ୍ଧୁ ଆହ୍ୱାନ ଦେଉଥିଲେ— "ଉତ୍କଳ ଯୁବକ ପ୍ରାଣ ଏକାବେଳକେ ନିସ୍ତେଜ, ନିସ୍ପ୍ରାଣ, ଦେଶାନୁରାଗହୀନ ନୁହେଁ । ନାନା ଅଭାବ ଅସୁବିଧା ଦୁଃଖ ଦୈନ୍ୟ ଫଳରେ ଯୁବଭାବ ସେମାନଙ୍କର ମ୍ଳାନ ହୋଇଥିଲେହେଁ ମରିନାହିଁ । ଉପଯୁକ୍ତ ଆହ୍ୱାନ ଶୁଣିଲେ ଉତ୍କଳ ଯୁବକ ହୃଦୟରେ ଦେଶାନୁରାଗ ବହ୍ନି ପ୍ରଜ୍ୱଳିତ ହୋଇଉଠିବ । ମାତ୍ର ଉତ୍କଳ ଯୁବକ, ତୁମକୁ ଡାକିବାକୁ କେହିନାହିଁ । ସମଗ୍ର ଦେଶ ଡାକୁଛି । ନିଜେ ତାହା କାନଡେରି

ଶୁଣ । କାର୍ଯ୍ୟଦ୍ୱାରା ତାହାର ଉତ୍ତର ଦିଅ ।" (୮) ଓଡ଼ିଆ ଜାତିର ଘୋର ଦୁର୍ଦ୍ଦିନବେଳେ ସତ୍ୟବାଦୀର ସାଧକମାନେ ଦେବଦୂତ ଭଳି ଜାତିର ଜାଗରଣ ଲାଗି ଆହ୍ୱାନ ଦେଇଥିଲେ ; କିନ୍ତୁ ସତ୍ୟବାଦୀ ଚିନ୍ତାଧାରାରେ ଓ କର୍ମଯୋଜନାରେ 'ଜାତୀୟ ମମତା' ଯଥାର୍ଥରେ ଉତ୍କଳ ପ୍ରୀତିରୁ ଭାରତୀୟ ଭାବର ଅନୁପ୍ରେରଣା ଓ ମହାଭାରତୀୟ ଭାବରୁ ବିଶ୍ୱଭାବ ଆଡ଼କୁ ଗତି କରିବାର ମହତ୍ତର କଳ୍ପନା । ସତ୍ୟବାଦୀର ସାଧକମାନେ ବୁଝିଥିଲେ ଉତ୍କଳର ସେବାରେ ଭାରତସେବା ତଥା ବିଶ୍ୱସେବା, ଉତ୍କଳ ଜାତିର ଉନ୍ନତିରେ ମାନବ ଜାତିର ଉନ୍ନତି । ଦେଶାନୁରାଗ ବିଶ୍ୱପ୍ରୀତିର ବିରୋଧୀ ନୁହେଁ ।

"ଭାରତ ଆମ୍ଭମାନଙ୍କର ଜନ୍ମକ୍ଷେତ୍ର ହେଲେ ହେଁ ତାହାର ବିଶାଳ କଳେବରର ଅଙ୍ଗବିଶେଷ ଉତ୍କଳ ପ୍ରଦେଶ ଆମ୍ଭମାନଙ୍କର ମାତୃଭୂମି । ଓଡ଼ିଆ ଆମ୍ଭମାନଙ୍କର ମାତୃଭାଷା । ଏହି ମାତୃଭାଷା ସାହାଯ୍ୟରେ ମାତୃଭୂମିର ସେବା କରିବା ଦ୍ୱାରା ଆମ୍ଭେମାନେ ମହାଭାରତର ସେବା କରିବା ଏବଂ ସେହି ସୂତ୍ରରେ ବିଶ୍ୱସେବା କରିବାର ଆଶା ରଖିଅଛୁଁ ।" (୯) ୧୯୬୦ରେ ଚକ୍ରଧରପୁରରେ ଅନୁଷ୍ଠିତ 'ଉତ୍କଳ ସମ୍ମିଳନୀ'ର ୧୪ଶ ଅଧିବେଶନରେ ପଣ୍ଡିତ ଗୋପବନ୍ଧୁ ତାଙ୍କ ଅଭିଭାଷଣରେ କହିଥିଲେ—"ବାସ୍ତବିକ ଉତ୍କଳ ଭୂମି ସଙ୍କୀର୍ଣ୍ଣ ନୁହେଁ । ଓଡ଼ିଆ କେବେ କ୍ଷୁଦ୍ରରେ ସୀମାବଦ୍ଧ ନୁହେଁ । ପୁରୀ, ଭୁବନେଶ୍ୱର, କୋଣାର୍କ ମନ୍ଦିରର ବିଶାଳତା ଏହାର ପରିଚୟ । ଯେଉଁ ଦେଶର ଦେବତା ଜଗନ୍ନାଥ, ସେ ଦେଶର ନଦୀ, ଗିରି ସାଗର, ଶ୍ମଶାନରେ ଯେ ସେହି ମହା ଉଦାର ଭାବ ପ୍ରକାଶ ପାଇବ, ତାହା ସ୍ୱାଭାବିକ । ଓଡ଼ିଶାର ନଦୀ ମହାନଦୀ, ସମୁଦ୍ର ମହୋଦଧି, ଗିରି ମହେନ୍ଦ୍ର, ବୃକ୍ଷ କଳ୍ପବଟ, ଏମନ୍ତ କି ଶ୍ମଶାନ ମାନବର ଅନ୍ତିମ ସ୍ଥାନ ନୁହେଁ, ବରଂ ଅନନ୍ତ ଧାମର ପ୍ରବେଶ ଦ୍ୱାର—ସ୍ୱର୍ଗଦ୍ୱାର ।" ସତ୍ୟବାଦୀ ଚିନ୍ତାଧାରାରେ ଏହି ମହାଭାବର ଅନୁପ୍ରେରଣା ମହାଭାରତୀୟ ଭାବରେ ପ୍ରତିଫଳିତ ହୋଇଅଛି । ଉତ୍କଳ ଭାରତ ଭୂମିରୁ ବିଚ୍ଛିନ୍ନ ନୁହେଁ । ସେଥିପାଇଁ ସତ୍ୟବାଦୀର ସାଧକମାନେ ସର୍ବପ୍ରଥମେ ନିଜର ସୀମିତ ଶକ୍ତି ସାହାଯ୍ୟରେ ଉତ୍କଳର ସୁରକ୍ଷା ଲାଗି ଅଗ୍ରସର ହୋଇଅଛନ୍ତି । ଉତ୍କଳର ଉନ୍ନତିରେ ଭାରତର ଗୌରବ । ଉତ୍କଳର ଉନ୍ନତିରେ ଭାରତର ସମୃଦ୍ଧି । ଏହି ଦେଶାତ୍ମବୋଧ ବିଶ୍ୱପ୍ରୀତିର ନାମାନ୍ତର ମାତ୍ର ।

---

(୮) 'ସତ୍ୟବାଦୀ' ପତ୍ରିକାର ସମ୍ପାଦକୀୟ—(୧୯୧୬), ୧ମ ଖଣ୍ଡ, ୧ମ ସଂଖ୍ୟା—(ଆଦର୍ଶ ଓ ଆକାଂକ୍ଷା)

(୯) ତା ୧୯-୪-୧୯୧୯ରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ଚତୁର୍ଦ୍ଦଶ ଅଧିବେଶନର ସଭାପତିରୂପେ ପଣ୍ଡିତ ଗୋପବନ୍ଧୁଙ୍କ ଅଭିଭାଷଣ ।

ରାଧାନାଥଙ୍କର ଯେ ଓଡ଼ିଶା ପ୍ରତି ଦୃଷ୍ଟି ପଡ଼ନାହିଁ ; ତାହା ନୁହେଁ । ତାଙ୍କର ଜାତୀୟତା ଓଡ଼ିଶାର ପାହାଡ଼ ପର୍ବତ ନଦନଦୀ ପ୍ରକୃତି ବର୍ଣ୍ଣନାରେ ପ୍ରତିଫଳିତ ହୋଇଛି । ସେ ଜାତୀୟ ଭାବରେ ଅନୁପ୍ରାଣିତ ହୋଇ ଛବିଳ ଉତ୍କଳର ଅତୁଳନୀୟ ପ୍ରକୃତିକୁ ସାରସ୍ୱତ ଦରବାରରେ ସମୁନ୍ନତ ଆସନ ଦେବାଲାଗି ଚେଷ୍ଟା କରିଛନ୍ତି । ରାଧାନାଥ ଓଡ଼ିଶାର ବହିଃରୂପ ଦେଖିଛନ୍ତି ; କିନ୍ତୁ ସତ୍ୟବାଦୀ ଗୋଷ୍ଠୀ ଦେଖିଛନ୍ତି ଓଡ଼ିଶାର ଅନ୍ତଃରୂପ । ସୌନ୍ଦର୍ଯ୍ୟପିପାସୁ ରାଧାନାଥ ଗ୍ରୀକ୍ କବି ଓଭିଡ୍‌ଙ୍କ ପ୍ରଣୟ କାହାଣୀକୁ ଓଡ଼ିଶା ମାଟିରେ ଆରୋପ କରି ଚନ୍ଦ୍ରଭାଗା କାବ୍ୟ ସୃଷ୍ଟି କରିଛନ୍ତି । କିନ୍ତୁ ପଣ୍ଡିତ ଗୋପବନ୍ଧୁ ଓ ପଣ୍ଡିତ ନୀଳକଣ୍ଠ ଯଥାକ୍ରମେ କୋଣାର୍କ ଓ ମାୟାଦେବୀ ମନ୍ଦିର ଗଢ଼ି ଉଠିବାରେ ଯେଉଁ କିମ୍ବଦନ୍ତୀ ଓଡ଼ିଶାର ଲୋକମୁଖରେ ଉଦ୍‌ଜୀବିତ ଅଛି ତାକୁ ଅବଲମ୍ବନ କରି କାବ୍ୟ ମନ୍ଦିର ନିର୍ମାଣ କରିଛନ୍ତି । ବାରବାଟୀକୁ ନେଇ ରାଧାନାଥ ଲେଖିଛନ୍ତି 'ଦରବାର' ଓ ଗୋପବନ୍ଧୁ ଲେଖିଛନ୍ତି 'ବିଂଶ ଶତାବ୍ଦୀର ·ପ୍ରଥମ ଦିନରେ ବାରବାଟୀ ଦର୍ଶନ' । ଦରବାରରେ ରହିଛି ଦରବାରୀ ଆଡ଼ମ୍ବର ଆଟୋପର ତୀବ୍ର ସମାଲୋଚନା । ଏହି ସମାଲୋଚନାକୁ ତୀବ୍ରତର କରିବା ପାଇଁ ରାଧାନାଥ ବିଷୟ ଆରମ୍ଭରେ 'ବୀରରକ୍ତ ପିଣ୍ଡେ ଗଢ଼ା' ଐତିହାସିକ ବାରବାଟୀ ଦୁର୍ଗର ଅତୀତ ଗୌରବ କାହାଣୀର ସୂଚନା ଦେଇଛନ୍ତି । (୧୦) ଉତ୍କଳର ଏହି ଦଶା ବିପର୍ଯ୍ୟୟରେ ରାଧାନାଥଙ୍କ ପ୍ରାଣ ବ୍ୟଥାତୁର ହୋଇପଡ଼ିଛି । ଗୋପବନ୍ଧୁ ମଧ୍ୟ ଉତ୍କଳର ଗର୍ବ ଗୌରବ ବାରବାଟୀର ଗୌରବୋଜ୍ଜ୍ୱଳ ଚିତ୍ର ଦେବା ସହିତ ତାର ବିପର୍ଯ୍ୟୟରେ ଦାରୁଣ ବ୍ୟଥା ଅନୁଭବ କରିଛନ୍ତି । ବୀର ବିହାରସ୍ଥଳୀ ଶତ୍ରୁତ୍ରାସୀ ବାରବାଟୀକୁ ସ୍ତୂପାକାର

---

(୧୦) କାଞ୍ଚି ଅଭିଯାନେ ଯେ ଦୁର୍ଗ ପ୍ରାଚୀର
ବାଦ୍ୟନାଦେ ଦେଇଥିଲା ପ୍ରତିଗିର
ଜରାଜୀର୍ଣ୍ଣ ବେଶେ ଦେଖଇ ସେ ଆଜ
ନବ୍ୟ ଉତ୍କଳର ଏ ସଭ୍ୟ ସମାଜ
ପୂର୍ବ ନରପତି ପ୍ରେତ ଆତ୍ମାମାନ
ବ୍ୟୋମେ ବ୍ୟୋମଯାନେ ହୋଇ ଅଧିଷ୍ଠାନ
+ + +
ଦେଖୁନାହାନ୍ତି କି ମନେଦହି ଲାଜ
କି ଥିଲା ଏ ରାଜ୍ୟ କି ହୋଇଛି ଆଜ"

ରାଧାନାଥ ଗ୍ରନ୍ଥାବଳୀ—ପୃ ୬୭୭

ମାଟିରୂପେ ଦେଖି କବିଙ୍କ ହୃଦୟ ଫାଟିଯାଇଛି । ଫଳରେ ସେ ଗଭୀର ଖେଦ ପ୍ରକାଶ କରିଛନ୍ତି ।

"ଏହି ଯେ ସମ୍ମୁଖେ ବାରବାଟୀ ପଦା
ଭାଙ୍ଗିଅଛି ଯହିଁ ଲକ୍ଷ ଲକ୍ଷ ଗଦା
ଥିଲା ଯେହୁ ବୀର ବିହାର-ପ୍ରାଙ୍ଗଣ
ଭ୍ରମେ ତହିଁ ଆଜ ଶ୍ୱାନ ଶିବାଗଣ

× × ×

ପୂର୍ବ ପୁରୁଷର ପବିତ୍ର ଶ୍ମଶାନ
ଦେଶର ଜାତିର ଗଉରବ ଗାନ
ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ
ଉଦ୍ଧରିବା ପାଇଁ କଲେ ତନୁକ୍ଷୟ"

'ବନ୍ଦୀର ଆତ୍ମକଥା', 'କାରା କବିତା' ଓ 'ଅବକାଶ ଚିନ୍ତା' କବି ଗୋପବନ୍ଧୁଙ୍କ ଜାତୀୟଭାବ ପ୍ରଣୋଦିତ କୋମଳ ହୃଦୟର ଅଖଣ୍ଡ ପରିପ୍ରକାଶ ମାତ୍ର । ଦେଶର ପ୍ରାଚୀନ ଐତିହ୍ୟ ବଳିଷ୍ଠ କର୍ତ୍ତବ୍ୟନିଷ୍ଠାର ଅମରବାଣୀ ଗୋପବନ୍ଧୁଙ୍କ ପ୍ରାଣରେ ଯେଉଁ ଝଙ୍କାର ତୋଳିଛି, ତାହାହିଁ ତାଙ୍କ କବିତାର ପ୍ରତି ଛନ୍ଦରେ ଜୀବନ୍ତ ଭାବରେ ପ୍ରକାଶିତ ହୋଇଅଛି । ଏକ ବଳିଷ୍ଠ ଜାତୀୟ ସାହିତ୍ୟ ଗଠନ ଉଦ୍ଦେଶ୍ୟରେ ପଣ୍ଡିତ ଗୋପବନ୍ଧୁ ଏବଂ ତାଙ୍କର ଅନ୍ୟାନ୍ୟ ସହକର୍ମୀ ଉଦ୍ୟମଶୀଳ ହୋଇଥିବାର ଦେଖାଯାଏ । "ଫକୀରମୋହନ ଗଦ୍ୟରେ ଯାହା କରିଗଲେ ଗୋଦାବରୀଶ 'ଆଲେଖିକା'ରେ ଜନମୁଖ ଭାଷାକୁ ପଦ୍ୟରେ ସେହି ଗୌରବ ଦେଇଗଲେ । ପୁଣି ଆମେ ଜାତୀୟ କବିତା କହିଲେ ହାଣ, କାଟ, ମାର, ଉଠ, ଧାଅଁ ବୋଲି ବୁଝିବା ଏକ ମାରାତ୍ମକ ଭ୍ରମ । ଜାତୀୟ କାବ୍ୟ କବିତା ସେଇ ଯେଉଁଥିରେ ଜାତିର ଚିତ୍ତଲୋକ ପ୍ରତିବିମ୍ବିତ ହୋଇଛି । ଉତ୍କଳ ପ୍ରକୃତି ଓ ଉତ୍କଳ ଇତିହାସକୁ କାବ୍ୟ ଜଗତରେ ବରେଣ୍ୟ ଆସନ ଦେଇ ରାଧାନାଥ ଯଥାର୍ଥ ଜାତୀୟ କବି ହେଲେ । କିନ୍ତୁ ଓଡ଼ିଆ ଜୀବନର ବହିଃରଙ୍ଗର ହିଁ ମୁଗ୍ଧ ବର୍ଣ୍ଣନା କରୁକରୁ ରାଧାନାଥ ଲେଖନୀ କ୍ଳାନ୍ତ ହୋଇପଡ଼ିଛି । ସେ ଓଡ଼ିଆ ଜାତିର ଆତ୍ମାରେ ପ୍ରବେଶ କରିପାରିନାହାନ୍ତି × × ଆଲେଖିକା କେବଳ କେତୋଟି ଗାଥା ବା କାହାଣୀ ନୁହେଁ ଏହା ଓଡ଼ିଆ ଜାତିର ଚିତ୍ତଲୋକର ଚିତ୍ରଶାଳା ।" (୧୧) କବି ନୀଳକଣ୍ଠଙ୍କ 'କୋଣାର୍କେ' କାବ୍ୟ ଓଡ଼ିଆ ଜାତିର ଐତିହ୍ୟ ଓ ସଂସ୍କୃତିର ପରିମାପକ ରୂପେ ସତ୍ୟବାଦୀ ଯୁଗର ମୁଖପାତ୍ର କହିଲେ ଅତ୍ୟୁକ୍ତି ହେବନାହିଁ । ଉତ୍କଳର ପ୍ରାଚୀନ

(୧୧) ଓଡ଼ିଆ ସାହିତ୍ୟର ଇତିହାସ—ଡଃ ମାୟାଧର ମାନସିଂହ, ପୃ-୩୬୩ ।

ଗୌରବ ସମ୍ପୃକ୍ତ ନୌବାଣିଜ୍ୟ, ପ୍ରଚଣ୍ଡ ବୀରତ୍ୱ, ରାଜ୍ୟ ବିସ୍ତାର, କଳାଗତ ଉତ୍କର୍ଷ, ସର୍ବୋପରି ଉନ୍ନତ ପ୍ରେମଚିନ୍ତା ଓ ସମାଜ ଚିନ୍ତା ପ୍ରଭୃତିକୁ ମୂଳକରି ଉତ୍କଳର ସୁସମୃଦ୍ଧ ଇତିହାସ ସେ 'କୋଣାର୍କେ' ଓ ଖାରବେଳ କାବ୍ୟରେ ପ୍ରକାଶ କରିଛନ୍ତି । ଏ ଦେଶର ପ୍ରାଚୀନ ଇତିହାସ ଓ ପରମ୍ପରାର ପୃଷ୍ଠଭୂମି ଉପରେ 'କୋଣାର୍କେ' କାବ୍ୟ ରଚିତ ହୋଇଥିଲେ ମଧ୍ୟ ଏଥିରେ କବିସୁଲଭ ରସମୟ କଳ୍ପନା, ସରସ ଆବେଗ ତଥା କାବ୍ୟିକ ଚମତ୍କାରିତା ଏକାନ୍ତ ଭାବରେ ସାହିତ୍ୟିକ ଗୌରବରେ ବିମଣ୍ଡିତ । ଦେଶବାସୀଙ୍କୁ ପବିତ୍ର ଦେଶାତ୍ମବୋଧରେ ଅନୁପ୍ରାଣିତ କରିବା ନିମନ୍ତେ କବି ନୀଳକଣ୍ଠ ପୁରାଣ କୀର୍ତ୍ତି କଙ୍କାଳସାର ଦେଶର ଇତିହାସକୁ ଯେପରି ନିବିଡ଼ ଭାବରେ ଆଶ୍ରୟ କରିଛନ୍ତି ତାହାହିଁ ସତ୍ୟବାଦୀଯୁଗୀୟ ସାହିତ୍ୟର ପ୍ରାଣ ପ୍ରକାଶକ ଆଦର୍ଶ ବୋଲି ମନେହୁଏ । ଉତ୍କଳୀୟ ସଂସ୍କୃତିର ଯଥାର୍ଥ ସ୍ୱରୂପ ଉଦ୍‌ଘାଟନରେ ଓ ସେଥିରେ ଜଗନ୍ନାଥ ଧର୍ମର ବୈଶିଷ୍ଟ୍ୟ ପ୍ରତିପାଦନରେ, ଭଗବଦ୍ ଗୀତାଠାରୁ ଆରମ୍ଭ କରି ଭୀମ ଭୋଇଙ୍କ ପର୍ଯ୍ୟନ୍ତ, ଏ ଜାତିର ସାଂସ୍କୃତିକ ଐତିହ୍ୟକୁ ଆଲୋଚନାରେ ଏକ ନିର୍ଦ୍ଦିଷ୍ଟ ରୂପ ପ୍ରଦାନ କରିବାରେ ମନେହୁଏ ପଣ୍ଡିତ ନୀଳକଣ୍ଠଙ୍କ ଜୀବନ ଥିଲି ଯେପରିକି ବିଧି ପ୍ରେରିତ । ଓଡ଼ିଆ ଜାତୀୟ ସାହିତ୍ୟ ଓ ସଂସ୍କୃତିରେ ସତ୍ୟବାଦୀ ଗୋଷ୍ଠୀର ଭୂମିକା ଏହି ଦୃଷ୍ଟିରୁ ନିଶ୍ଚିତଭାବେ ଗୁରୁତ୍ୱପୂର୍ଣ୍ଣ ।

## ପ୍ରାକ୍ ସବୁଜ ରୋମାଣ୍ଟିକ୍ ଭାବନା —

ରାଧାନାଥୀ ସାହିତ୍ୟର ରୋମାଣ୍ଟିକ୍ ଭାବଧାରା ଭାରତର ବୈଦିକ ସାହିତ୍ୟ, ପୁରାଣ ସାହିତ୍ୟ, ସଂସ୍କୃତ ସାହିତ୍ୟ କିମ୍ବା ଓଡ଼ିଶାର ମଧ୍ୟଯୁଗୀୟ ସାହିତ୍ୟ ନୁହେଁ, ତାଙ୍କ ସୃଷ୍ଟିକୁ ନିୟନ୍ତ୍ରଣ କରିଛି ପାଶ୍ଚାତ୍ୟ ସାହିତ୍ୟ । 'କେଦାର ଗୌରୀ' କାବ୍ୟ ଆଲୋଚନା କଲେ ସ୍ପଷ୍ଟ ଅନୁଭୂତ ହେବ ପ୍ରେମପାଇଁ ସାମାଜିକ ବାଧାବନ୍ଧନ ଛିନ୍ନକରି, ନିନ୍ଦା, କୁତ୍ସା ଓ ତିରସ୍କାରକୁ ଭ୍ରୂକ୍ଷେପ ନ କରି କେଦାର ଓ ଗୌରୀ ପଳାୟନ କରିଛନ୍ତି । 'ଯଯାତି କେଶରୀ'ରେ ରୋମାନ୍‌ସ ପ୍ରଣୟର ଏକ ଉତ୍କୃଷ୍ଟ ଚିତ୍ର କଳ୍ପନାର ଯାଦୁକରୀ ସ୍ପର୍ଶରେ ଅନବଦ୍ୟ ହୋଇଉଠିଛି । ରୋମାନ୍‌ସ ଚିତ୍ରଣରେ ଯେଉଁ ପରିପୂର୍ଣ୍ଣତାର ଚିତ୍ର କେଦାରଗୌରୀରେ ଥିଲି ଅଲଭ୍ୟ, ତାହା ଏଥିରେ ସମ୍ପୂର୍ଣ୍ଣ ହୋଇଅଛି । ବେଳାଭୂମିର ରୋମାଣ୍ଟିକ୍ ପରିବେଶରେ ଆଲୁଳାୟିତା କିଶୋରୀ 'ଚନ୍ଦ୍ରଭାଗା'ର କନ୍ଦୁକକ୍ରୀଡ଼ା ପ୍ରଚଣ୍ଡ ତେଜସ୍ୱୀ ସୂର୍ଯ୍ୟଙ୍କ ମନରେ ପ୍ରଣୟକାମନା ଉଜ୍ଜୀବିତ କରିଛି । ସେ ନାରୀ ମନର ଇଚ୍ଛା ଅନିଚ୍ଛା ପ୍ରତି ତିଳେମାତ୍ର ଧ୍ୟାନ ନ ଦେଇ ତାକୁ ଧରିବା ପାଇଁ ପଶ୍ଚାଧାବନ କରିଛନ୍ତି । ଓଭିଡ୍‌ଙ୍କର 'ମେଟାମରଫିସିସ୍' କାବ୍ୟର ଆପୋଲୋ ଏଣ୍ଡ ନେ ଉପାଖ୍ୟାନ

ତାଙ୍କର ଅବଲମ୍ବନ । ସେହିପରି 'ଉଷା' କାବ୍ୟରେ 'ଉଷା'ର କ୍ରୀଡ଼ାଚଞ୍ଚଳ କୈଶୋର ଏବଂ ପ୍ରାପ୍ତଯୌବନ କାଳରେ ଧନୁ ହସ୍ତରେ ମୃଗୟା ବ୍ୟପଦେଶରେ ଭ୍ରମଣ ରୋମାଣ୍ଟିକ୍ ଚିତ୍ର ରୂପେ ଗୃହୀତ । ନାରୀ ମନର ଏକ ଅନନ୍ୟ ସାଧାରଣ ଅସ୍ୱାଭାବିକ ଚିତ୍ର ଉଷା ଚରିତ୍ରକୁ ଉନ୍ମୋଚିତ କରିଅଛି । ପ୍ରେମ ଓ ସୌନ୍ଦର୍ଯ୍ୟ ଚେତନା ସହିତ ଅନ୍ୟ ଏକ ରୋମାଣ୍ଟିକ୍ ବିଭବ ହେଲା କବିଙ୍କର ସ୍ୱପ୍ନପ୍ରବଣ ମନୋଭାବ । ଏହି ପ୍ରେମ ପୁଣି ଦୁଇଭାଗରେ ବିଭକ୍ତ । ଗୋଟାଏ ପ୍ରକୃତି ପ୍ରେମ ଏବଂ ଅନ୍ୟଟି ମାନବ ପ୍ରେମ । ରାଧାନାଥ ତାଙ୍କ ରଚନାରେ ଇନ୍ଦ୍ରିୟଗ୍ରାହ୍ୟ ବହିଃ ପ୍ରକୃତି ପ୍ରତି ଯେପରି ଆକୃଷ୍ଟ ମାନବ ଜୀବନ କିମ୍ବା ମାନବର ଅନ୍ତଃପ୍ରକୃତି ପ୍ରତି ତାଙ୍କର ସେତେ ଆକର୍ଷଣ ନାହିଁ । କବିଙ୍କ ଭାଷାରେ କହିବାକୁ ଗଲେ "ମୋର ରଚନା ସହିତ ଜୀବନର କୌଣସି ସମ୍ପର୍କ ନାହିଁ । ମୁଁ କେବଳ ବହିଃସଂସାରର ପ୍ରାକୃତିକ ଦୃଶ୍ୟର ସୌନ୍ଦର୍ଯ୍ୟ ଧେନ ବ୍ୟାପୃତ ଥିଲି । ପାର୍ବତୀୟ ପ୍ରଦେଶରେ ପୁନଃ ପୁନଃ ପରିଭ୍ରମଣ ନିବନ୍ଧନ ପ୍ରକୃତି ସହିତ ଆଳାପ ପରିଚୟର ମଧ୍ୟ ଯଥେଷ୍ଟ ସୁବିଧା ପାଇଥିଲି । ମୋର ଓଡ଼ିଆ କାବ୍ୟଗୁଡ଼ିକ ଉତ୍କଳୀୟ ପ୍ରକୃତିର ପ୍ରତିକୃତି କହିଲେ ମଧ୍ୟ ଚଳେ ।" (୧୨) କବି ବହିଃସଂସାରର ପ୍ରାକୃତିକ ଦୃଶ୍ୟର ସୌନ୍ଦର୍ଯ୍ୟ ପ୍ରତି ଆକୃଷ୍ଟ ହେଲେ ମଧ୍ୟ ତାଙ୍କର ଅନୁଭୂତି ବା ସୌନ୍ଦର୍ଯ୍ୟବୋଧର ପରିସର କେବଳ ସେତିକରେ ସୀମିତ ହୋଇଯାଇ ନାହିଁ । ଇଂରାଜୀ କବି କୀଟସ୍‌ଙ୍କ ପରି ତାଙ୍କର ରୂପ ଓ ସୌନ୍ଦର୍ଯ୍ୟ ପିପାସା ପ୍ରବଳ ; ପୃଥିବୀର ପ୍ରତ୍ୟେକଟି ସୌନ୍ଦର୍ଯ୍ୟ ଉପାଦାନ ତାଙ୍କ ପ୍ରାଣରେ ଆନନ୍ଦ ଆଣିଦେଇଛି । "ସୁନ୍ଦରେ ତୃପ୍ତିର ଅବସାଦ ନାହିଁ/ଯେତେ ଦେଖୁଥିଲେ ନୂଆ ଦିଶୁଥାଇ ।" (୧୩) (ଚିଲିକା) ନାରୀର ରୂପ ଓ ପ୍ରକୃତିର ଶୋଭାସମ୍ଭାର ଉଭୟ ତାଙ୍କୁ ଆକୃଷ୍ଟ କରିଛି । ଏହାରି ମଧ୍ୟ ଦେଇ ରୂପପ୍ରେମୀ ରାଧାନାଥଙ୍କର ରୋମାଣ୍ଟିକ୍ କବିମନର ପରିଚୟ ପାଇଥାଉଁ । "ପ୍ରକୃତିର ପ୍ରାଣ ସ୍ପନ୍ଦନ, ରୂପ ରମଣୀୟତା, 'ଛାୟା ଆଲୋକର ଅପୂର୍ବ ବିଳାସ' ଓ ତା'ର ବିଭିନ୍ନ ମୂର୍ଚ୍ଛନା ରାଧାନାଥଙ୍କ କାବ୍ୟପୁରରେ ଯେପରି ସଚିତ୍ରଭାବେ ସଣଗଗ ରୂପସାଧନାରେ ସର୍ବଦା ସେ ମୁଗ୍ଧ ଓ ତନ୍ମୟ । କିନ୍ତୁ ରୂପ ଭାବନାରେ ସେ ଦ୍ୱୈତବାଦୀ, ରୂପ ପ୍ରତିମାର ଉପାସକ" । (୧୪) ଚିଲିକା, ମହାଯାତ୍ରା, ଉଷା, ପାର୍ବତୀ, ଚନ୍ଦ୍ରଭାଗା, ନନ୍ଦିକେଶରୀ, କେଦାରଗୌରୀ

---

(୧୨) ରାଧାନାଥ ଜୀବନୀ—ପୃ ୫୯୨

(୧୩) "A thing of beauty is a joy for ever—Ode to the Gracian Urn—Keats

(୧୪) କାବ୍ୟ ଓ କଳାକାର—ଶ୍ରୀ ଚିନ୍ତାମଣି ବେହେରା— ପୃ—୪୦

ପ୍ରଭୃତି ଯେକୌଣସି ଦୀର୍ଘକୁ ଲକ୍ଷ୍ୟକଲେ ସ୍ପଷ୍ଟ ଜଣା ପଡ଼ିବ ଯେ ରାଧାନାଥଙ୍କର ଶିଳ୍ପମାନସର ବୃହତ୍ତ ବୃତ୍ତାଂଶ ଯେପରି ପ୍ରକୃତି ଭାବନା ହିଁ କେବଳ ଅଧିକାର କରି ରହିଛି ।

ରୋମାଣ୍ଟିକ୍ ବିଷାଦବାଦ କବିଙ୍କ ଚେତନାକୁ ବହୁସ୍ଥଳରେ ଆକ୍ରାନ୍ତ କରିଥିବାର ଦେଖାଯାଏ । ଶାରୀରିକ ବା ମାନସିକ ଦୁଃଖର ପ୍ରତିଫଳନ ଶିଳ୍ପ ସୃଷ୍ଟିରେ ଯେତେ ନ ଘଟେ, ଆତ୍ମିକ ସୁଖ ଦୁଃଖର ଅନୁଭୂତିର ଭଙ୍ଗୀଟି ହିଁ ବିଶେଷ ମାତ୍ରାରେ ଶିଳ୍ପର ଜନ୍ମ ଜାତକକୁ ନିୟନ୍ତ୍ରଣ କରିଥାଏ । କବି ରାଧାନାଥଙ୍କ ଦୁଃଖବାଦ ଅନେକ ପରିମାଣରେ ଏହି କବି ସୁଲଭ ନୈରାଶ୍ୟବାଦୀ ଦର୍ଶନ ଉପରେ ପ୍ରତିଷ୍ଠିତ । ଦୁଃଖର ପବିତ୍ର ବେଦୀ ଉପରେ ରାଧାନାଥଙ୍କ ଜୀବନ ଦର୍ଶନ ପ୍ରତିଷ୍ଠିତ ହୋଇଥିଲେ ମଧ୍ୟ ଦୁଃଖାନଳର ଶିଖା ମଧ୍ୟ ଦେଇ ତା'ର ଆତ୍ମା ସୌନ୍ଦର୍ଯ୍ୟବୋଧର ଦର୍ଶନ । ପ୍ରକୃତିପ୍ରାଣତା'ର ଦର୍ଶନ ଓ ଅଶ୍ରୁର ମଧ୍ୟ ଦେଇ ମାନବିକ ମୂଲ୍ୟ ମହତ୍ତ୍ୱ ସ୍ୱୀକୃତିର ଦର୍ଶନ ଆଡ଼କୁ ପ୍ରସାରିତ । "I fall upon the thorns of life. I bleed"—ଶେଲୀଙ୍କର ଏ ରକ୍ତରାଗ ସମ୍ବଳିତ ଅନୁଭୂତି ଯେପରିକି ପ୍ରତି ରୋମାଣ୍ଟିକ୍ କବିର ଆତ୍ମାନୁଭୂତି । "ଆଶାତୀତର ନିରନ୍ତର ପ୍ରତ୍ୟାଶା ଓ ଅନାତ୍ମୀୟତାର ନିୟତ ଆତ୍ମୀୟକରଣ, ରୋମାଣ୍ଟିକ୍ କାବ୍ୟ-ସାଧନାର ମୂଳ ଲକ୍ଷ୍ୟ ହୋଇଥିବାରୁ ପ୍ରାଣର ଦୁଃଖାନୁଭୂତି ବରଣ କରିବା କବି ପକ୍ଷରେ ସ୍ୱାଭାବିକ ।" (୧୫) ପ୍ରାଚୀନ କାବ୍ୟ ସାହିତ୍ୟ ସୁଖ ସମୃଦ୍ଧିର ଚିତ୍ର, ମିଳନ-ମଙ୍ଗଳର ଚିତ୍ର ଓ ଆଦର୍ଶବାଦୀତାର ଚିତ୍ରରେ ଋଦ୍ଧିମନ୍ତ । ତେଣୁ ଦୁଃଖାନ୍ତକତା ସେମାନଙ୍କ ସୃଷ୍ଟିରେ ଥିଲା ବିରଳ । ରାଧାନାଥ ପ୍ରଥମ କରି ବିୟୋଗାନ୍ତକ କାବ୍ୟ ରଚନା କରିଛନ୍ତି । ପାର୍ବତୀ, ମହାଯାତ୍ରା, ଉଷା, ନନ୍ଦିକେଶରୀ, ଚନ୍ଦ୍ରଭାଗା ବା କେଦାରଗୌରୀ ଯେ କୌଣସି କାବ୍ୟ କବିତାକୁ ଲକ୍ଷ୍ୟକଲେ ସ୍ପଷ୍ଟ ବୁଝାଯିବ ଯେ ଦୁଃଖ, ବିଚ୍ଛେଦ ଓ ଅଶ୍ରୁ ତାଙ୍କ ଶିଳ୍ପ ସୃଷ୍ଟିରେ ଆଧିପତ୍ୟ ବିସ୍ତାର କରି ରହିଛି । ଏହି ବିଷାଦବାଦୀ ଚିନ୍ତା ଏବଂ ରୋମାଣ୍ଟିକ୍ ଭାବଚେତନା ସତ୍ୟବାଦୀ ସାହିତ୍ୟଗୋଷ୍ଠୀରେ ମଧ୍ୟ ଦେଖାଯାଏ । ଗୋଦାବରୀଶଙ୍କ ଗୀତି କାବ୍ୟରେ ଏହି ଭାବଧାରା ସ୍ପଷ୍ଟ ହୋଇଛି । ପ୍ରକୃତି ମଧ୍ୟରେ ସେ କେବଳ ଚିନ୍ମୟ ଆନନ୍ଦର ସନ୍ଧାନ ପାଇ ନ ଥିଲେ, ଉନ୍ନତ ଓ ମହାସ୍ପ୍ରାନ ଭାବ ଓ ଅନୁଭୂତି ମଧ୍ୟ ଉପଲବ୍ଧି କରୁଥିଲେ । ତାଙ୍କର ଏହି ପ୍ରକୃତିପ୍ରାଣତା ଏବଂ ଦାର୍ଶନିକତା 'କିଶଳୟ' ଓ 'କଳିକା'ର ପ୍ରତ୍ୟେକ କବିତାରେ ସ୍ପଷ୍ଟ ଭାବରେ ପ୍ରତିଫଳିତ । ଇଂରେଜ କବିଙ୍କ ପରି ଗୋଦାବରୀଶ ପ୍ରାକୃତିକ ସୁଷମାରେ ଭଗବାନଙ୍କ ସତ୍ତା

---

(୧୫) କାବ୍ୟ ଓ କଳାକାର—ଶ୍ରୀ ଚନ୍ଦ୍ରମଣି ବେହେରା—ପୃ. ୪୦

ଉପଲବ୍ଧ କରି ନାହାନ୍ତି । ତାଙ୍କର 'ସଂଯୋଗ ଘରେ', 'ବିହଗ ପରାଣ ଯେନା', 'ଯାଉଛି', 'କିଏ ତୁମେ', 'ବିଧବା', 'ଦୂରରୁ ଅଧିକ ଦୂରେ' ପ୍ରଭୃତି ଗୀତି-କବିତା ମାନଙ୍କରେ ଗୋଦାବରୀଶଙ୍କର ରୋମାଣ୍ଟିକ୍ ଦୃଷ୍ଟିଭଙ୍ଗୀ ଅଧିକ ସଂପ୍ରସାରିତ ହୋଇଛି । ପ୍ରେମ-ପିପାସିତ ଶେଲିଙ୍କ ପରି ଗୋଦାବରୀଶ କେଉଁଠାରେ ପ୍ରେମିକ-ପ୍ରେମିକାର ବିରହ ସନ୍ତାପ ଜନିତ ବେଦନା ଓ ଜୈବ-ପ୍ରବୃତ୍ତିର ଅସଂଯତ ଉଦ୍ଦୀପନାର ଚିତ୍ର ଅଙ୍କନ କରି ନାହାନ୍ତି । କବିଙ୍କର ଅଧିକାଂଶ କବିତା ରୋମାଣ୍ଟିକ୍ ବିଷାଦ ବାଦିତା ଭିତରେ ମୂର୍ତ୍ତି ହୋଇ ଉଠିଛି । ତାଙ୍କର 'ହୋଇଥାନ୍ତି', 'ଆଅ ବାବୁ' ପ୍ରଭୃତି କବିତାର ଅନ୍ତଃସ୍ୱର ବିଷାଦମୟ ସ୍ମୃତିର ଚିହ୍ନ ବହନ କରେ । ତାଙ୍କର ପ୍ରତ୍ୟେକ ଶୋକଗୀତିକା ଅଶ୍ରୁ ବିନ୍ଦୁରେ ଯେପରି ଛଳ ଛଳ, ପରଲୋକଗତ ବ୍ୟକ୍ତିର ବିଷାଦମୟ ସ୍ମୃତିରେ ସେହିପରି ସୁନ୍ଦର ଓ ମହିମାନ୍ୱିତ । ଗୋଦାବରୀଶଙ୍କ ଗୀତିକବିତା ଗୁଡ଼ିକରେ ଆବେଗର ସ୍ନିଗ୍ଧ ମଧୁର ଆବେଶ ମଧ୍ୟରେ ଉଚ୍ଛ୍ୱାସର ମୋହନ ମାଧୁରୀ ଅଭେଦ୍ୟ ଭାବରେ ଜଡ଼ିତ ।

ସତ୍ୟବାଦୀ ଯୁଗର ସାହିତ୍ୟିକମାନେ ରାଧାନାଥୀ କାବ୍ୟ ଚେତନାକୁ ପୂରାପୂରି ଅସ୍ୱୀକାର କରି କିଛି ଗୋଟାଏ ସମ୍ପୂର୍ଣ୍ଣ ନୂତନ ସାହିତ୍ୟ ସୃଷ୍ଟିକରି ପକାଇ ନାହାନ୍ତି । କାବ୍ୟକାର ନୀଳକଣ୍ଠ ରାଧାନାଥୀ ସାହିତ୍ୟର ଚନ୍ଦ୍ରଭାଗା, ନନ୍ଦିକେଶ୍ୱରୀ ବା କୌଶଲ୍ୟା କଣ୍ଠରେ ସତ୍ୟର ଯେଉଁ ସକରୁଣ 'ଅପଲାପ' ଶୁଣିଥିଲେ, ତାହାର ପ୍ରତିବାଦ ଇତିହାସର ପୀଠିକା ଉପରେ କରିଛନ୍ତି 'ମାୟା ଦେବୀ'ରେ । ରାଧାନାଥ ସାହିତ୍ୟର ପ୍ରତିବାଦ କରିବାକୁ ଯାଇ ସେହି ରୋମାଣ୍ଟିକ୍ ଦୃଷ୍ଟିଭଙ୍ଗୀ ଭିତରେ ନୀଳକଣ୍ଠ ମଧ୍ୟ ଛନ୍ଦି ହୋଇଛନ୍ତି । ରାଧାନାଥଙ୍କ ପରି ଅତି ମାନବିକ ଓ ଅତି ଭୌତିକ ବିଚ୍ଛୁ ପଦ୍ଧତିର ଆଶ୍ରୟ ନେଇଛନ୍ତି । ସ୍ୱପ୍ନବାଣୀ ଓ ମୃତ୍ୟୁ ପରେ ଦୈବୀ ନିର୍ଦ୍ଦେଶ (ଯାହା 'ଉଷା'ରେ ସ୍ପଷ୍ଟ)ପରି କେତେକ ଆତ୍ମିକ ଓ କାବ୍ୟିକ ପଦ୍ଧତି ପାଖରେ ଅଲକ୍ଷ୍ୟରେ ଆତ୍ମସମର୍ପଣ କରିଛନ୍ତି । ବାସ୍ତବତାର ନଗ୍ନରୂପ ଦେଖିବାକୁ ସେ ରାଧାନାଥଙ୍କ ପରି କୁଣ୍ଠିତ ଓ ପରାଙ୍ମୁଖ । ତେଣୁ କଳ୍ପନାକୁ ଏକମାତ୍ର ଆଶ୍ରୟ କରିଛନ୍ତି, 'ମାୟାଦେବୀ'ର ଆରମ୍ଭ ନାଟକୀୟ ଓ ରୋମାଣ୍ଟିକ୍ । ସେହି ନାଟକୀୟତା ଭିତରେ ରୋମାଣ୍ଟିକ୍ ପରିବେଶ ସୃଷ୍ଟି କରିଛି ଜମ୍ମୁ ରାଜକେମାଙ୍କ ସ୍ୱପ୍ନ କାହାଣୀ । ଚିଲିକାରେ ଯେପରି ରକ୍ତବାହୁ, ପଦ୍ମାବତୀ, ଶ୍ରୀମତୀ ମାଣିକୀ ପ୍ରଭୃତିଙ୍କ ଐତିହାସିକ ତଥ୍ୟର ଅବତାରଣା କରାଯାଇଛି ନୀଳକଣ୍ଠଙ୍କ ତରେଇ ଯୁଦ୍ଧ, ପୃଥ୍ୱୀରାଜ, ଇନ୍ଦ୍ରପ୍ରସ୍ଥ, ବେତ୍ରବତୀ କୂଳ ଆଦି ପୌରାଣିକ ଓ ଐତିହାସିକ ସ୍ଥାନ ତାଙ୍କ ସ୍ମୃତିକୁ ଦୋହଲାଇ ଦେଇଛି । ରାଧାନାଥଙ୍କ ପରି ନୀଳକଣ୍ଠ 'ମାୟାଦେବୀ'ର ଉପସଂହାରରେ ମୃତ ମାୟାଦେବୀଙ୍କ ଅବରୁଦ୍ଧ ସିନ୍ଦୁକ

ଭିତରୁ ପୁନର୍ବାର ଜୀବନ୍ୟାସ ଦେବା ଦ୍ଵାରା ଅତି ମାନବିକ ଚିତ୍ରର ଅବତାରଣା କରାଯାଇଛି । ସତ୍ୟବାଦୀ ଗୋଷ୍ଠୀ ରାଧାନାଥ ଜାତୀୟତାର ଉତ୍ତର ସାଧକ । ଲେଖା ପଦ୍ଧତିର ଅନୁକରଣକାରୀ । "କାଳ ଦନ୍ତାଘାତେ ସ୍ୱଭଗ୍ନ ପ୍ରଭୂ ମୋହନ କଳା/ଚନ୍ଦ୍ରିକା-ଧବଳ-କୋଣାର୍କ ପ୍ରଭୁ ଭାରତ-ମାଳା" (୧୬) ସେହିପରି ରାଧାନାଥଙ୍କର "ଉତ୍କଳ କମଳା ବିଳାସ ଦୀର୍ଘିକା (ଚିଲିକା ପୃ.୧) । ସତ୍ୟବାଦୀ ଯୁଗର ପଣ୍ଡିତ ଗୋପବନ୍ଧୁ ଓ ଗୋଦାବରୀଶଙ୍କ ଅପେକ୍ଷା ପଣ୍ଡିତ ନୀଳକଣ୍ଠଙ୍କ ରଚନାରେ ଏହି ଭଙ୍ଗୀ ବିଶେଷ ଭାବରେ ପ୍ରକଟିତ ହୋଇଛି ।

ଗୋପବନ୍ଧୁଙ୍କ ରୋମାଣ୍ଟିକ୍ ବିଷାଦବାଦ ସମ୍ପର୍କରେ ଡଃ ମାୟାଧର ମାନସିଂହ କହିଛନ୍ତି—"ଜନ୍ମରୁ ଭାବ ଥିଲେହେଁ ; ମହତ୍ତ୍ୱପ୍ରାଣ ଗୋପବନ୍ଧୁ, ବୋଧହୁଏ କେବଳ ନିଜର ଅହରହ କରୁଣାସ୍ପନ୍ଦିତ ମହତ ପ୍ରାଣକୁ ଜନଚିତ୍ତ ସହିତ ମିଶାଇ ଦେବାର ଦୁର୍ବାର ଆଗ୍ରହବଶତଃ ହୋଇଉଠିଲେ ଏକ ମର୍ମସ୍ପର୍ଶୀ ବକ୍ତା । ଉଚ୍ଚ-ଭାବାକୁଳ ତାଙ୍କର ବାଣୀ ସାଧାରଣ ବଚନର ଊର୍ଦ୍ଧ୍ୱକୁ ଉଠି ହୋଇପଡ଼ୁଥିଲା କବିତା × × ନିଜ ବାଣୀର ଉଦ୍‌ବେଳନରେ ଗୋପବନ୍ଧୁ ବିରାଟଜନସଂଘ ସବୁକୁ ଯେପରି ହସେଇ ଓ କନ୍ଦେଇ ପାରୁଥିଲେ, ତାହା ଉତ୍କଳ ଦେଶରେ ପୂର୍ବେ ବା ପରେ ଏଯାବତ୍ ଦେଖାଯାଇନାହିଁ । (୧୭) ଗୋପବନ୍ଧୁଙ୍କର ଅଧିକାଂଶ କବିତା କରୁଣ ରସରେ ଅନୁରଣିତ । ଏହି ବେଦନା କେତେବେଳେ ବ୍ୟକ୍ତିଗତ, କେତେବେଳେ ସମଷ୍ଟିଗତ ଭାବନା ଉପରେ ପ୍ରତିଷ୍ଠିତ । କର୍ମକ୍ଷେତ୍ରରେ ଦୀନଦୁଃଖୀ-ମାନଙ୍କ ପାଇଁ ଯେଉଁ ଅଶ୍ରୁ ନିର୍ଝର, କବିତାରେ ମଧ୍ୟ ସେଇ ନିରବଚ୍ଛିନ୍ନ ଅଶ୍ରୁପ୍ରବାହ । ସ୍ଵଦେଶପ୍ରାଣ ଗୋପବନ୍ଧୁ ଉତ୍କଳର ଅତୀତ ଗୌରବର ଅବଲୁପ୍ତି ଦେଖି ଅନେକ କବିତାରେ ତାଙ୍କର ଦୁଃଖାନୁଭୂତି ଅଭିବ୍ୟକ୍ତ କରିଅଛନ୍ତି । ତାଙ୍କ ଚକ୍ଷୁରେ ଓଡ଼ିଶା ଥିଲା ବଡ଼ ଏବଂ ଭବିଷ୍ୟତରେ ସେ ପୁଣି ମହାନ୍ ହୋଇଉଠିବ ; ଏହାହିଁ ଥିଲା ତାଙ୍କ ଜୀବନର ସ୍ଵପ୍ନ । କିନ୍ତୁ ଓଡ଼ିଆ ଜାତିର ନିର୍ବେଦ, ନିଷ୍କ୍ରିୟ ଭାବ ଦେଖି ସେ ଅନେକ ସମୟରେ ହତାଶ ହୋଇପଡ଼ୁଥିଲେ । ସେ ବିଷାଦର ଚିତ୍ର ଯୌବନରେ ରଚିତ ପ୍ରାର୍ଥନା କବିତାରେ ଯେପରି ପରିସ୍ଫୁଟ, ପରିପକ୍ୱ କାଳରେ ରଚିତ ସ୍ଵଦେଶ ଚିନ୍ତା କବିତାରେ ମଧ୍ୟ ସୁନ୍ଦର ଭାବରେ ରୂପାୟିତ । ଜାତୀୟ ଦୁଃଖର ପରିସମାପ୍ତି ଦୁଃଖରେ ସୀମାବଦ୍ଧ ନୁହେଁ ।

(୧୬) କୋଣାର୍କେ—(ରାମଚଣ୍ଡୀ ଠାରେ ରଚିତ)—ପଣ୍ଡିତ ନୀଳକଣ୍ଠ ଦାଶ ପୃଷ୍ଠା—୧୧

(୧୭) ଓଡ଼ିଆ ସାହିତ୍ୟର ଇତିହାସ—ଡଃ ମାୟାଧର ମାନସିଂହ, ପୃ-୩୫୭ ।

## ପ୍ରାକ୍-ସବୁଜ ମାନବବାଦୀ ଚେତନା :—

ରାଧାନାଥଙ୍କ କାବ୍ୟ କବିତାରେ ଯେଉଁ ମାନବବାଦୀ କାବ୍ୟଚେତନାର ଆଦ୍ୟ ସ୍ଫୁରଣ ଘଟିଛି, ତାହା ସତ୍ୟବାଦୀ ଏବଂ ପରବର୍ତ୍ତୀ ସାହିତ୍ୟକୁ ଅନୁପ୍ରାଣିତ କରିଥିବାର ଜଣାପଡ଼େ । ମାନବବାଦର ସ୍ୱରୂପ ଓ ତାର ଅଭିବ୍ୟକ୍ତି କବି ରାଧାନାଥଙ୍କ କାବ୍ୟଧାରାର ଗତିକୁ କରିଛି ବହୁମୁଖୀ । "ଚିର ହାହାମୟ ଏ ଘୋର ଜୀବନ, ଜୀବନ ନୁହଁଇ ଜୀବନ୍ତ ମରଣ" (ଚିଲିକା—ପୃ ୧୬୦) ଏପରି ଅପୂର୍ଣ୍ଣ ଜୀବନରେ ଉଚ୍ଚ ମାନବବାଦର ଚରମ ଆଦର୍ଶ ତାଙ୍କର ଏକମାତ୍ର ସାଧନା । ରାଧାନାଥୀ ମାନବବାଦ ଦେଶକାଳପାତ୍ର ବିଚାର ନ କରି ମାନବ ଜାତିର ମହାଭାବରେ ଯେପରି ଉଦ୍‌ବୁଦ୍ଧ ଓ ଅନୁପ୍ରାଣୀତ ସେଇପରି ବ୍ୟକ୍ତି ଓ ସମାଜ ଅତିକ୍ରମ କରି ମାନବ ଜାତିର ଅଖଣ୍ଡ ପରିକଳ୍ପନାରେ ଅଭିଷିକ୍ତ । ଏଇଠି ତାଙ୍କର ମନୋବେଦନା ପାଶ୍ଚାତ୍ୟ ସଂସ୍କୃତିକୁ ଏଡ଼ି ପୁଣି ପ୍ରାଚ୍ୟ ସଂସ୍କୃତି ପ୍ରତି ସମ୍ବେଦନତା ଫୁଟାଇବାରେ ଅତ୍ୟନ୍ତ ଶାଣିତ ଓ ଆଶାନ୍ୱିତ । ସେ କେବଳ ପ୍ରତିଭାଶାଳୀ କବି ନୁହଁନ୍ତି ; ଏକାଧାରରେ ଜଣେ ମହାପଣ୍ଡିତ ଓ ବହୁବ୍ୟକ୍ତିତ୍ୱ । ଜୀବନରେ ବହୁବିଧ ଅନୁଭୂତି ଆହରଣ କରି କବି ଯେଉଁ କାବ୍ୟ ରଚନା କରିଥିଲେ ତହିଁରେ ସ୍ନେହ, ପ୍ରୀତି, ମମତା, ତ୍ୟାଗ, ପ୍ରାଣାହୁତି ଆଦି ଅନେକ ମାନବବାଦୀ ଚିହ୍ନ ସ୍ପଷ୍ଟ ହୋଇଛି । ତାଙ୍କ ହୃଦୟରେ ଦୁଃଖୀରଙ୍କୀ ଏବଂ ସାଧାରଣ ଜନତା ପ୍ରତି ଉଦାରତାର ସୀମା ନ ଥିଲା । ପିତୃସ୍ମୃତିରେ ଶଶିଭୂଷଣ ପ୍ରକାଶ କରିଛନ୍ତି "କେହି ନମସ୍କାର କରିବା ପୂର୍ବରୁ ତୁମେ ନମସ୍କାର କରୁଥିଲ ; ଏହା ସମସ୍ତଙ୍କୁ ବିଦିତ ଅଟେ ।" (୧୮) ସ୍ୱଭାବତଃ ରାଧାନାଥ ଥିଲେ ଅତ୍ୟନ୍ତ କୋମଳମନସ୍କ । ପ୍ରାଣୀମାନଙ୍କର ଦୁଃଖ ବା ଯନ୍ତ୍ରଣାରେ ସେ ଅତ୍ୟନ୍ତ ଅଧୀର ହୋଇପଡ଼ୁଥିଲେ । ଶିକ୍ଷା ବିଭାଗର ଇନସ୍‌ପେକ୍ଟର ଥିବାବେଳେ ଶଗଡ଼ରେ ଦୂରପଥ ଅତିକ୍ରମ କରିବା ସମୟରେ ବଳଦମାନଙ୍କର କଷ୍ଟହେବ ଭାବି ଗାଡ଼ିରୁ ସେମାନଙ୍କୁ ଫିଟାଇ ଦେଇ ଚାଲି ଚାଲି ଯିବାକଥା ତାଙ୍କର ଜୀବନୀ ଲେଖକ ପ୍ରକାଶ କରିଅଛନ୍ତି । ଶୈଶବାବସ୍ଥାରେ ମାତୃବିୟୋଗ ତାଙ୍କୁ ଅତ୍ୟନ୍ତ ବିଚଳିତ କରିପକାଇଥିଲା । ବହୁସମୟରେ ସେ ଶ୍ମଶାନକୁ ଯାଇ ସ୍ନେହମୟୀ ଜନନୀଙ୍କର ଶେଷ ପାର୍ଥିବ ପ୍ରତିକଟିକୁ ଯେଉଁଠାରେ ନିଃଶେଷ କରି ଦିଆଯାଇଥିଲା ସେହିଠାରେ ବସି ଗଭୀର ଚିନ୍ତାମଗ୍ନ ରହୁଥିଲେ । ସେହି ସମୟରୁ ଜଗତ ଓ ଜୀବନର ନଶ୍ୱରତା ତାଙ୍କର କୋମଳ ପ୍ରାଣରେ ଗଭୀର ରେଖାପାତ କରିଥିବା ମନେହୁଏ । ପରବର୍ତ୍ତୀ କାଳରେ କ୍ରମାଗତ ଭଗ୍ନସ୍ୱାସ୍ଥ୍ୟ, କନିଷ୍ଠ ପୁତ୍ରର ମୃତ୍ୟୁ, ଜ୍ୟେଷ୍ଠ ପୁତ୍ରର ମୂର୍ଚ୍ଛାରୋଗ

(୧୮) ରାଧାନାଥ ଜୀବନୀ—ପୃ ୧୧୭୧

ଏବଂ ସମସାମୟିକ ଶିକ୍ଷିତ ଧନିକ ସମାଜର ଉଚ୍ଛୃଙ୍ଖଳତା ଓ ବ୍ୟର୍ଥତା ତାଙ୍କୁ ଅଧିକ ନୈରାଶ୍ୟବାଦୀରେ ପରିଣତ କରିଥିବା ଖୁବ୍ ସମ୍ଭବପର । ତଥାପି ରାଧାନାଥ କେବେହେଲେ ଜୀବନଠାରୁ ଦୂରେଇ ଯିବାକୁ ଗ୍ରହୁଁ ନ ଥିଲେ । ବରଂ ଜୀବନ ନାମରେ ପରିଚିତ ଜୀବନ୍ମୃତ ମରଣର ପରିବର୍ତ୍ତେ ସେ ଗ୍ରହିଁଥିଲେ ସତ୍ୟପୂତ ସାଧନାମୟ ଏକ ପରିପୂର୍ଣ୍ଣ ଜୀବନ ; ଯେଉଁଠି ପାର୍ଥିବ ଦେହ ବିସର୍ଜନ ନ କରି ମଧ୍ୟ ମାନବ ହୁଏ ଦେବତା, ମର ହୁଏ ଅମର ଏବଂ ମର୍ତ୍ତ୍ୟ ହୁଏ ସ୍ୱର୍ଗ ।

ମଣିଷର ଚିର ସୁଖ, ଚିର ଶାନ୍ତି ଓ ଚିର ଆନନ୍ଦ ହିଁ ମାନବବାଦର ଚରମ କଳା । ଏହି କଳା ଲାଭ ପାଇଁ ଯେପରି ରାଧାନାଥଙ୍କ ଶରୀରରେ ଶ୍ୱାସରୋଗର ଯନ୍ତ୍ରଣା ବନ୍ଧି ପ୍ରେରିତ । ତାହାହିଁ କର୍ମକ୍ଷେତ୍ରରେ ଅନ୍ୟର ସୁଖ ଦୁଃଖ ଏବଂ ସମାଜର ଗତି ବୁଝିବା ପାଇଁ ସାହାଯ୍ୟ କରିଛି । 'ମହାଯାତ୍ରା'ରେ ମହାଭାରତର ମହାପ୍ରସ୍ଥାନିକ ପର୍ବ ହିଁ କବିଙ୍କର ବର୍ଣ୍ଣିତ ବିଷୟ ହେଲେ ସୁଦ୍ଧା ଚରିତ୍ରକୌଶଳ, ସାର୍ଥକ ବିଗ୍ରହ, ଜୀବନ୍ତ ଭାଷା, ବାସ୍ତବ ଚରିତ୍ରର ସଫଳତା ବାସ୍ତବିକ ରାଧାନାଥଙ୍କୁ ପ୍ରମାଣ କରିଛି ମାନବବାଦୀ କବି ହିସାବରେ । ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଦର୍ଶନଗାଥାର ରହସ୍ୟ ପରି ରାଧାନାଥଙ୍କ ନନ୍ଦିକା, କୌଶଲ୍ୟା, ପାର୍ବତୀ, ଉଷା ପ୍ରଭୃତି କେତୋଟି ଚରିତ୍ର ପ୍ରତି ଜନତାର ସହାନୁଭୂତି ଓ ସହନଶୀଳତାର ଆବେଗଭରା ଜୀବନସରଣୀ ବାସ୍ତବିକ୍ ମାନବବାଦର ଅନନ୍ୟ ଅଭିବ୍ୟକ୍ତି । ମାନବିକତାର କର୍ତ୍ତବ୍ୟ ଦୃଷ୍ଟି ସୁବର୍ଣ୍ଣକେଶରୀ, ଗ୍ରେଇଗଙ୍ଗ, ଉତ୍କଳ ମହିଷୀ ପାର୍ବତୀଙ୍କ ଜୀବନରେ ପ୍ରମାଣିତ ।

ରାଧାନାଥୀ ମାନବବାଦର ଚରିତ୍ର ଆଦର୍ଶର ଲକ୍ଷ୍ୟ ନେଇ ପାପ ଅନ୍ୟାୟ, ଅଭାବ, ରୋଗ, ପ୍ରତିହିଂସା ଏବଂ ଅସାମାଜିକ ଅଭିଯୋଗକୁ ନାନାଭାବରେ ଖଣ୍ଡନ କରିଛି । ରାଧାନାଥଙ୍କର ମାନବବାଦ ଦୁଃଖ କାଉଁରି ସ୍ପର୍ଶରେ, ମହାକାଳର ବିଶ୍ୱାସଘାତକତା ସଙ୍ଗେ, ଘଟଣା, ଅବସ୍ଥା ଓ କର୍ମପନ୍ଥା ବଳରେ ମଣିଷ ଜୀବନରେ ସତ୍ୟ-ଶିବ-ସୁନ୍ଦର ଏବଂ ପବିତ୍ର ସୁଖର ମହାମିଳନ ।

ରାଧାନାଥଙ୍କ ପରବର୍ତ୍ତୀ କାଳରେ ସତ୍ୟବାଦୀ ସାହିତ୍ୟିକଙ୍କ ମଧ୍ୟରେ ଏହି ମାନବବାଦର ଉତ୍ତରଣ ଲକ୍ଷ୍ୟ କରାଯାଇଥାଏ । ମଣିଷ ହିଁ ଭଗବାନ— ଏହା ଥିଲା ସେମାନଙ୍କର ଜୀବନ ଦର୍ଶନ । ଶାସ୍ତ୍ରଭିତରେ ଭଗବାନଙ୍କ ଅନ୍ୱେଷଣ ବୃଥା । ମାନବତାର ସେବା ହିଁ ଭଗବତ୍ ସେବା । ଏହାର ସୂଚନା ଗୋପବନ୍ଧୁଙ୍କ-ଠାରୁ ନୀଳକଣ୍ଠଙ୍କ ପର୍ଯ୍ୟନ୍ତ ସତ୍ୟବାଦୀ ଯୁଗର କାବ୍ୟକୃତିରେ ସୁଲଭ । ଗୋଦାବରୀଶଙ୍କ ଅଧିକାଂଶ କବିତା ମାନବିକ ଦୁଃଖର ମର୍ମଦାହୀ ପ୍ରତୀକ ହୋଇ

ଠିଆ ହୋଇଛୁ । କେଉଁଠି ପୁତ୍ରବତ୍ସଳ ପ୍ରାଣର ଅମୃତବାଣୀ ପ୍ରକଟିତ ତ କେଉଁଠି ସାମାନ୍ୟ ପକ୍ଷୀଟିର ମୃତ୍ୟୁରେ ହୃଦୟ ଶୋକାକୁଳ । ସଂସାରର ଅତି ଅପାଂକ୍ତେୟ ଘଟଣାର ନିତିଦିନିଆ ଚିତ୍ରକୁ ପରମ ଶ୍ରଦ୍ଧାର ସହିତ ସେ ତାଙ୍କ କାବ୍ୟମାନସରେ ଅଙ୍ଗୀଭୂତ କରିପାରିଛନ୍ତି । ସେଥିରେ ତାଙ୍କର ସଙ୍କୋଚ ନାହିଁ କି ଆଟୋପ ନାହିଁ ।

ସତ୍ୟବାଦୀର ସାଧକମାନେ ଚିନ୍ତା, କଳ୍ପନା ଓ କର୍ମ୍ମରେ ମାନବବାଦର ଯେଉଁ ସ୍ୱରୂପ ଫୁଟାଇଥିଲେ ; ତାହା କେବଳ ଜୀବସେବା, ବୁଭୁକ୍ଷୁଙ୍କୁ ଅନ୍ନଦାନ, ରୋଗୀସେବା ଅଥବା ନିରାଶ୍ରୟଙ୍କୁ ଆଶ୍ରୟ ଦାନରେ ମାତ୍ର ସୀମିତ ନ ଥିଲା । ସାହିତ୍ୟ ସୃଷ୍ଟି ମାଧ୍ୟମରେ ଭାରତୀୟ ଯୁବକ ପ୍ରାଣରୁ ସକଳ ପ୍ରକାର ଜଡ଼ତା, ନିର୍ବେଦ ଭାବ, ନିଶ୍ଚେଷ୍ଟତା, ଗ୍ଳାନି ଦୂରକରି ଜ୍ଞାନର ସମୁଜ୍ଜ୍ୱଳ ଦୀପ୍ତି, ନବୀନ ଚିନ୍ତାଧାରା ଓ ନୂତନ ଆଦର୍ଶର ପ୍ରତିଫଳନ ଘଟାଇବା ଥିଲା ସତ୍ୟବାଦୀ ସାହିତ୍ୟିକଙ୍କର ଆଭିମୁଖ୍ୟ । ଶିବଜ୍ଞାନରେ ଜୀବର ସେବା କରିବା, ନାରାୟଣ ଜ୍ଞାନରେ ନରର ଉପାସନା କରିବା, ଭଗବତ୍ ଜ୍ଞାନରେ ମାନବର ଆରାଧନା କରି ସାର୍ବଜନୀନ ମାନବ ପ୍ରାଣରେ ଦେବତ୍ୱର ବିକାଶ ଘଟାଇବା ଥିଲା ସେମାନଙ୍କର ମୂଳମନ୍ତ୍ର । ସେହି ସୂତ୍ରରେ ପାରମ୍ପରିକ ଧାରାରେ ଚଳି ଆସିଥିବା "ଶିବଜ୍ଞାନରେ ଜୀବସେବା"ର ମହନୀୟ ଆଦର୍ଶ ସତ୍ୟବାଦୀ ଚିନ୍ତା ଓ କାର୍ଯ୍ୟ ପ୍ରଣାଳୀରେ 'ବିଶ୍ୱଭାବ' ଆହୁରି ବ୍ୟାପକ ଓ ବିଶାଳ ହୋଇ ଉଠିଛି । ଉତ୍କଳୀୟମାନଙ୍କ ପାଇଁ ସେ ଯେଉଁ ରକ୍ତବିନ୍ଦୁ ଢାଳୁଥିଲେ ତାହା ବିଶ୍ୱର କଲ୍ୟାଣ ନିମନ୍ତେ ଢଳା ହେଉଥିଲା ବୋଲି ତାଙ୍କର ବିଶ୍ୱାସ ଥିଲା । ଉତ୍କଳ ସେବାରେ ଭାରତ ସେବା ତଥା ବିଶ୍ୱ ସେବା କରିବା ଏବଂ ଉତ୍କଳ ଜାତିର ଉନ୍ନତିରେ ମାନବ ଜାତିର ଉନ୍ନତି ଦେଖିବା, ଉତ୍କଳ ପ୍ରାଣରେ ବିଶ୍ୱଭାବ ଅନୁଭବ କରିବା ଥିଲା ଗୋପବନ୍ଧୁଙ୍କ ଜୀବନାଦର୍ଶ । ଗୋପବନ୍ଧୁଙ୍କ ଏହି ବିଶ୍ୱଭାବ ଉଦାର ମାନବିକତାର ନାମାନ୍ତର ମାତ୍ର ।

ଜାତୀୟତାର ଅଭିମାନରେ ତାଙ୍କର ହୃଦୟ ସଂକୀର୍ଣ୍ଣ ନ ଥିଲା । ଜାତୀୟତା ଓ ବିଶ୍ୱପ୍ରାଣତାର ମଧୁମୟ ସମନ୍ୱୟରେ ସେ ଥିଲେ ମହୀୟାନ ଥିଲେ । ଏହି ମହାମାନବିକତାର ସାଦୃଶ୍ୟ ଟଲ୍‌ଷ୍ଟୟ ଓ ମହାତ୍ମା ଗାନ୍ଧୀଙ୍କ ଜୀବନରେ ଦେଖିବାକୁ ପାଉଁ । ଗୋପବନ୍ଧୁଙ୍କ ଦୃଷ୍ଟିରେ ଜାତୀୟ ମମତା ଓ ବିଶ୍ୱଜନ ପ୍ରୀତି ମଧ୍ୟରେ କୌଣସି ବ୍ୟବଧାନ ନ ଥିଲା । "ଜାତୀୟ ମମତା ବିଶ୍ୱଜନ ପ୍ରୀତି/ଉତ୍କଳବାସୀର ହେଉ ଏହା ନୀତି ।" (୧୯) ତାଙ୍କର ଜାତୀୟ ମମତାର ବିକାଶ ଏହି ବିଶ୍ୱଜନ

(୧୯) ବନ୍ଦୀର ଆତ୍ମକଥା—ତ୍ରୟୋଦଶ ସଂସ୍କରଣ—ପୃ ୪

ପ୍ରୀତିରୁ । ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରି ଗୋଟିଏ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ କରିବା ପ୍ରଯତ୍ନ ମୂଳରେ ଗୋପବନ୍ଧୁଙ୍କର ଥିଲା ସେହି ଆତ୍ମପ୍ରସାର ଏବଂ ବିଶ୍ୱବୋଧ । "କାରା କବିତା"ର 'ନିତ୍ୟଧାମ ନୀଳାଚଳ' କବିତାଟି ଗୋପବନ୍ଧୁଙ୍କର ଏହି ବିଶାଳ ବିଶ୍ୱବୋଧର ଏକ ଜାଜ୍ୱଲ୍ୟମାନ ନିଦର୍ଶନ । ରବୀନ୍ଦ୍ରନାଥଙ୍କ ପରି ଗୋପବନ୍ଧୁ ବାରମ୍ବାର ତାଙ୍କ ଚିନ୍ତା, ସାଧନା ଓ ସାହିତ୍ୟରେ ଆମକୁ ଯେପରି ଚେତାଇ କହିଦେଇ ଯାଇଛନ୍ତି "ଲକ୍ଷ କୋଟି ପ୍ରାଣୀ ସହିତ ମୋର ଏକ ଗତି" । ଯେଉଁ ମର୍ତ୍ତ୍ୟକୋଳରେ ମୁଁ ଜନ୍ମିଛି, ତାକୁ ଘୃଣା କରି ସ୍ୱର୍ଗ ଓ ମୁକ୍ତି ଖୋଜିବା ଆଉଁ ମୁଁ ବ୍ୟାକୁଳ ନୁହେଁ । ରବୀନ୍ଦ୍ରନାଥଙ୍କ ପରି ସେ ଯେପରି ବ୍ୟାକୁଳ ପ୍ରାଣରେ ଆମ୍ଭମାନଙ୍କୁ ଏହି ପ୍ରଶ୍ନ ପଚାରି ଅଛନ୍ତି—

"ବିଶ୍ୱ ଯଦି ଚଲେଯାୟ କାନ୍ଦିତେ କାନ୍ଦିତେ
ଆମି ଏକା ବସେ ରବ ମୁକ୍ତି-ସମାଧିତେ ?

**ପ୍ରାକ୍-ସବୁଜ ଆଧ୍ୟାତ୍ମିକ ଚେତନା ଓ ଇନ୍ଦ୍ରିୟୋତ୍ତର ଅନୁଭବ—**

"ସତ୍ୟପଥେ ଧର୍ମପଥେ ଘେନିଯାଅ ମୋତେ/ଭରାଅ ପରାଣ ମୋର ତବ ପ୍ରେମସ୍ରୋତେ/ପ୍ରଭୋ ପରମ ଶରଣ, ଏ ଜୀବନ ଶ୍ରୀଚରଣେ କଲି ସମର୍ପଣ ।" ଏହି କବିତାର କବି ଭକ୍ତକବି ମଧୁସୂଦନ ରାଓ । ମଧୁସୂଦନଙ୍କ ନାମରେ ଏପରି ଏକ ପବିତ୍ରତା ରହିଛି; ଯାହା ଶୁଣିଲା ମାତ୍ରେ ମନ ଆପେ ଆପେ ଆଧ୍ୟାତ୍ମିକତା ଆଡ଼କୁ ଆକୃଷ୍ଟ ହୋଇଯାଏ । ବ୍ୟକ୍ତିଗତ ଜୀବନରେ ମଧୁସୂଦନ ଥିଲେ ରାଧାନାଥଙ୍କର ପଟ୍ଟଶିଷ୍ୟ । କିନ୍ତୁ ସାହିତ୍ୟ ସୃଷ୍ଟିରେ ସେ ଭିନ୍ନପଥ ଅନୁସରଣ କରିଥିଲେ । ସେ ଆଧୁନିକ ଯୁଗର ପ୍ରଥମ ଗୀତିକବି । ନୀତିବୋଧ, ଭଗବତ ଅନୁଭବ ଓ ଆଧ୍ୟାତ୍ମିକତାର ପ୍ରଚାର ତାଙ୍କ କବିତାର ଆଦର୍ଶ । ଆଜି ଭକ୍ତକବି ମଧୁସୂଦନଙ୍କର କିଛି ନା କିଛି କବିତା ସାଧାରଣ ଶିକ୍ଷିତ ଓଡ଼ିଆର ମାନସିକ ସଂସ୍କୃତିର ଅବିଚ୍ଛେଦ୍ୟ ଅଂଶ ହୋଇଉଠିଛି । ଶିଶୁ କବିତାଠାରୁ ଆରମ୍ଭ କରି ସନେଟ୍, ଓଡ୍, ସ୍ତୋତ୍ର ଓ ପ୍ରବନ୍ଧ ଇତ୍ୟାଦି ପର୍ଯ୍ୟନ୍ତ ମଧୁସୂଦନ ଯାହାକିଛି ସ୍ପର୍ଶ କରୁଥିଲେ; ସବୁଥିରୁ ଆଧ୍ୟାତ୍ମିକତାର ଏକ ମଧୁର ଗନ୍ଧ ନିଃସାରିତ ହେଉଥିଲା । ପିଲାଙ୍କ ପାଇଁ ଲେଖିଥିବା 'ବର୍ଣ୍ଣବୋଧ'ରେ ମଧ୍ୟ ମଧୁସୂଦନଙ୍କ ଲେଖନୀର ପ୍ରକୃଷ୍ଟ ପରିଚୟ ମିଳିଥାଏ । "ଯାହା ମୁଁ କରଇ ଯାହା ମୁଁ କହଇ ଯାହା ମୁଁ ଚିନ୍ତଇ ମନେ/ଜଗତର କର୍ତ୍ତା ପରମ ଈଶ୍ୱର ଜାଣୁଛନ୍ତି ପ୍ରତିକ୍ଷଣେ ।" ମଧୁସୂଦନ ଜଣେ ଉଚ୍ଚକୋଟୀର ଦାର୍ଶନିକ କବି । ତାଙ୍କ ଜୀବନର ଶିକ୍ଷିକତା ତାଙ୍କ ରଚନାବଳୀରେ ମଧ୍ୟ ପ୍ରତିଫଳିତ ହୋଇଅଛି । ସେ ମୁଖ୍ୟତଃ ମାନବ ଆତ୍ମାର କବି । ତେଣୁ ମନୁଷ୍ୟ ପ୍ରାଣରେ ଅନ୍ତଃସୌନ୍ଦର୍ଯ୍ୟ ପ୍ରକାଶନରେ ତାଙ୍କର ଲେଖନୀ ଅଧିକ ଉନ୍ମୁଖ

ଥିଲା । ତାଙ୍କ ରଚିତ 'ଜୀବନ ଚିନ୍ତା', 'ଆକାଶ ପ୍ରତି', 'ଋଷିପ୍ରାଣେ ଦେବାବତରଣ', 'ହିମାଚଳେ ଉଦୟ ଉତ୍ସବ' ପ୍ରଭୃତି କେତେକ ଉଚ୍ଚକୋଟୀର ସଫଳ ସୃଷ୍ଟି ଅନୁଧ୍ୟାନ କଲେ ଏହି ଉକ୍ତିର ସତ୍ୟତା ଉପଲବ୍ଧ ହୋଇଥାଏ । ଆଧୁନିକ ଓଡ଼ିଆ ସାହିତ୍ୟରେ ମଧୁସୂଦନ ଜଣେ ଋଷିକବି ଭାବରେ, ଜୀବନର ଆନନ୍ଦମୟ ମୁହୂର୍ତ୍ତିର ସନ୍ଧାନୀ ଭାବରେ ସ୍ୱୀକୃତ ହୋଇଛନ୍ତି । 'ଋଷିପ୍ରାଣେ ଦେବାବତରଣ'ରେ ଜନୈକ ବୈଦିକ ଋଷି ଯବେ ପୂର୍ଣ୍ଣିମା ରଜନୀର ପ୍ରଭାତରେ ସରସ୍ୱତୀ ନଦୀ ଜଳରେ ଅବଗାହନ କରିବାକୁ ଆସିବାବେଳେ ଚତୁର୍ଦ୍ଦିଗର ମହିମାମୟ ପ୍ରକୃତି ତାଙ୍କ ଆତ୍ମାରେ ଯେଉଁ ଅଲୌକିକ ପ୍ରତିକ୍ରିୟା ସୃଷ୍ଟି କରିଛି ସେହି ମହାନ୍ ଅନୁଭବର ଅତୀନ୍ଦ୍ରିୟ ଚେତନା ଲିପିବଦ୍ଧ ହୋଇଛି, "କେ ହେ ଦେବ, ଦେବ ଦେବ ପ୍ରଭୁ ପରାତ୍ପର/କି ଅମୃତ ତେଜେ ଆଜ ପୂରି ମୋ ଅନ୍ତର, କି ଅମୃତ ତେଜେ ପୂରି ଏ ମହା ଆକାଶ/ବିରାଜିତ ବିଶ୍ୱଦେବ ବିଭୋ ସ୍ୱପ୍ରକାଶ ।" ବ୍ୟକ୍ତିଗତ ଜୀବନର ପବିତ୍ରତା, ପାଣ୍ଡିତ୍ୟ ଓ ଧର୍ମଚେତନା ପାଇଁ ମଧୁସୂଦନ ତାଙ୍କ ଜୀବନକାଳରେ ହିଁ ଭକ୍ତକବି ଭାବରେ ଦେଶବାସୀଙ୍କ ଦ୍ୱାରା ସମ୍ମାନିତ ହୋଇଥିଲେ ।

ରାଧାନାଥ ସାହିତ୍ୟିକ ପରମ୍ପରାରେ ବୈପ୍ଳବିକ ପରିବର୍ତ୍ତନ ଆଣିଥିଲେ ମଧ୍ୟ ସମାଜ ସଚେତନ ଥିବାରୁ ନୈତିକତାର ପ୍ରତିଷ୍ଠା ପାଇଁ ପୌରାଣିକ କଥାବସ୍ତୁକୁ କାବ୍ୟ କବିତାର ଏକ ଆନୁସଙ୍ଗିକ ଉପାଦାନ ରୂପେ ଗ୍ରହଣ କରିଛନ୍ତି । ତାଙ୍କର କାବ୍ୟଗୁଡ଼ିକ ବହୁଳ ଭାବରେ ବୈଦେଶିକ କାହାଣୀର ଅନୁସୃତି । କିନ୍ତୁ ପୁରାଣ, ଇତିହାସ ଓ କିମ୍ବଦନ୍ତୀର ସାହାଯ୍ୟରେ ସେଗୁଡ଼ିକ ଓଡ଼ିଶାର ପାଣି ପବନରେ ପରିବର୍ଦ୍ଧିତ ହୋଇଛି, ପ୍ରତ୍ୟେକ ପ୍ରାକୃତିକ ବିଭବ ମଧ୍ୟରେ ସେ ଲୌକିକ ହେଉ ବା ଶାସ୍ତ୍ରଗତ ହେଉ ପୁରାଣ କଥାପ୍ରତି ସଚେତନ ଦୃଷ୍ଟି ନିକ୍ଷେପ କରିଛନ୍ତି । ଭୃଗୁଙ୍କ ନାମାନୁସାରେ 'ଭାର୍ଗବୀ', ଦଧୀଚିଙ୍କ ନାମାନୁସାରେ 'ଦୟା' ଏବଂ କାଞ୍ଚିକାବେରୀ କାହାଣୀର ଐତିହାସିକ ମୂଲ୍ୟ ସମ୍ପର୍କରେ କବିଙ୍କ ଉକ୍ତି "ତୋର ତୀରେ ପରା ଶ୍ରୀମତୀ ମାଣିକା/ହସ୍ତ ଭଞ୍ଜିଥିଲେ ସାଦରେ ଲବଣୀ/ଭାବଗ୍ରାହୀ ପ୍ରଭୁ ଭକ୍ତ ଚିନ୍ତାମଣି" । (ଚିଲିକା) ମହେନ୍ଦ୍ରଗିରିର ଗାରିମା ସମ୍ପର୍କରେ ସୂଚନା ଦେଇ କବି କହିଥିଲେ—'ମହିମା ଯାହାର ଘୋଷଇ ପୁରାଣ' । ଯେ କୌଣସି ପ୍ରାକୃତିକ ବିଭବ ଦର୍ଶନରେ କବି ଇତିହାସ ଓ ପୁରାଣର ଘଟଣାବଳୀକୁ ସେହି ପ୍ରାକୃତିକ ପରିବେଷ୍ଟନୀ ମଧ୍ୟରେ ସଂଯୋଜନା କରିବାକୁ ପ୍ରୟାସ କରିଛନ୍ତି । ଏହା କବିଙ୍କର ଆଧ୍ୟାତ୍ମ ପ୍ରୀତିର ଉଜ୍ଜ୍ୱଳ ଦୃଷ୍ଟାନ୍ତ ବୋଲି ଧରାଯାଇପାରେ । 'ଚନ୍ଦ୍ରଭାଗା'ରେ ରାମାଭିଷେକ ସମୟରେ ଓଡ଼ିଶାର ବିଭିନ୍ନ ଦେବଦେବୀଙ୍କ

ନୀଳାଚଳ ପୀଠରେ ପହଞ୍ଚାଇ ସୂର୍ଯ୍ୟ ଓ ରତିପତିଙ୍କର କଳାଧର ସୃଷ୍ଟିପାତ କରିଛନ୍ତି । କାଳନ୍ଦିକ ଚରିତ୍ର ଗ୍ରହଣ କରିବା ବଦଳରେ ପୌରାଣିକ ଦେବତା ସୂର୍ଯ୍ୟ ଓ ମଦନଙ୍କ ଚରିତ୍ର ମାଧ୍ୟମରେ କାଳନ୍ଦିକ ଆଖ୍ୟାନ ଉପସ୍ଥାପିତ କରିବାର ସୁଯୋଗ ଗ୍ରହଣ କରିଛନ୍ତି । ମହାଯାତ୍ରାର ଆଖ୍ୟାନ ମହାଭାରତରୁ ଗୃହୀତ ହୋଇଥିଲେ ବି ଏହି କାବ୍ୟ ଭାରତୀୟ ସାଂସ୍କୃତିକ ଇତିହାସର ଏକ ଉଜ୍ଜ୍ୱଳ ଆଲେଖ୍ୟ ।

ରାଧାନାଥଙ୍କ ପରେ ସତ୍ୟବାଦୀ ସାହିତ୍ୟରେ ଏହି ଆଧ୍ୟାତ୍ମିକତା ଏବଂ ଇନ୍ଦ୍ରିୟୋତ୍ତର ଭାବନାର ପରିପ୍ରକାଶ ପରିଲକ୍ଷିତ ହୋଇଥାଏ । ନିଖିଳ ମାନବ ସହିତ ଏହି ମିଳନ ପିପାସାର ଉତ୍ସ ହେଲା ମନୁଷ୍ୟର ଅଧ୍ୟାତ୍ମ ପ୍ରେରଣା । ଏହି ଅଧ୍ୟାତ୍ମ ପ୍ରେରଣାରୁ ଆସେ ସକଳ ଐକ୍ୟବୋଧ, କାରଣ ଭଗବାନଙ୍କ ଦ୍ୱାରା ଏ ସଂସାରରେ ଯାହାକିଛି ବର୍ତ୍ତମାନ ; ତାହା ପରିବ୍ୟାପ୍ତ ଓ ଆଚ୍ଛାଦିତ । ମନୁଷ୍ୟ ଆପଣା ଅନ୍ତରରେ ଗଭୀରତମ ଚେଷ୍ଟାପ୍ରତି ଲକ୍ଷ୍ୟ କରି ଅନୁଭବ କରିଛି ଯେ ସେ କେବଳ ବିଶ୍ୱଗତ ମନୁଷ୍ୟ ନୁହେଁ ; ସେ ବିଶ୍ୱଗତ ମନୁଷ୍ୟର ଏକାତ୍ମା । ଭକ୍ତିଭାବରେ ବିହ୍ୱଳ ହୋଇ ସେ କଦାପି ବୈରାଗ୍ୟ, ନୈଷ୍କର୍ମ୍ୟକୁ ଆଶ୍ରୟ ଦେଇନାହାନ୍ତି । ଭଗବାନଙ୍କ ସାନ୍ନିଧ୍ୟ ଓ କୃପାରୁ ବଞ୍ଚିତ ହେଲେ ତାଙ୍କର ଜୀବନ ହାହାକାରମୟ ହେଉଥିଲା । ଭଗବତ୍ ଚେତନା ତାଙ୍କ ପ୍ରାଣକୁ ଏପରି ଆଚ୍ଛନ୍ନ କରି ରଖିଥିଲା ଯେ ; ଗୋପବନ୍ଧୁ ଘୋର ନୈରାଶ୍ୟ ମଧ୍ୟରେ ଆଶାର ଜ୍ୟୋତିର୍ମୟ ରେଖା ଦେଖିପାରୁଥିଲେ । 'କାରା କବିତା', 'ବିଶ୍ୱର ମିଳନ ଚିନ୍ତା'ରେ ନିଖିଳ ବିଶ୍ୱ ସହିତ ପରିପୂର୍ଣ୍ଣ ଭାବରେ ମିଳିତ ହୋଇ ନିଜର ବ୍ୟକ୍ତିଗତ ସତ୍ତା ଲୋପ କରିଦେବାର ଆକାଂକ୍ଷା ଯେପରି ଅପରୂପ ଆବେଗମୟ ଅଭିବ୍ୟକ୍ତି ଲାଭ କରିଛି ; ତାହା ତାଙ୍କର ଅନୁଭବରେ ଭଗବତ୍ ସତ୍ତାର ମଧୁମୟ ପରିଣାମ ମାତ୍ର । ନିଜକୁ ଅନ୍ୟଠାରୁ ବିଚ୍ଛିନ୍ନ କରି ରଖିବାରେ ସୁଖ ନାହିଁ କି ପୌରୁଷ ନାହିଁ । ବିଶ୍ୱର ମିଳନ ଚିନ୍ତାରେ କବିପ୍ରାଣର ଅତୀନ୍ଦ୍ରିୟ ଚେତନାର ଅଭିବୃଦ୍ଧି ଘଟିଛି । ସେହି ବିଶ୍ୱବ୍ୟାପୀ ଆଧ୍ୟାତ୍ମିକ ଚେତନା ମଧ୍ୟରେ କେବଳ ସତ୍ୟ ଶିବ ସୁନ୍ଦରର ଉପାସନା କରାଯାଇଛି ।

ବୈରାଗ୍ୟ ଆତ୍ମଶୁଦ୍ଧି, ସେବା ଓ ସତ୍ୟର ସାଧନାରେ ସତ୍ୟବାଦୀ ଗୋଷ୍ଠୀର ସମସ୍ତ ଶକ୍ତି ନିୟୋଜିତ ହୋଇଅଛି । ଜୀବନର କେବଳ ଗୋଟିଏ ଦିଗ ସେଥିରେ ପ୍ରତିଫଳିତ ହୋଇଅଛି । ମନୁଷ୍ୟର ଦୁଃଖ ଓ ଦୁଃଖର କାରଣ ଖୋଜି ଖୋଜି,

ବୃହତ୍ତର ଜୀବନର ଚିତ୍ର ଏମାନେ ଅଙ୍କନ କରିପାରି ନାହାନ୍ତି । ଗୋପବନ୍ଧୁଙ୍କ 'ଧର୍ମପଦ' ଓ ଶିବେଇ ସାନ୍ତରା କେବଳ ଆଦର୍ଶପୀଠରେ ଆତ୍ମବଳି ଦେଇଛନ୍ତି ।

ଜଗନ୍ନାଥଙ୍କ ସାନ୍ନିଧ୍ୟ ଏବଂ ଜଗନ୍ନାଥ ଚେତନା ତାଙ୍କୁ କେବଳ ଜଣେ ଉତ୍କଳୀୟ କରି ରଖି ନ ଥିଲା ତାଙ୍କୁ ଆଦ୍ୟ ଯୌବନରୁ ଉଦାର ମହାଭାରତୀୟ ଭାବରେ ଉଦ୍‌ବୁଦ୍ଧ କରି ରଖିଥିଲା । ଭାରତରେ ଉତ୍କଳ ଏକ ମହାପୁଣ୍ୟଧାମ ।

"ଗାନ୍ଧୀ ଭଗୀରଥ ନିଜ ପୁଣ୍ୟବଳେ
ଆଣିଲେ ଅସଙ୍ଗ ଜାହ୍ନବୀ ଉତ୍କଳେ
ହିମାଚଳଠାରୁ ସୀମାଚଳ ଧରି
କୁମାରିକା ଯାଏ ଖେଳିଲା ଲହରି ।"

ଗୋପବନ୍ଧୁଙ୍କର ଆଦର୍ଶ ଥିଲା ଅବିଚଳ । ସାଧନା ଥିଲା ସୁଦୂରପ୍ରସାରୀ ଏବଂ ଈଶ୍ୱର ସତ୍ତ୍ୱରେ ସେ ଆତ୍ମମଗ୍ନ ଥିଲେ । ରବୀନ୍ଦ୍ରନାଥଙ୍କ ପରି ବିନ୍ଦୁ ମଧ୍ୟରେ ସିନ୍ଧୁର, ଶିଶିର-କଣା ମଧ୍ୟରେ ବିରାଟ ଆକାଶର ପ୍ରତିଛବି ଦେଖିବାକୁ ପାଇଛନ୍ତି । ଦୁହେଁ ସମଭାବରେ ଉପନିଷଦର ମନ୍ତ୍ରରେ ଦୀକ୍ଷିତ । ଦୁହିଁଙ୍କର ପ୍ରଗାଢ଼ ବିଶ୍ୱାସ "ଈଶାବାସ୍ୟ ମିଦଂ ସର୍ବଂ ଯତ୍କିଞ୍ଚଜଗତ୍ୟାଂ ଜଗତ୍"—ଏ ଜଗତରେ ଯାହା କିଛି ବର୍ତ୍ତମାନ, ସେସବୁ ଈଶ୍ୱରଙ୍କ ଦ୍ୱାରା ଆଚ୍ଛାଦିତ । (୨୦) ଏହି ଅଧ୍ୟାତ୍ମ ଭାବନା ଏବଂ ଅତୀନ୍ଦ୍ରିୟ ଚେତନା ମଧ୍ୟରେ ସେ ବୁଡ଼ି ରହିଥିଲେ । ବସ୍ତୁତଃ ରାଧାନାଥଙ୍କଠାରୁ ସତ୍ୟବାଦୀ ପର୍ଯ୍ୟନ୍ତ କବିମାନଙ୍କ କାବ୍ୟଭାବନାରେ ଏହି ଆଧ୍ୟାତ୍ମିକ ଚେତନାଟି ଖୁବ୍ ଉଜ୍ଜ୍ୱଳଭାବେ ପ୍ରକଟିତ ହୋଇଛି । ବେଳେବେଳେ ଅତିଭୌତିକ ଚେତନାରେ ଏହି ଭାବନା ନିମଜ୍ଜିତ ହୋଇଥିବା ଦେଖିବାକୁ ମିଳେ । ମାୟାଧର ମାନସିଂହ ଉତ୍ତରାଧିକାର ସୂତ୍ରରେ ଏହି ଭାବନାର ବ୍ୟାପକ ସ୍ୱରସଙ୍ଗୀ ନିଜ କାବ୍ୟକବିତାରେ କରିଥିବା ଦେଖିବାକୁ ମିଳେ ।

## ପ୍ରାକ୍-ସବୁଜ କବିତାର ଆଙ୍ଗିକ—

ଆଧୁନିକ ଓଡ଼ିଆ କାବ୍ୟଚେତନାରେ ପାଶ୍ଚାତ୍ୟ ପ୍ରଭାବର ପଦଧ୍ୱନି ଶୁଣାଗଲା ପରି କାବ୍ୟ ଶୈଳୀରେ ମଧ୍ୟ ପ୍ରଭାବର ପ୍ରତିଫଳନ ପରିଲକ୍ଷିତ ହୁଏ ।

---

(୨୦) "ସୀମାର ମାଝେ ଅସୀମ ତୁମି ବାଜାଓ ଆପନ୍ ସୁର/ଆମାର ମଧ୍ୟେ ତୋମାର ପ୍ରକାଶ ତାଇ ଏତ ମଧୁର" × × ପଥେର ପ୍ରାନ୍ତେ ଆମାର ତୀର୍ଥ ନୟ ପଥେର ଦୁଧାରେ ଆଛେ ମୋର ଦେବାଲୟ"— ରବୀନ୍ଦ୍ର ସରଣୀ ।

ସନେଟ, ଓଡ଼, ଏଲିଜି, ବାଲାଡ଼୍, ଏପିକ୍ ଏବଂ ଅମିତ୍ରାକ୍ଷରଛନ୍ଦ ଇତ୍ୟାଦି ତାହାର ଦୃଷ୍ଟାନ୍ତ ।

ଭକ୍ତକବି ମଧୁସୂଦନ ରାଓ ଓଡ଼ିଆରେ ସନେଟ୍‌ର ବିକାଶ କର୍ତ୍ତା । ଏହି ସନେଟ୍‌କୁ ଚତୁର୍ଦ୍ଦଶପଦୀ କବିତା ମଧ୍ୟ କୁହାଯାଇଥାଏ । ଏହା ଏକ ଗୀତିବନ୍ଧ କାବ୍ୟ ରୂପ । ଏହା ଦୁଇଟି ସ୍ତବକରେ ଗଠିତ । ସ୍ତବକ ଦୁଇଟି ହେଲା, ଆବେଗ ଓ ତରଙ୍ଗର ଦୁଇଟି ସ୍ତର । ଗୋଟିଏ ରୂପ ଅନ୍ୟଟି ଭାବ । ଏପରି ଏକ କାବ୍ୟ ରୂପ ପାଶ୍ଚାତ୍ୟ ସାହିତ୍ୟ ପ୍ରଭାବରୁ ଆମ କାବ୍ୟ ସାହିତ୍ୟକୁ ଆନୀତ ହୋଇଥିଲା । ପ୍ରାୟ ଶହେ ବର୍ଷ ତଳେ ଓଡ଼ିଆ ସନେଟ୍ ରଚନାର ସୃଷ୍ଟି ହୋଇଥିଲା । କବି ଗୋପାଳବଲ୍ଲଭଙ୍କର ସନେଟ୍ ସଂଖ୍ୟା ଖୁବ୍ ଅଳ୍ପ ହେଲେ ବି ସୃଷ୍ଟି ଉଦ୍ୟମରେ ସେ ମଧୁସୂଦନଙ୍କ ପୂର୍ବସୂରି । ମଧୁସୂଦନ ଇଂରାଜୀ ସେକ୍ସପିୟରିଆନ୍ ସନେଟ୍ ରୀତିର ଆଦର୍ଶ ଅନୁସରଣ କରିଛନ୍ତି । ତାଙ୍କର ନବବର୍ଷ, ଶ୍ରୀପଞ୍ଚମୀ, ପରମ ପ୍ରମାଣ ଇତ୍ୟାଦି ଇଂରାଜୀ କାବ୍ୟରୀତି ପ୍ରେରଣାରୁ ଏହି ଶୈଳୀ ପ୍ରତି କବିଙ୍କର ଆକର୍ଷଣ ସୃଷ୍ଟି ହୋଇଥିବା ସମ୍ଭବ । ଇଂରାଜୀ ସନେଟ୍ ପରି ମଧୁସୂଦନଙ୍କ ସନେଟ୍‌ଗୁଡ଼ିକର ବିଷୟ କ୍ଷେତ୍ର ବ୍ୟାପକ । କ୍ଲାସିକ୍ ବା ପେଟ୍ରାର୍କାନ ସନେଟ୍ ପରି ଏହା କେବଳ ମାନବିକ ପ୍ରେମଭାବ ସର୍ବସ୍ୱ ନୁହେଁ । ମଧୁସୂଦନଙ୍କ ସନେଟ୍ ରଚନାର ନୂତନ ପଦକ୍ଷେପ ସେ କାଳର କେତେକ କବିଙ୍କୁ ପ୍ରଭାବିତ କରିଥିଲା । ଫକୀରମୋହନ ସେନାପତି ସେମାନଙ୍କ ମଧ୍ୟରେ ଅନ୍ୟତମ । ତାଙ୍କର ଅଧିକାଂଶ ସନେଟ୍ ପୁଷ୍ପମାଳା, ଅବସର ବାସରେ, ପୂଜାଫୁଲ ଇତ୍ୟାଦି କବିତା ଗ୍ରନ୍ଥରେ ସନ୍ନିବେଶିତ । ପଲ୍ଲୀକବି ନନ୍ଦକିଶୋର ବହୁ ସନେଟ୍‌ର ସ୍ରଷ୍ଟା । ତାଙ୍କର 'ନିର୍ଝରିଣୀ' 'ବସନ୍ତ କୋକିଳ', 'ଧ୍ରୁବଚନ୍ଦ୍ର', 'ତରଙ୍ଗିଣୀ' ପ୍ରଭୃତି କବିତା ଗ୍ରନ୍ଥରେ ବିକ୍ଷିପ୍ତ ଭାବରେ କେତେକ ସନେଟ୍ ରହିଛି । କ୍ଲାସିକ୍ ବା ଇଂରାଜୀ ସନେଟ୍ ରୀତିର ଶୃଙ୍ଖଳା ଏମାନଙ୍କଠାରେ ପରିଦୃଷ୍ଟ ହୁଏ ନାହିଁ । ଗୋପବନ୍ଧୁ ଓ ଗୋଦାବରୀଶ ଉଭୟ କେବଳ ମିତ୍ରାକ୍ଷରୀ ଚତୁର୍ଦ୍ଦଶପଦୀ କବିତା ରଚନା କରିଛନ୍ତି । କିନ୍ତୁ ବିଷୟବସ୍ତୁ ଦୃଷ୍ଟିରୁ ସନେଟ୍ ରଚନାରେ କବି ପଦ୍ମଚରଣ ପଟ୍ଟନାୟକ, ଇଟାଲୀୟ ଆଦର୍ଶ ଅନୁସରଣ କରି ପ୍ରେମକୁ କବିତାର ଉପଜୀବ୍ୟ ରୂପେ ଗ୍ରହଣ କରିଥିଲେ ମଧ୍ୟ ଗଠନଗତ ବ୍ୟାପାରରେ ସେ ଦେଶୀୟ ଶୈଳୀର ଅନୁଗତ । ଇଟାଲୀୟ କିମ୍ବା ଇଂରେଜୀ ସନେଟ୍ ରୀତି ଅନୁଯାୟୀ କୌଣସି ଆକାରଗତ ବିଭାଜନ ତାଙ୍କର ଚତୁର୍ଦ୍ଦଶପଦୀ କବିତାବଳୀରେ ଦୁଷ୍ପ୍ରାପ୍ୟ ।

ପାଶ୍ଚାତ୍ୟ ସନେଟ୍ ରୀତିରୁ କ୍ରମଶଃ ଓଡ଼ିଆ ସନେଟ୍ ରୀତିର ଉଦ୍ଭବ ହୋଇଛି । ସନେଟ୍ ରୀତି ଆମ କାବ୍ୟଶୈଳୀରେ ଅନାହୂତ ଭୂମିକା ଗ୍ରହଣ

କରିଛି ଏବଂ ଏହି କାବ୍ୟ ରୂପଟିର ରଚନା ସ୍ରୋତ 'ପ୍ରଭାତୀ' (ଡକ୍ଟର କୁଞ୍ଜବିହାରୀ ଦାଶ) କିମ୍ବା 'କ୍ଷୁଣ' (ଡକ୍ଟର ମାୟାଧର ମାନସିଂହ) ପର୍ଯ୍ୟନ୍ତ ନିବାହ ଗତିରେ ପ୍ରବହମାନ ହୋଇପାରିଛି । ମାନସିଂହ ଯେ ଜଣେ ସଫଳ ସନେଟ୍ କାର ଏଥିରେ ମତଦ୍ୱୈଧ ନାହିଁ ।

**ଓଡ୍ ବା ସଂବୋଧ ଗୀତ**—ଓଡ୍ ହେଉଛି ଆଧୁନିକ ଓଡ଼ିଆ କାବ୍ୟ ଶୈଳୀର ଅନ୍ୟତମ ରୂପ । ପାଶ୍ଚାତ୍ୟ ଗୀତିକାବ୍ୟ ରୂପର ପ୍ରଭାବରୁ ଆମ କାବ୍ୟ ଧାରାରେ ଓଡ୍ ବା ସମ୍ବୋଧ ଗୀତିର ପ୍ରଚଳନ ହୋଇଅଛି । ଏହି କବିତାର ଭାବ ଗମ୍ଭୀର ଓ ଉନ୍ନତ । ଇଂରାଜୀ ପ୍ରଭାବରେ ଓଡ଼ିଆ ଓଡ୍ ବା ସମ୍ବୋଧ ଗୀତିର ପ୍ରୟୋଗ ଓ ପରୀକ୍ଷା ହୋଇଛି । ଏହା କୋଇଲି, ଚଉତିଶା, ସନ୍ଦେଶ ଗୀତିକା ଇତ୍ୟାଦି ପ୍ରାଚୀନ ଓଡ଼ିଆ କାବ୍ୟ ପରମ୍ପରାର ଦାୟାଦ ନୁହେଁ । କାରଣ କୋଇଲି, ଚଉତିଶା ଇତ୍ୟାଦି ହେଉଛି ନିର୍ଦ୍ଦିଷ୍ଟ ଧାରାର ପ୍ରାଚୀନ ଓଡ଼ିଆ କାବ୍ୟ ରଚନା । ଏଥିରେ କବିଙ୍କ ଆତ୍ମିକ ଅନୁଭୂତିର ଭାଷ୍ୟ ପ୍ରକାଶ ପାଇ ନଥାଏ । ରାଧାନାଥଙ୍କ ଉତ୍ସାହ ବାକ୍ୟ ସମ୍ବୋଧନ ଜାତୀୟ କବିତା । କିନ୍ତୁ ରାଧାନାଥଙ୍କ ଅପେକ୍ଷା ମଧୁସୂଦନଙ୍କର ବହୁ କବିତା ଓଡ୍ ଧର୍ମୀ ଏବଂ ଗଭୀର ଭାବ ଉଦ୍‌ବୋଧକ । 'ପୃଥିବୀ ପ୍ରତି', 'ପଦ୍ମ', 'ଋଷିପ୍ରାଣେ ଦେବାବତରଣ', 'ହିମାଚଳେ ଉଦୟ ଉତ୍ସବ', 'ଏ ସୃଷ୍ଟି ଅମୃତମୟ ହେ' ପ୍ରଭୃତି କବିତାର ଅନ୍ତ୍ୟସ୍ଥଳରେ ଆଧ୍ୟାତ୍ମିକ ଭାବର ଉଦ୍‌ବୋଧନ ସ୍ପଷ୍ଟ । କବି ନନ୍ଦକିଶୋରଙ୍କ 'କାକବାରତା', 'ବସନ୍ତ କୋକିଳ', 'ଭରତ ପକ୍ଷୀ ପ୍ରତି', ଗୋଦାବରୀଶ, ଗୋପବନ୍ଧୁ, ପଦ୍ମଚରଣ କିମ୍ବା କୁନ୍ତଳାକୁମାରୀଙ୍କର ବିଭିନ୍ନ ସମ୍ବୋଧନ ଗୀତି ଗୋଟିଏ ଗୋଟିଏ ସାର୍ଥକ ସୃଷ୍ଟି । ଏହି ରୀତି ମାନସିଂହଙ୍କର କବିତାକୁ ବହୁଭାବରେ ପ୍ରଭାବିତ କରିଛି, ଯଦିଓ ସମସାମୟିକ କବିମାନେ ବହୁଭାବରେ ବଙ୍ଗୀୟ ଛନ୍ଦରୀତି ଓଡ଼ିଆ ସାହିତ୍ୟରେ ପ୍ରଚଳନ କରାଇଛନ୍ତି—ମାନସିଂ କିନ୍ତୁ ତହିଁରେ ବିଶେଷ ପ୍ରଭାବିତ ନ ହୋଇ ଉଦ୍‌ବୋଧନ କବିମାନଙ୍କର ଆଙ୍ଗିକ ରୀତିକୁ ଅଧିକ ସମ୍ମାନ ପ୍ରଦର୍ଶନ କରିଛନ୍ତି । ଉତ୍ତରାଧିକାର ସତ୍ତ୍ୱରେ କବି ମାୟାଧର ମାନସିଂହ ମଧ୍ୟ କେତେକ ସାର୍ଥକ ସମ୍ବୋଧ ଗୀତିର ସ୍ରଷ୍ଟା । ଯଥା ସ୍ଥାନରେ ତାହା ଆଲୋଚିତ ହେବ ।

**ଏଲିଜି : ଶୋକଗୀତି**—

ଏହା ବ୍ୟକ୍ତିଗତ ବା ଜାତୀୟ ଶୋକଭାବକୁ ରୂପ ଦେଇଥାଏ । ବେଳେବେଳେ ବ୍ୟକ୍ତିଗତ ବେଦନାବୋଧ ମଧ୍ୟ ସାର୍ବଜନୀନ ଆବେଦନ ନେଇ ପ୍ରକାଶ ପାଏ । ସେତେବେଳେ ଏହା ବ୍ୟକ୍ତି କୈନ୍ଦ୍ରିକ ନ ହୋଇ ମାନବକୈନ୍ଦ୍ରିକ

ହୋଇଉଠେ । ଅନେକ କ୍ଷେତ୍ରରେ ଏଥିରେ ଜୀବନ ଓ ମୃତ୍ୟୁଘେନ ତତ୍ତ୍ୱକୈନ୍ଦ୍ରିକ ଭାବାବେଗ ଲିପିବଦ୍ଧ ହୋଇଥାଏ । ସେତେବେଳେ ବ୍ୟକ୍ତିସତ୍ତ୍ୱା ସହିତ ନୈର୍ବ୍ୟକ୍ତିକ ସତ୍ତ୍ୱାର ଏକ ସମନ୍ୱୟ ସାଧିତ ହୁଏ ।

ଏହିପରି ଶୋକଭାବମୂଳକ କାବ୍ୟଶୈଳୀ ସହିତ ଓଡ଼ିଆ କବିଙ୍କର ପରିଚୟ ଇଂରାଜୀ ସାହିତ୍ୟର ପ୍ରେରଣାରୁ ଜନ୍ମ ନେଇଥିଲା । ପ୍ରାଚୀନ କାବ୍ୟ ପରମ୍ପରାରେ ଆତ୍ମନିଷ୍ଠ ଶୋକ କବିତାର ଦୃଷ୍ଟାନ୍ତ ପ୍ରାୟ ନ ଥିଲା କହିଲେ ଚଳେ । ମଧୁସୂଦନଙ୍କ କବିତାରେ ପ୍ରଥମେ ଏହା ଆତ୍ମପ୍ରକାଶ କରିଥିଲା । ଫକୀରମୋହନଙ୍କ ଶୋକଶ୍ଳୋକଗୁଡ଼ିକ ପତ୍ନୀ, ପୁତ୍ର ଓ ଆତ୍ମୀୟ ବନ୍ଧୁଙ୍କ ବିୟୋଗରେ ଲିଖିତ । (୨୧) ନାୟିକବି ରେବା ରାୟଙ୍କ କେତେକ କବିତା ଏହି ଶ୍ରେଣୀସ୍ଥ । କିନ୍ତୁ ଗୋପବନ୍ଧୁ, ଗୋଦାବରୀଶ ଏବଂ ତାଙ୍କ ସମସାମୟିକ କବିମାନଙ୍କ ଶୋକଗୀତିଗୁଡ଼ିକ ଅଧିକ ମନନଧର୍ମୀ । କବି ଗୋପବନ୍ଧୁଙ୍କ 'ବ୍ୟଥିତ ପ୍ରାଣର ଅନ୍ତିମ ଅଶ୍ରୁ' ଏହାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ । ଅଧିକ ମନୋଜ୍ଞ ଓ ମନନଧର୍ମୀ । ଶୋକ ଓ ବ୍ୟର୍ଥତାବୋଧର ବ୍ୟକ୍ତିଗତ ଉଚ୍ଛ୍ୱାସରେ ଏହା ପରିପୂର୍ଣ୍ଣ । କବି ଗୋଦାବରୀଶଙ୍କର 'ନିମିଷକ ଦେଖା, 'ହୋଇଥାନ୍ତି' ଇତ୍ୟାଦି କବିତାଗୁଡ଼ିକ ଗ୍ରନ୍ଥବତ୍ସଳ କବିଚିତ୍ତର ଗୋଟିଏ ଗୋଟିଏ ଶୋକ ଦଗ୍ଧ ପ୍ରତିଫଳନ । ଇଂରାଜୀ ଶୋକ ଗୀତିକାର ଟେନିସନ, କୀଟସ୍, ମିଲ୍‌ଟନ୍‌ଙ୍କ ପରି ଏଥିରେ ଆପଣାର ଦାର୍ଶନିକ ଦୃଷ୍ଟିଭଙ୍ଗୀ ଓ ମନନଶୀଳ ଅନ୍ତର୍ଦୃଷ୍ଟି ମିଶାଇ କବି ନିଜ ଆବେଗକୁ ପ୍ରସାରିତ କରିଛନ୍ତି ।

ମଧୁସୂଦନଙ୍କଠାରୁ ଆରମ୍ଭ ହୋଇ ଶୋକଗୀତିଗୁଡ଼ିକ ଆଧୁନିକ ଓଡ଼ିଆ କାବ୍ୟଶୈଳୀର ନିଜସ୍ୱ ଧାରାରେ ପରିଣତ ହୋଇଛି । ପାଶ୍ଚାତ୍ୟ କାବ୍ୟଶୈଳୀର ଅନୁସରଣରୁ ଓଡ଼ିଆ ସାରସ୍ୱତ ସୃଷ୍ଟିରେ ଏହାର ଉଦ୍ଭବ ଭବିଷ୍ୟତକୁ ସମ୍ପୃକ୍ତିତ କରିଛି । ମାନସିଂହ ଏହି ଧାରାର ଏକ କ୍ଷୀଣ ସ୍ରୋତ ହେଲେ ବି ତାଙ୍କ 'ଶୋକପ୍ରୟାଣ' କବିତାଟି ଏବେବି ଅନତିକ୍ରମଣୀୟ ହୋଇ ରହିଛି । ଏହି ପରମ୍ପରାରେ ମାନସିଂହଙ୍କର ଶୋକଗୀତ ଯେ ସଙ୍ଗଠିତ ଏହା ନିର୍ବିବାଦରେ କୁହାଯାଇପାରେ ।

---

(୨୧) ଗଗନ ପ୍ରାଙ୍ଗଣେ ଦୀପ ସଦୃଶ/ଥିଲା ତାରାଟିଏ ହେଲା ଅଦୃଶ୍ୟ
ଆତଙ୍କେ ଆଶରେ ରହିଛୁ ଗୃହିଁ/କକ୍ଷଭ୍ରଷ୍ଟ ହୋଇଗଲା ସେ କାହିଁ"
ଫକୀରମୋହନ ସେନାପତି—କକ୍ଷଭ୍ରଷ୍ଟ ତାରକା—ଅବସର ବାସରେ—
ପୃ ୨୧୨

**ବାଲଡ଼ : ଗାଥା କବିତା —**

କୌଣସି ଗୋଟିଏ କାହାଣୀ, କିମ୍ବଦନ୍ତୀ ବା ଘଟଣାକୁ କେନ୍ଦ୍ରକରି ମାନବାନୁଭୂତିର ଆବେଗମୟ ଅଭିବ୍ୟକ୍ତି ଗାଥା କବିତାରେ ପ୍ରକାଶ ପାଇଥାଏ । ଗାଥା କବିତାରେ ଗୋଟିଏ ଅନୁଭୂତି, ଆବେଗ ଉଚ୍ଛ୍ୱାସର ତୀବ୍ରତା ସହଜ, ସରଳ ଭାଷାରେ ସମଗ୍ର କାହାଣୀ ମାଧ୍ୟମରେ ସଞ୍ଚାରିତ ହୋଇ ରହିଥାଏ । ଆମ ଲୋକସାହିତ୍ୟରେ ଗାଥା-ଗୀତିକା, ବଉଲା ଗାଈ ଗୀତ, ତଅପୋଇ ଗୀତ, ବ୍ରତକଥା, ଟୀକା ଗୋବିନ୍ଦ ଚନ୍ଦ୍ର ଆକାରରେ ପରିଚିତ । ମାତ୍ର ଆଧୁନିକ ଗାଥା କବିତା ଇଂରାଜୀ ସାହିତ୍ୟର ପ୍ରଭାବ-ପ୍ରସୂତ । ଇଂରାଜୀ ସାହିତ୍ୟିକ ବାଲଡ଼୍ ଅନୁକରଣରେ ଓଡ଼ିଆ ଗାଥା କବିତାଗୁଡ଼ିକ ରଚିତ ହୋଇଥିବା ଜଣାଯାଏ ।

ରାଧାନାଥଙ୍କ 'ଚିନ୍ତାବିନ୍ଦୁ', ଫକୀର ମୋହନଙ୍କ 'ଚନ୍ଦ୍ରପ୍ରଭାର ନିର୍ଜଳ ଏକାଦଶୀ', 'ରାମରଥ କଥା', ନନ୍ଦକିଶୋରଙ୍କ 'ଏକାନ୍ତ ନିର୍ଭର', 'ଏକଲବ୍ୟ' ଇତ୍ୟାଦି କବିତାଗୁଡ଼ିକ ଗାଥା କବିତାର ସରଳ କାବ୍ୟିକ ରୂପାୟନ । ଗୋପବନ୍ଧୁଙ୍କ 'ଧର୍ମପଦ', ଗୋଦାବରୀଶଙ୍କର 'ଗାଲମାଧବ', 'କାଳିଜାଇ' ଇତ୍ୟାଦି କିମ୍ବଦନ୍ତୀମୂଳକ ଗୋଟିଏ ଗୋଟିଏ ଗାଥା କବିତା । କିମ୍ବଦନ୍ତୀ ଆଶ୍ରିତ କବିତା ବ୍ୟତୀତ ପ୍ରବାଦ ଓ ଲୋକକଥା ଉପରେ ଆଧାରିତ କେତୋଟି ସମଧର୍ମୀ ଗାଥା କବିତା ମଧ୍ୟ ଆମ ଦୃଷ୍ଟିଗୋଚର ହୁଏ । ନନ୍ଦକିଶୋରଙ୍କ 'ତଅପୋଇ' ଓ ଗୋଦାବରୀଶଙ୍କ 'ମାମୁଁ ଭଣଜା' 'କାଳିଜାଇ' କବିତାକୁ ଦୃଷ୍ଟାନ୍ତରୂପେ ଗ୍ରହଣ କରାଯାଇପାରେ । 'ଜଗାଇ ମାଧାଇ' ଫକୀରମୋହନଙ୍କର ରୂପକାତ୍ମକ ଗାଥା କବିତା ଓଡ଼ିଆ ସାହିତ୍ୟରେ ନିଜସ୍ୱ ଶୈଳୀରେ ପରିପୁଷ୍ଟ ହୋଇଛି । ଇଂରାଜୀ ବାଲଡ଼୍ ରୀତିର ସଂସର୍ଗ ହେତୁ ଓଡ଼ିଆ ଗାଥା କବିତାର ଉନ୍ମେଷ ଘଟି କାଳକ୍ରମେ ପରିବର୍ଦ୍ଧିତ ଓ ବଳିଷ୍ଠ ହୋଇପାରିଛି । ମାନସିଂହଙ୍କ ସମସାମୟିକ କବି ରାଧାମୋହନ ଗଡ଼ନାୟକ ଗାଥା କବିତା ରଚନାରେ ସବୁଠାରୁ ବଳି ଅଧିକ ସ୍ୱୀକୃତିର ଅଧିକାରୀ ହୋଇଛନ୍ତି ।

**ଅମିତ୍ରାକ୍ଷର ଛନ୍ଦ—**

କବିତାରେ ଛନ୍ଦ ଏକ ପ୍ରାଚୀନ ପରମ୍ପରା । ବହୁ ଅତୀତ ଯୁଗର ସ୍ମୃତି ଓ ଆଗ୍ରହ ଛନ୍ଦ ସହିତ ଜଡ଼ିତ । ଛନ୍ଦକୁ ଏକ କୁସଂସ୍କାର ବା ଅନ୍ଧ ଆଗ୍ରହ ବୋଲି ଉଡ଼େଇ ଦେଇ ହେବ ନାହିଁ । ଏହା ଏକ ବହମାନ ଧାରା । ପ୍ରାଚୀନ ସହ ନବୀନର ପ୍ରାଣସ୍ପନ୍ଦନ ଏହି ଗୋଟିଏ ସୂତ୍ରରେ ଗ୍ରଥିତ ପ୍ରାଚୀନ ଓଡ଼ିଆ ଛନ୍ଦ ବିଭବର ମିଳନଯୋଗକୁ ପୂରାପୂରି ବିସର୍ଜନ ଦେଇ ନ ଥିଲେ ମଧ୍ୟ ପାଶ୍ଚାତ୍ୟରୁ ଆହୃତ

ନୂତନ ଛନ୍ଦରୀତିର ପ୍ରଚଳନ ଲାଗି କବିମାନେ ଆଗ୍ରହ ପ୍ରକାଶ କରିଥିଲେ । ସେଥିମଧ୍ୟରୁ ଅମିତ୍ରାକ୍ଷର ଛନ୍ଦ ଅନ୍ୟତମ । ଏହା ପାଶ୍ଚାତ୍ୟ ସାହିତ୍ୟରୁ ଆମ ସାହିତ୍ୟକୁ ଆସିଛି । ପୂର୍ବରୁ 'ପଦଅମେଳ' ରଚନା ସଂସ୍କୃତ କାବ୍ୟ କବିତାରେ ଅବଶ୍ୟ ପ୍ରଚଳିତ ଥିଲା । କିନ୍ତୁ ମେଳହୀନତା ଅମିତ୍ରାକ୍ଷର ଛନ୍ଦର ପରିଚାୟକ ନୁହେଁ । ଛନ୍ଦର ପ୍ରବହମାନତା, ଭାବାନୁସାରୀ ଭାଷାର ବିନ୍ୟାସ, ପଦର ଲାଳିତ୍ୟ ହେଉଛି ଯଥାର୍ଥତଃ ଅମିତ୍ରାକ୍ଷର ନିର୍ମାଣ ବୈଶିଷ୍ଟ୍ୟ । ରାମଶଙ୍କର ରାୟଙ୍କର କାଞ୍ଚିକାବେରୀ ନାଟକର ସ୍ଥାନେ ସ୍ଥାନେ ଏବଂ ଅନ୍ୟ କେତେକ ଗୌଣ କବିଙ୍କ ରଚନାରେ ଅମିତ୍ରାକ୍ଷର ଛନ୍ଦ ଅବଲମ୍ବନ କରାହୋଇଥିଲା । ଅମିତ୍ରାକ୍ଷର ଛନ୍ଦ ବ୍ୟବହାରରେ ମାଇକେଲ ମଧୁସୂଦନ ଓ ମିଲ୍‌ଟନଙ୍କ ମିଶ୍ର ପ୍ରଭାବ ରାଧାନାଥଙ୍କ ସୃଷ୍ଟିରେ ପଡ଼ିଥିବାର ଜଣାଯାଏ । ଏହି ପ୍ରଭାବକୁ ସେ ଏପରି ଭାବେ ଆତ୍ମଗତ କରି ନେଇଥିଲେ ଯେ, ଛନ୍ଦର ସୃଜନ ସୂତ୍ରଟି ମୌଳିକ ସୃଷ୍ଟି ପ୍ରେରଣାର ପ୍ରତିଫଳନ ଭଳି ମନେ ହେଉଥିଲା ।

ବଙ୍ଗଳା ଓ ଇଂରାଜୀ ମିଶ୍ର ପ୍ରଭାବରୁ ରାଧାନାଥଙ୍କର 'ମହାଯାତ୍ରା' (୧୮୯୬), 'ଦଶରଥ ବିୟୋଗ' (୧୯୦୧) ଓ 'ସାବିତ୍ରୀ ଚରିତ'ରେ ସଫଳ ଭାବେ ଅନୁସୃତ । ସଚ୍ଚିଦାନନ୍ଦ ତ୍ରିଭୁବନଦେବଙ୍କ 'ବୈଦିକ ପ୍ରକୃତି', 'ଯୌନ ନିର୍ବାଚନ', ଚନ୍ଦ୍ରାମଣି ମହାନ୍ତିଙ୍କର 'ବିକ୍ରମାଦିତ୍ୟ', 'ଶିଶୁପାଳ ବଧ', ନୀଳକଣ୍ଠ ଦାସଙ୍କର 'ପ୍ରଣୟିନୀ', ପଦ୍ମଚରଣ ପଟ୍ଟନାୟକଙ୍କର 'ପୃଥ୍ୱୀରାଜଙ୍କ ପତ୍ର' ପ୍ରଭୃତି କବିତାରେ ଏହି ଛନ୍ଦଟି ବିଶଦ ଭାବେ ପ୍ରଯୁକ୍ତ ହୋଇଥିବାର ଦୃଷ୍ଟାନ୍ତ ମିଳେ । ପାଶ୍ଚାତ୍ୟଗତ ଏହି ଛନ୍ଦ ରୀତିଟି ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ଓଡ଼ିଆ କବିଙ୍କ ଧ୍ୟାନ ଓ କାବ୍ୟ ଗଠନ କଳାକୁ ପ୍ରଭାବିତ କରିଥିଲା; ଏଥିରେ କୌଣସି ସନ୍ଦେହ ନାହିଁ ।

ଆମ ଓଡ଼ିଆରେ 'ରୁଦ୍ରସୁଧାନିଧି' ଓ ସାରଳାଦାସଙ୍କ ମହାଭାରତର ଦାଣ୍ଡୀ ବୃତ୍ତରେ ଗଦ୍ୟ ଓ ପଦ୍ୟ ପ୍ରାୟ ଏକାକାର ହୋଇ ରହିଛନ୍ତି । ବ୍ରଜନାଥ ବଡ଼ଜେନା ପ୍ରଣୀତ 'ଚତୁର ବିନୋଦ'ରେ ମଧ୍ୟ କେତେକ ପଦ୍ୟ ଗଦ୍ୟଧର୍ମୀ । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଏଭଳି ବହୁ ଗଦ୍ୟ-ଧର୍ମୀ ପଦ୍ୟ ସମ୍ଭାରର ନିଦର୍ଶନ ରହିଛି ।

ଓଡ଼ିଆ ସାହିତ୍ୟର ବିଭିନ୍ନ ଆଙ୍ଗିକ ପରିବର୍ତ୍ତନ ମଧ୍ୟରେ ଭାଷା ବିଭବ ଅନ୍ୟତମ । ଭାଷା ଭାବର ବାହକ । ସେହି ଦୃଷ୍ଟିରୁ ପ୍ରଗତି ସାହିତ୍ୟର ଭାଷା ଆମର ସାଧାରଣ ପ୍ରାତ୍ୟହିକ ଜୀବନରେ ବ୍ୟବହାର୍ଯ୍ୟ ଭାଷାର ଯେତେ ନିକଟବର୍ତ୍ତୀ

ହେବ ସେତକ ଏହାର ପ୍ରାଣଶକ୍ତିର ସ୍ଫୁରଣ ପାଇଁ ଅବକାଶ ମିଳିବ । ଓଡ଼ିଆ ଭାଷାର ଧନେ ପ୍ରାଣ ପ୍ରାଚୁର୍ଯ୍ୟ ଥିଲା । ଓଡ଼ିଶାର ପ୍ରଥମ ଓଡ଼ିଆ ରାଜା କପିଳେନ୍ଦ୍ରଦେବଙ୍କ ଅମଳ ଓଡ଼ିଆ ଭାଷାର ଜନ୍ମକାଳ ବୋଲି ଭାଷାତତ୍ତ୍ୱବିତ୍‌ମାନେ ନିର୍ଦ୍ଧାର୍ଯ୍ୟ କରିଛନ୍ତି । ତାଙ୍କର ସମୟରେ ସାରଳା ଦାସ ଏବଂ ତାଙ୍କ ପରେ ଜଗନ୍ନାଥ ଦାସ ପ୍ରମୁଖଙ୍କ ଭାଷାରେ ଯେଉଁ ପ୍ରାଣ ପ୍ରାଚୁର୍ଯ୍ୟ ପ୍ରକାଶ ପାଇଥିଲା ତାହାର ସମବକାଶ ଭକ୍ତିଯୁଗ ବେଳକୁ କିପରି ଉଭେଇଗଲା ଏବଂ ଓଡ଼ିଆ ଭାଷାର ସ୍ୱକୀୟତା ସଂସ୍କୃତର ଆକ୍ରମଣରେ କିପରି ପଙ୍ଗୁ ଓ ନିର୍ଜୀବ ହୋଇ ପଡ଼ିଲା ତାହା ଉଲ୍ଲେଖଯୋଗ୍ୟ ବିଷୟ । ସାରଳା ଯୁଗର ବାକ୍‌ରୀତି ସଙ୍ଗେ କାବ୍ୟରୀତିର ନିକଟତମ ସମ୍ପର୍କ ପରବର୍ତ୍ତୀ ଯୁଗମାନଙ୍କରେ ଉଭେଇଗଲା । ରୀତିଯୁଗର ତତ୍ସମ ବହୁଳ ଭାଷାର କାବ୍ୟ ଲକ୍ଷଣ ଏଥିପାଇଁ ଦାୟୀ ।

"ଓଡ଼ିଆ କାବ୍ୟରେ ମୌଖିକରୀତି ପ୍ରବର୍ତ୍ତନ କରିବାକୁ ହେଲେ ସଂସ୍କୃତର ଆକ୍ରମଣରୁ କବିତାକୁ ରକ୍ଷା କରିବାକୁ ହେବ । ବାସ୍ତବତାର ଯେତିକି ଅଂଶ ବୁଦ୍ଧିଗ୍ରାହ୍ୟ; ତାହା ପ୍ରଚଳିତ ଭାଷାର ମାଧ୍ୟମରେ ହିଁ ସଙ୍ଘଟିତ ହୋଇଥାଏ ।" (୧) ଶ୍ରୀ ରାଉତରାୟ ଏହି ଆଙ୍ଗିକ ରୀତିର ଅନ୍ୟତମ ପ୍ରବର୍ତ୍ତକ ଭାବରେ ବୈଦେଶିକ କବିମାନଙ୍କ କାବ୍ୟ ଆଙ୍ଗିକ ଦ୍ୱାରା ନିଶ୍ଚିତ ଭାବରେ ପ୍ରଭାବିତ ହୋଇଛନ୍ତି । ଏପରିକି ଏଜରାପାଉଣ୍ଡ, ଇଲିୟଟ୍ ଓ କବି ରବୀନ୍ଦ୍ରନାଥ ମଧ୍ୟ ଚଳିତ ଶତାବ୍ଦୀରେ ବ୍ୟାପକ ଭାବେ ଏହି ଆଙ୍ଗିକକୁ ଅନୁସରଣ କରିଛନ୍ତି । ଗତ ଶତାବ୍ଦୀର ଶେଷ ଭାଗରେ କବି ରାଧାନାଥ କବିତାରେ ଯେଉଁ ଅମିତ୍ରାକ୍ଷର ଛନ୍ଦ ପ୍ରଚଳନ କରିଥିଲେ, ଆଧୁନିକ କବିତାର ମୁକ୍ତଛନ୍ଦ ଏହାରି ଉପରେ ପ୍ରତିଷ୍ଠିତ ବୋଲି ନିର୍ଦ୍ୱନ୍ଦରେ କୁହାଯାଇପାରେ । କିନ୍ତୁ ରାଧାନାଥଙ୍କ ଶୈଳୀରେ କେଉଁଠି ବାକ୍‌ରୀତି ବା ମୌଖିକ ରୀତି ସହିତ କାବ୍ୟିକ ରୀତିର ସମନ୍ୱୟ ସ୍ଥାପିତ ହୋଇନାହିଁ । ଅଧିକନ୍ତୁ ତାଙ୍କର କାବ୍ୟଶୈଳୀ ବିଦଗ୍ଧ ଗୋଷ୍ଠୀ ଦ୍ୱାରା ଆଦୃତ ହୋଇଛି । କିନ୍ତୁ ଉତ୍ତର ତିରିଶି କାଳରେ ଓଡ଼ିଆ କବିତା ମୌଖିକ ରୀତିର ପ୍ରଚଳନରେ ଅଧିକ ସାହସିକତା ପ୍ରକାଶ କରି ସବୁଜଗୋଷ୍ଠୀର କବିତାରେ ପ୍ରକାଶ ପାଇଥିବା ଅତିରିକ୍ତ ଛନ୍ଦବିଳାସିତାକୁ ମଧ୍ୟ ଅତିକ୍ରମ କରିଯାଇଛି । ଆଭରଣହୀନା ଆଧୁନିକା ନାରୀପରି ଆଧୁନିକ କବିତା ତେଣୁ ଛନ୍ଦହୀନ ଓ ସଙ୍ଗୀତ ବିବର୍ଜିତ ହୋଇପଡ଼ିଛି । "ଉପାଧି ମିଳନ ପରି କୃତ୍ରିମ ସୌଷ୍ଠବକୁ ପ୍ରଶ୍ରୟ ଦେବାଦ୍ୱାରା ଓଡ଼ିଆ ସାହିତ୍ୟର ଅନିଷ୍ଟ ହୋଇଛି । ଭାଷା ତା'ର ସ୍ୱଚ୍ଛଳତା ହରେଇଛି, କବି ତା' ଆଙ୍ଗୁଠିରେ ସୁନାର ଶୃଙ୍ଖଳ ଦେଇଛି । ପଣ୍ଡିତ ନୀଳକଣ୍ଠ

(୧) 'ପାଣ୍ଡୁଲିପି'ର ମୁଖବନ୍ଧ—ପୃ. ୩, ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ

ଦାସଙ୍କର 'କୋଣାର୍କେ'ରେ ଭାଷାର ଯେଉଁ ସ୍ୱୈର, ଜାଙ୍ଗଲିକ ସୁଷମା ଦେଖିବାକୁ ମିଳେ; ତାହା ଉପଧା ମିଳନର କୃତ୍ରିମତାର ସମ୍ପୂର୍ଣ୍ଣ ଅଭାବ ଯୋଗୁଁ ହିଁ ସମ୍ଭବ ହୋଇଛି" । (୨୩) ଲୌକିକ ଭାଷାର ଜୀବନ୍ତ ବାକ୍‌ଧାରାକୁ ଉଚ୍ଚ ସାହିତ୍ୟିକ ଗଦ୍ୟରେ ସେ ପ୍ରତିଷ୍ଠା କରିବାକୁ ଚାହୁଁଥିଲେ । ମଧୁସୂଦନ ରାଓଙ୍କ ଗଦ୍ୟରେ ଓଡ଼ିଆ ଗଦ୍ୟର ନିଜସ୍ୱ ଭଙ୍ଗୀ ବା ବାକ୍‌ରୀତି ସହିତ କାବ୍ୟିକରୀତିର ଅପୂର୍ବ ସମନ୍ୱୟ ସେ ଆଶା କରୁଥିଲେ । ସେଥିପାଇଁ ତାଙ୍କ ଆତ୍ମଜୀବନୀରେ ସେ କହିଛନ୍ତି, ଭାଷାର ଉଦ୍ଭବ ଓ ବିକାଶ ଜନତାର ବାଗ୍‌ଭଙ୍ଗୀ ସହିତ ସମତାଳରେ ଗତିକଲେ ଗଦ୍ୟର ଶ୍ରୀବୃଦ୍ଧି ଓ ପ୍ରାଣପ୍ରାଚୁର୍ଯ୍ୟ ଘଟେ ।

## ପୃଥିବୀ ସାହିତ୍ୟରେ ନୂତନ ଚେତନାର ପଦଧ୍ୱନି—

ପ୍ରଥମ ପୃଥିବୀ ମହାଯୁଦ୍ଧ (୧୯୧୪-୧୯୧୮) ମଣିଷ ମନରେ ଯେଉଁ ଗଭୀର ନୈରାଶ୍ୟ ଓ ବେଦନାବୋଧ ଆଣିଥିଲା; ତାହାର ସ୍ୱର T. S. Eliotଙ୍କ 'The Waste Land'ରେ ପ୍ରତିଫଳିତ । ଜୀବନ ପ୍ରତି ଗଭୀର ହତାଶା, ଅବିଶ୍ୱାସ, ଯୁଦ୍ଧର ବିଭୀଷିକା ଯଥାର୍ଥରେ ବିଂଶମାନବବାଦୀ କବିଙ୍କ ହୃଦୟରେ ଗଭୀର ହାହାକାର ଉଠାଇଥିଲା । ଗ୍ରିଶ୍‌ଆଡ଼େ ମନେହେଲା ଯେମିତି ନିରାଶା ଓ ଶୂନ୍ୟତାର ରାଜତ୍ୱ । ଶିଳ୍ପୀର ଭଙ୍ଗାରୁଜା କ୍ଷତବିକ୍ଷତ ମନ ବାସ୍ତବତା ଉପରୁ ଶେଷ ବିଶ୍ୱାସ ଟିକକ ହରାଇ ଆଶ୍ରୟ ପାଇଁ ଏଣେତେଣେ ଅଣ୍ଡାଳି ହେବାକୁ ଲାଗିଲା । ଏହି ସମୟରେ ୟୁରୋପର କୌଣସି କୋଣରେ ଶୁଣାଗଲା ଡାଡ଼ାଙ୍କର କଳାପାହାଡ଼ ଗର୍ଜନ—"ନାହିଁ ନାହିଁ କିଛି ନାହିଁ । ସତ୍ୟ ଖାଲି କବିର ଖିଆଲ" । ଏହାର ନାମ ହେଲା 'ଡାଡ଼ାବାଦ' । ପରେ ଏଥିରୁ ଅତି ବାସ୍ତବ ବା ସରରିଅଲି-ଜିମ୍‌ର ଜନ୍ମ, ସଭ୍ୟତାର ଚରମ ନିଦର୍ଶନ ଲଣ୍ଡନ ସେତୁ ଭାଙ୍ଗିପଡ଼ୁଛି । ଏହିପରି ଏକ ନୈରାଶ୍ୟ ମଧ୍ୟରେ କବି ଶାନ୍ତିର ଅନ୍ୱେଷଣରେ ଅକାଙ୍‌କ୍ଷିତ ଥିଲାବେଳେ ଫରାସୀ କବି ଲୁଇ ଆରାଗଁଙ୍କ କଣ୍ଠରେ ଶୁଣାଯାଉଥିଲା ବଞ୍ଚିବାର ଦୁର୍ବାର ପଦଧ୍ୱନି । ଦଳେ ସମାଜର କ୍ରୂର ପ୍ରତାରଣାରେ ବ୍ୟତିବ୍ୟସ୍ତ ହୋଇ ସମାଜର ସବୁ ନିୟମ କାନୁନ୍ ବିରୁଦ୍ଧରେ 'ଯୁଦ୍ଧଂଦେହି' ଡାକ ଛାଡ଼ି ବ୍ୟକ୍ତି-ସ୍ୱାତନ୍ତ୍ର୍ୟର ନିଶାଣ ଉଡ଼ାଇଲେ । କେହି ପରାଜୟର ବେଦନାରେ, କେହି ହତାଶାର ତାଡ଼ନାରେ, କେହି ବା କ୍ଳାନ୍ତିର ଅବସାଦଜନିତ ନେତୃତ୍ୱରେ ବ୍ୟଥିତ ହୋଇ ବାସ୍ତବତାଠାରୁ ଦୂରକୁ ଦୂରକୁ ପଳାଇ ଯିବାକୁ ଚେଷ୍ଟା କଲେ । ଜୀବନ ପ୍ରତି ବିଦ୍ରୂପ, ବାସ୍ତବତା ପ୍ରତି ଅବିଶ୍ୱାସ ଓ ଆକ୍ରୋଶ ସମାଜ ଛାଡ଼ି ଏକ ଅସହାୟ

(୨୩) ଉତ୍କଳର ମାୟାଧର ମାନସିଂହ—(ଭୂମିକା) କୋଣାର୍କେ

ବାନପ୍ରସ୍ଥ ମନୋବୃତ୍ତି ସାହିତ୍ୟର ମୁଖ୍ୟବସ୍ତୁ ହୋଇଉଠିଲା । ଅନ୍ୟ ସ୍ୱରଟି ଥିଲା ମାନବିକତାର ଅଧିକାର ପ୍ରତିଷ୍ଠା ପାଇଁ ରକ୍ତାକ୍ତ ବିପ୍ଳବର ଆହ୍ୱାନ । ରୁଷିୟାର ମାୟୋକୋଭସ୍କିଙ୍କ ସ୍ୱରରେ ମାନବିକତାର ପ୍ରତିଷ୍ଠା ପାଇଁ ଯେଉଁ ଦରଦ କଣ୍ଠିତ ପୂର୍ବରୁ ପ୍ରକାଶ ପାଇଥିଲା କିମ୍ବା ଆମେରିକାର କବି ହୁଇଟ୍‌ମ୍ୟାନଙ୍କ କାବ୍ୟଚିନ୍ତାରେ ସ୍ପନ୍ଦିତ ହୋଇଥିଲା, ତାହାକୁ ଅନୁସରଣ କରି ଇଲିଅଟ୍ ପରବର୍ତ୍ତୀ ତରୁଣ କବିମାନେ ହଠାତ୍ ପ୍ରତିଷ୍ଠିତ ହୋଇଗଲେ । (୨୪)

ୟୁରୋପର ସମସ୍ତ ସ୍ଥିତିବାଦୀ ଦାର୍ଶନିକମାନଙ୍କ ଲେଖାରେ ତଥାକଥିତ ଏଷ୍ଟାବ୍ଲିସ୍‌ମେଣ୍ଟ, ମଠାଧୀଶ, ଧର୍ମଯାଜକ ଓ ସାମାଜିକ ଲୁଣ୍ଠନ ବିରୁଦ୍ଧରେ ଯୁଦ୍ଧ ପରବର୍ତ୍ତୀକାଳରେ ଓ ପୂର୍ବରୁ ସାର୍ତ୍ରେ, କାମ୍ୟୁ ଓ କାଫ୍‌କା ଆଦିଙ୍କ ସ୍ୱରର ଉଦ୍ଧତତା ଏହି କବିମାନଙ୍କୁ ଯଥେଷ୍ଟ ଅନୁପ୍ରେରିତ କରିଥିଲା ।

ଏହାଛଡ଼ା ଫ୍ରଏଡ଼ଙ୍କ ଦ୍ୱାରା ଅବଚେତନ ମନର କ୍ରିୟା, ପ୍ରକ୍ରିୟା ଅବଧାରିତ ଓ ଆବିଷ୍କୃତ ହେବାପରେ କାବ୍ୟକବିତା ଆଗରେ ଏକ ନୂତନ ଜଗତର ସମ୍ଭାବନା ସହସା ଉନ୍ମୁକ୍ତ ହୋଇଗଲା । ମଣିଷର ଅବଚେତନ ମନର ଅନ୍ଧାରି ଘଟଣାକୁ ଜୀବନର ଏକାନ୍ତ ଗୁପ୍ତ ରହସ୍ୟ ଭାବରେ ଫ୍ରଏଡ୍ ପ୍ରମାଣ କରି ବସିଲେ । ସ୍ନେହ, ଦୟା, ପ୍ରେମ, ବାତ୍ସଲ୍ୟ, ଭକ୍ତି ସବୁ ନାନା ଜଟିଳତାରେ ଭରିଗଲା । ଶେଲି, କୀଟସ୍ ବା ରବୀନ୍ଦ୍ରନାଥ ପ୍ରେମର ଯେଉଁ ଇନ୍ଦ୍ରଜାଲ ରଚନା କରିଥିଲେ, ତାହା ଏହି ମନୋ-ବୈଜ୍ଞାନିକ ଫୁତ୍କାରରେ ସବୁ କୁଆଡ଼େ ଉଭେଇଗଲା । କ୍ରମେ ସମାଜ ଧର୍ମନୀତି ଆଦି ଆଦିଯୁଗର ମୂଲ୍ୟବୋଧ ମଣିଷର ମନ ପାଖରେ ମଳିନ ହୋଇଗଲା । ବ୍ୟକ୍ତିହିଁ ହେଲା ମଣିଷର କେନ୍ଦ୍ର ବିନ୍ଦୁ । ଫ୍ରଏଡ଼ଙ୍କ ସ୍ୱପ୍ନ-ସମୀକ୍ଷା କବିତା ଭାଷାରେ ଏକ ବାସ୍ତବବାଦୀ ଭୂମିକା ଭାବେ ଲୋଭନୀୟ ଆକର୍ଷଣ ସୃଷ୍ଟିକଲା । ସଜ୍ଞାନ ଓ ନିର୍ଜ୍ଞାନ ମନର ମିଶ୍ର ସମ୍ବେଦନାରେ କବିତାର ପଥ ଖୋଲି ପ୍ରାନ୍ତରଗୁଡ଼ିକ ଅତି ବାସ୍ତବବାଦର ଆବଚେତନିକ ମନନଶୀଳତାରେ କ୍ରମେ ଜଟିଳ ହୋଇ ଉଠିଲା । ଜୀବନର ରୁକ୍ଷ ବାସ୍ତବତା, ସମାଜର ଆଧିପତ୍ୟ, ଯନ୍ତ୍ରଣା, ଯୁଦ୍ଧର ଆତଙ୍କ, ଆର୍ଥନୀତିକ ଅସଙ୍ଗତି ଓ ସର୍ବୋପରି ଶୋଷଣ ପୀଡ଼ନ ଠାରୁ ଆତ୍ମରକ୍ଷା କରିବା ପାଇଁ ସର୍‌ରିଆଲିଷ୍ଟ କବିମାନେ ଅବଚେତନର ଅନ୍ଧାରି ଗୁହାରେ ଆତ୍ମଗୋପନ କଲେ । ତେଣୁ ଇଂରାଜୀ

(୨୪) Mycovosky—“On every single tear that is shed I myself am crucified”
Whitman—Comrade, this is no book, who touches it touches a man.

କବିତାରେ ସ୍ପେଣ୍ଡ, ଆର୍ଡ୍ନେନ୍, ଲୁଇ ମାକ୍‌ନିସ୍, ଫ୍ରାନ୍‌ସରେ ଇଆଗୁଁ, ମାଲର୍ମେ, ରୁଷିଆରେ ମାୟୋକୋଭସ୍କି ପ୍ରଭୃତି କବିମାନେ ଏହିପରି ଏକ ସମାଜ-ରାଜନୀତିକ-ମନସ୍ତାତ୍ତ୍ୱିକ ଦର୍ଶନକୁ କେନ୍ଦ୍ରକରି ନୂତନ କବିତାର ଭିତ୍ତି ସ୍ଥାପନ କରିଥିଲେ । ମାର୍କସ୍, ଫ୍ରଏଡ୍ ଓ ପୃଥିବୀ ମହାଯୁଦ୍ଧକୁ କେନ୍ଦ୍ରକରି ଗଠିତ ଚିନ୍ତାଧାରା ଉପରେ ୧୯୨୦-୩୫ ୟୁରୋପର କାବ୍ୟମାନସ ପ୍ରତିଷ୍ଠିତ । ଏ ସବୁର ପ୍ରଭାବ ଯେ ଭାରତୀୟ ସାହିତ୍ୟ ତଥା ଉତ୍କଳୀୟ ସାହିତ୍ୟ ଉପରେ ନ ପଡ଼ିଛି ତାହା ନୁହେଁ । ବରଂ ଖୁବ୍ ଗଭୀରଭାବେ ପଡ଼ିଛି ।

ଓଡ଼ିଶାର ରାଜନୈତିକ କ୍ଷେତ୍ରରେ ଏବଂ ଅତ୍ୟାଗ୍ରହୀତ ଗଡ଼ଜାତ ଲୋକଙ୍କ ମଧ୍ୟରେ ଏକ ନବଜାଗରଣର ସୂତ୍ରପାତ କରିଥିଲା । ଏହାର ନେତୃତ୍ୱ ସେତେବେଳେ ସ୍ୱର୍ଗତଃ ଭଗବତୀ ଚରଣ ପାଣିଗ୍ରାହୀ, ନବକୃଷ୍ଣ ଚୌଧୁରୀ, ସ୍ୱର୍ଗତଃ ଭୁବନାନନ୍ଦ ଦାସ, ପ୍ରାଣନାଥ ପଟ୍ଟନାୟକ ପ୍ରମୁଖ ଯୁଗ ବିପ୍ଳବୀମାନେ ନେଇଥିଲେ । ଏହାକୁ ତ୍ୱରାନ୍ୱିତ କରିବା ପାଇଁ 'କୃଷକ' ପତ୍ରିକା ପ୍ରକାଶ ପାଇଥିଲା । ୧୯୩୫ ଡିସେମ୍ବରରେ କଟକ ଶ୍ରୀରାମଚନ୍ଦ୍ର ଭବନରେ ସ୍ୱର୍ଗତଃ ଭଗବତୀ ଚରଣ ପାଣିଗ୍ରାହୀଙ୍କ ନେତୃତ୍ୱରେ ଆଲୋଚନା ଚକ୍ର ଅନୁଷ୍ଠିତ ହୋଇଥିଲା ଏବଂ ଯୁଗ ଚେତନାକୁ ଲକ୍ଷ୍ୟ ରଖି "ନବଯୁଗ ସାହିତ୍ୟ ସଂସଦ" ନାମରେ ଏକ ସାହିତ୍ୟ ଅନୁଷ୍ଠାନ ଗଠିତ ହୋଇଥିଲା । ଏପରି ଏକ ସଙ୍ଗଠନ ଗଢ଼ିବା ପଛରେ ନିଶ୍ଚିତ ଭାବରେ ଭଗବତୀ ଚରଣଙ୍କ ଚିନ୍ତାଧାରାରେ ୨୧ । ୬ । ୧୯୩୫ ରେ ପ୍ୟାରିସରେ ଅନୁଷ୍ଠିତ ହୋଇଥିବା ବିଶ୍ୱଶାନ୍ତି କଂଗ୍ରେସର ପ୍ରେରଣା ଯେ ଏହାର କାରଣ ତାହା ଅସ୍ୱୀକାର କରିହେବ ନାହିଁ । ଏହି ସମ୍ମିଳନୀରେ ୟୁରୋପ, ଏସିଆର ବିଶିଷ୍ଟ ସାହିତ୍ୟିକମାନେ ଏକତ୍ରିତ ହୋଇଥିଲେ । ଏକ ଫାସିଷ୍ଟ୍‌ବିରୋଧୀ ସମ୍ମିଳନୀ କରି ନୂତନ ସାହିତ୍ୟ ସୃଷ୍ଟି ନିମନ୍ତେ ବାତାବରଣ ସୃଷ୍ଟି କରିବା ଥିଲା ତାଙ୍କର ଆଭିମୁଖ୍ୟ । ଏହି 'ନବଯୁଗ ସାହିତ୍ୟ ସଂସଦ'ର ଛଅଦିନ ବ୍ୟାପୀ ଯେଉଁ ଆଲୋଚନା ତାହା 'ନବଭାରତ'ରେ ପ୍ରକାଶିତ ହୋଇଛି । ମାନବର ଚିରାଚରିତ ରୀତି, ବଦ୍ଧମୂଳ ଧାରଣା, ପୁଞ୍ଜୀଭୂତ କୁସଂସ୍କାର ବିରୁଦ୍ଧରେ ଅଭିଯାନ କରିବା ତାଙ୍କର ଆଭିମୁଖ୍ୟ ଥିଲା । ସାହିତ୍ୟରେ ବିପ୍ଳବର ସୂତ୍ରପାତ କରି ଜାତୀୟ ଜୀବନରେ ଯୁଗାନ୍ତର ଆଣିବା ନିମନ୍ତେ ଏହା କରାଯାଇଥିଲା । ୧୯୩୯-୪୫ ମଧ୍ୟରେ ହୋଇଥିବା ଦ୍ୱିତୀୟ ବିଶ୍ୱଯୁଦ୍ଧ ଓଡ଼ିଆ କାବ୍ୟ-କବିତାକୁ ଯେଉଁ ନୂତନ ସମ୍ପୃକ୍ତି ଦେଇଥିଲା । ତନ୍ମଧ୍ୟରେ ସୋଭିଏତ୍ ରୁଷିଆ ବାଟ ଦେଇ ଆସିଥିବା ସାମ୍ୟବାଦୀ ଭାବଧାରା ମଣିଷ ସଭ୍ୟତାର ଏକ ସଙ୍କଟପୂର୍ଣ୍ଣ ଆହ୍ୱାନ ପାଖରେ ନିଷ୍ପ୍ରଭ ହୋଇ ପଡୁଥିଲା, କାରଣ ବିପ୍ଳବ ଅପେକ୍ଷା ବଞ୍ଚିବା ହିଁ

ଥିଲା ଏହି କାବ୍ୟସ୍ୱରର ଉଗ୍ର ଆଭିମୁଖ୍ୟ । ତେଣୁ ଏହି ପରିପ୍ରେକ୍ଷୀରେ ଏକ ସ୍ଥିତିବାଦୀ ଚେତନା (Existentialism)କୁ ଅବଲମ୍ବନ କରି ସଚ୍ଚି ରାଉତରାୟ, କାଳନ୍ଦୀଚରଣ, ଅନନ୍ତ ପଟ୍ଟନାୟକ ପ୍ରଭୃତି କବିମାନେ ପ୍ରଗତିବାଦୀ ଆଭିମୁଖ୍ୟ ପ୍ରକାଶ କରିଥିଲେ । କବି ମାନସିଂହ ମଧ୍ୟ ସାହିତ୍ୟର ଏହି ନବଜାଗ୍ରତ ଉଦ୍ଦୀପନାକୁ ନିଜର କାବ୍ୟଭାବନାରେ ଅଂଗୀଭୂତ କରିବାକୁ ପ୍ରୟାସ କରିଥିଲେ ଯାହାର ଫଳଶ୍ରୁତି ଥିଲା ତାଙ୍କ ରଚିତ 'ତଳିଆ ଜୀବନର ବିଳାପ' ଶୀର୍ଷକ କବିତା । କିନ୍ତୁ ମାନସିଂହ ଏହି ନବାଗନ୍ତୁକ ଭାବଧାରାକୁ ନିଜ କାବ୍ୟ ଚେତନାରେ ଯଥେଷ୍ଟ ଲାଳନାର ସହିତ ସମ୍ପୃକ୍ତ କରିପାରି ନଥିବା ଲକ୍ଷ୍ୟ କରାଯାଏ । ମୋଟ ଉପରେ ଏହାହିଁ ଥିଲା ପ୍ରାକ୍ ଓ ସମକାଳୀନ ମାନସିଂହ କାବ୍ୟ ସୃଷ୍ଟିର ପ୍ରକୃତି ଓ ଆକୃତି । ଏହି ପରମ୍ପରା ମଧ୍ୟରେ ମାନସିଂହ ଆତ୍ମପ୍ରକାଶ କରି ସେଇ ପରମ୍ପରା ମଧ୍ୟରେ ହିଁ ବିଲୀନ ହୋଇଥିଲେ—ଏହାହିଁ ଏଇ ନିବନ୍ଧର ମୁଖ୍ୟ ପ୍ରତିପାଦ୍ୟ ବିଷୟ ।



# ଦ୍ୱିତୀୟ ପରିଚ୍ଛେଦ

## କବି ମାନସିଂହଙ୍କ କାବ୍ୟ କବିତାର ସଂକ୍ଷିପ୍ତ ପରିଚୟ ଓ ପରିକ୍ରମା

"ହେ ଉତ୍କଳର ତରୁଣ କବିବୃନ୍ଦ, ଭାଷା ଜନନୀଙ୍କୁ ପରିବେଶ ପିନ୍ଧାଇ ସୁନ୍ଦରୀ କରିବାର ଇତରତା ତମ ମନରେ ଘୃଣା ଜାତ କରୁଉନାହିଁ ? ଆମ ମାଆର କ'ଣ ପାଟପଡନୀ ନାହିଁ, ମଣିମୁକ୍ତା ଅଷ୍ଟ ଅଳଙ୍କାର ନାହିଁ, ତାକୁ ଖୋଜ ଓ ତମର ନିଜର ରୁଚି ଅନୁସାରେ ମାଆକୁ ଭୂଷିତ କର । ଏପରି ବଙ୍ଗାଳୁଣୀ କରିବାରେ ମାଆର ଗୌରବ ବଢ଼ି ବଢ଼ି ବଙ୍ଗଲକ୍ଷ୍ମୀ କଟନ୍‌ମିଲ୍‌ର କପଡ଼ା ଫିଙ୍ଗିଦିଅ । ମାଣିଆବନ୍ଧୀ ଶାଢ଼ୀର ସୌନ୍ଦର୍ଯ୍ୟ ବୁଝ । × × ବିଦେଶୀଭାବ ଲୋକକୁ ବିଦେଶୀ କରାଏ ନାହିଁ । ବିଦେଶୀ ବେଶ ହିଁ ଲୋକଙ୍କୁ ଇତର କରିପକାଏ । × × ଏ ଦେଶରେ ଯେ କଅଁ ପୋଲଙ୍ଗ ଫୁଟି ଝଡ଼ିପଡ଼ୁଛି; ସେ ଖବର ନ ରଖି ଏମାନେ ଗ୍ରୀମେଲ୍ଲୀ, ଗୋଲାପ, ବେଲଫୁଲ, ହାସ୍ନାହେନାର ଗନ୍ଧ ଆଣି ଆମକୁ ଶୁଙ୍ଘାଇଲେ । ସାଧବ ଝିଅ ନଈରେ ଗାଧୋଇବାବେଳେ ଛୁଟିପଡ଼ିଥିବା ବାରହାତ ଲମ୍ବ ବାଳକୁ ସୁନାଫରୁଆରେ ପୂରାଇ ପାଣିରେ ଭସାଇ ଦେଇ ଅନେଇ ରହିଛି । ସେ ଦୃଶ୍ୟ କବିମାନେ ଦେଖିପାରୁ ନାହାନ୍ତି, ସେମାନେ ସବୁଜ ପକ୍ଷୀ, ଆଯମାନୀ ପକ୍ଷୀର ନୃତ୍ୟ ଆମକୁ ଦେଖାଉ ଅଛନ୍ତି ।"(୧)

ଏହି ମନ୍ତବ୍ୟ ମଧ୍ୟରେ କବି ମାନସିଂହଙ୍କ କାବ୍ୟ କବିତାର ନିଜସ୍ୱ ଦୃଷ୍ଟିଭଙ୍ଗୀ ସ୍ପଷ୍ଟ ହେବା ସଙ୍ଗେ ସଙ୍ଗେ ସୁନାମଧନ୍ୟ କବି ଅନ୍ନଦାଶଙ୍କର, ବୈକୁଣ୍ଠ ଓ କାଳିନ୍ଦୀଙ୍କ ପ୍ରତି ତାଙ୍କର କଟାକ୍ଷ ବାରିହୋଇପଡ଼ୁଛି । ସବୁଜ ସମସାମୟିକ କବି ମାନସିଂହ ତାଙ୍କ ସ୍ୱାତନ୍ତ୍ର୍ୟରେ ଥିଲେ ମହାନ୍ । ପ୍ରଣୟର ଗୀତକାର ଭାବରେ ମାନସିଂ କେବଳ ନିଜ ସ୍ୱାତନ୍ତ୍ର୍ୟର ପରିଚୟ ଦେଇନାହାନ୍ତି, ଦେଶ ପ୍ରେମର ପ୍ରାଣସ୍ପନ୍ଦନଠାରୁ ଆରମ୍ଭ କରି ପଲ୍ଲୀ ଜୀବନର ବିଭିନ୍ନ ବିଭବରେ ତାଙ୍କ କବିତା ଅନୁରଣିତ । ପୁନଶ୍ଚ ଜଣେ ସାଧାରଣ ମଣିଷର ଅନୁଭୂତ, ଦୁଃଖ,

(୧) ପରିଧର୍ମ—ମାନସିଂହ ଗ୍ରନ୍ଥାବଳୀ, ପୃ. ୬୦୩

ହାହାକାର ଏବଂ ହୃଦୟାବେଗ କବି ମାନସିଂହଙ୍କ ଦୃଷ୍ଟିରେ ଯେପରି ରୂପପ୍ରାଣତା ଲାଭ କରିଛି, ତାହା ପ୍ରାକ୍‌ସବୁଜ କିମ୍ବା ସବୁଜ ସାହିତ୍ୟରେ ଦୁର୍ଲଭ । ଇନ୍ଦ୍ରିୟ ଓ ଅତୀନ୍ଦ୍ରିୟର ସୀମାରେଖା ଅତିକ୍ରମ କରି ତାଙ୍କ କବିତା ଦୀର୍ଘ ତ୍ରିଶ ବର୍ଷ ଧରି ସ୍ୱକୀୟ ପରିକାଷ୍ଠା ପ୍ରତିପାଦନ କରିପାରିଛି । ରାଧାନାଥଙ୍କର ରୋମାଣ୍ଟିକ କାବ୍ୟଚେତନା ସହିତ କବି ମାନସିଂହଙ୍କ କାବ୍ୟ ଚେତନାର ସାମଞ୍ଜସ୍ୟ ଲକ୍ଷ୍ୟ କରାଗଲେ ମଧ୍ୟ ଦୁଇଜଣଙ୍କ ଦୃଷ୍ଟିକୋଣ ଭିନ୍ନମୁଖୀ ଥିଲା । ମାନସିଂହ ଥିଲେ ଗୌରବାବହ ଅତୀତ ଐତିହ୍ୟ ସଚେତନ, ପରୋକ୍ଷରେ ରାଧାନାଥ ଜାତୀୟତା ବିରୋଧୀ ପାଶ୍ଚାତ୍ୟ କାହାଣୀର ପୃଷ୍ଠପୋଷକ । ତେଣୁ ରାଧାନାଥଙ୍କର ରୂପପ୍ରାଣତା ଏବଂ ସତ୍ୟବାଦୀର ଉଗ୍ର ଜାତୀୟ ଚେତନା ପ୍ରତି ମାନସିଂହ ଅଧିକ ସଚେତନ ଥିବାର ମନେହୁଏ । ମାନସିଂହଙ୍କର 'କୋଣାର୍କ' (୨) 'ସାଧବ ଝିଅ' (୩) ଓ 'କେମା' (୪) କାବ୍ୟ ତିନୋଟି ସବୁଜ କାବ୍ୟ ପରମ୍ପରା ପ୍ରତି ବୈପ୍ଳବିକ ପ୍ରତିବାଦ । ନିଜ ଦେଶର ପରମ୍ପରାର ଏବଂ ଐତିହ୍ୟ ପ୍ରତି କବି ଜୀବନର ଆରମ୍ଭରୁ ଅନୁରକ୍ତ ଥିବାର ସ୍ପଷ୍ଟ ସଙ୍କେତ ଏଗୁଡ଼ିକ ବହନ କରିଛି । ସମସାମୟିକ ସବୁଜ ସାହିତ୍ୟିକ ଗୋଷ୍ଠୀ ଏହି ଅତୀତ ଐତିହ୍ୟ ପ୍ରତି ସମ୍ପୂର୍ଣ୍ଣ ଭାବେ ଉଦାସୀନ ଥିଲେ ।

## 'କୋଣାର୍କ'ର ରୋମାଣ୍ଟିକ ଦୃଷ୍ଟିଭଙ୍ଗୀ—

ମାନସିଂହଙ୍କ ପ୍ରାରମ୍ଭିକ କାବ୍ୟଚେତନାର ନୂତନ ଚିତ୍ରକଳ୍ପ ଅଙ୍କିତ ହୋଇଛି କୋଣାର୍କ କାବ୍ୟରେ । ଏଥିରେ ରୂପପ୍ରାଣ ରୋମାଣ୍ଟିକ ଚେତନାର ପରିକାଷ୍ଠା ପ୍ରତିପାଦିତ ହୋଇଛି । "ଯୌବନ ଲାବଣ୍ୟଲୀଳା ଖେଳୁଅଛି ଅଙ୍ଗେ ଅଙ୍ଗେ ତବ/ଫୁଟିଉଠେ ଦେହେ ଦେହେ ସୁଲଳିତ ଅଙ୍ଗ ସଉଷ୍ଠବ / ମନ୍ତ୍ର ଶିଖି ଆସିଥିଲ ମନ-ଜୟେ ମନର ସେପାରେ/ବାରଣିତ କବି କଳ୍ପନାରେ ।" କିମ୍ବା "ଅନାଦିତେ ହେ ବେଳା ଶୋଭନେ/ଯେବେ ତୁମ୍ଭେ ଉଠିଲ ଗଗନେ ।

---

(୨) କୋଣାର୍କ—'ବାରୁଣୀ' ଆଷାଢ଼ ୧୩୩୩ (ଜୁନ୍ ୧୯୨୬)ରେ ପ୍ରଥମେ ଲେଖକ 'ଶ୍ରୀ' ଛଦ୍ମ ନାମରେ ପ୍ରକାଶିତ ।

(୩) 'ସାଧବ ଝିଅ'—ଉତ୍କଳ ସାହିତ୍ୟ ୩୩/୨ ଜ୍ୟେଷ୍ଠ ୧୩୩୬ (ମେ ୧୯୨୯)

(୪) 'କେମା'—ପ୍ରକାଶନ ସମୟ ୧୯୪୭, କିନ୍ତୁ ଦଶବର୍ଷ ତଳର ରଚନା ବୋଲି କବି ମୁଖବନ୍ଧରେ ଦାବୀ କରିଛନ୍ତି । ଏ କବିତାର ୧ମ ସର୍ଗର କେତେକ ଅଂଶ ପ୍ରଥମେ 'ବୁଢ଼ା ଦଳେଇ' ନାମରେ 'ନବଭାରତ'—୪/୨ ମିଥୁନ ୧୩୪୪ (ଜୁନ୍ ୧୯୩୭)ରେ ପ୍ରକାଶିତ ।

ଭେଦଣ ସହସା ନଦୀ ନୀଳ ବେଣୀ ସ୍ୱର୍ଣ୍ଣ ସଇକତ/କ୍ଷୀରୋଦ ପ୍ରଶାନ୍ତ ଗର୍ଭ ବିଶ୍ୱରମା ବକ୍ଷ୍ଟୁପଲ୍ଲୀବିତ । ଅତର୍କିତେ ଫିଟିଥିବ ଏ ଦେଶର ଅମ୍ଳୁତ ଲୋଚନ / କୋଟିହସ୍ତ ବନ୍ଧ ହୋଇ କରିଥିବ ତୁମ୍ଭର ବନ୍ଦନ” କିମ୍ବା “ଜଗତର କବି ଶିଳ୍ପୀ ରୂପ ରାଗ ଦେଖି ତୋହଠାରେ/ଆଶ୍ଳେଷ ଇଚ୍ଛଇ ତୋର ବୃଦ୍ଧ ଦେହେ ଶୋଭି ପିପାସାରେ” । (୫) ବିଦେଶୀ ଭାବକୁ ଏ ଦେଶର ସାହିତ୍ୟକ ପାଣିପାଗ ଭିତରେ ରାଧାନାଥ ଆଣି ଆରୋପ କରିଛନ୍ତି । ସେଥିପାଇଁ ମାନସିଂହ ଅଧିକ ଗୁରୁତ୍ୱ ଦେଉଥିଲେ ମାତୃଭୂମିର ସମ୍ପଦ ଓ ଭାବାଦର୍ଶ ଉପରେ । “କିଏ ଯଦି ଭାବେ ରବୀନ୍ଦ୍ରନାଥ ଇଂରାଜୀରେ ଲେଖି ନାମ ଯଶ କରିଛନ୍ତି, ସେ ବୋଧହୁଏ ଭୁଲ୍ କରେ । ଏହି ସୃଜନ ମାତୃଭାଷାରେ କେବଳ ସମ୍ଭବ ।” (୬) କବିଗୁରୁ ରବୀନ୍ଦ୍ରନାଥଙ୍କ ‘ଉର୍ବଶୀ’ ବା ‘ଶାଜାହାନ’ କବିତାର କେତେକ ଭାବର ପ୍ରତିଧ୍ୱନି ମାନସିଂହଙ୍କ କୋଣାର୍କ ଓ ବାରବାଟୀ କବିତାରେ ଦେଖିବାକୁ ମିଳିଥାଏ ।

“ନହମାତା, ନହକନ୍ୟା, ନହ ବଧୂ ସୁନ୍ଦରୀ ରୂପସୀ
ହେ ନନ୍ଦନ ବାସିନୀ ଉର୍ବଶୀ

× × ×

ଆଦିମ ବସନ୍ତ ପ୍ରାତେ ଉଠେଛିଲେ ମନ୍ଥିତ ସାଗରେ
ଡାନ୍ ହାତେ ସୁଧାପାତ୍ର, ବିଷଭାଣ୍ଡ ଲୟେ ବାମ୍ କରେ
ତରଙ୍ଗିତ ମହାସିନ୍ଧୁ ମନ୍ତ୍ରଶାନ୍ତ ଭୁଜଙ୍ଗେର୍ ମତ
ପଡ଼େଛିଲ ପଦପ୍ରାନ୍ତେ ଉଚ୍ଛ୍ୱସିତ ଫଣାଲକ୍ଷ ଶତ
କରି ଅବନତ
କୁନ୍ଦଶୁଭ୍ର ନଗ୍ନକାନ୍ତି ସୁରେନ୍ଦ୍ର ବନ୍ଦିତା
ତୁମି ଅନିନ୍ଦିତା ।” (୭)

ମାନସିଂହଙ୍କର—“ଅନିନ୍ଦିତେ ହେ ବେଳା ଶୋଭନେ
ଯେବେ ତୁମ୍ଭେ ଉଠିଲ ଗଗନେ
ଭେଦିଣ ସହସା ନଦୀ ନୀଳ ବେଣୀ ସ୍ୱର୍ଣ୍ଣସଇକତ
କ୍ଷୀରୋଦ ପ୍ରଶାନ୍ତ ଗର୍ଭ ବିଶ୍ୱରମା ବକ୍ଷ୍ଟୁପଲ୍ଲୀବିତ

× × ×

---

(୫) ‘କୋଣାର୍କ’—ମାନସିଂହ ଗ୍ରନ୍ଥାବଳୀ, ପୃ. ୧୩୭

(୬) ଓଡ଼ିଆ ସାହିତ୍ୟ ଓ ସମାଜ—ମାନସିଂହ ଗ୍ରନ୍ଥାବଳୀ, ପୃ. ୬୦୭

(୭) ‘ଉର୍ବଶୀ’ (ଚୟନ) କବିଗୁରୁ ରବୀନ୍ଦ୍ରନାଥ ଠାକୁର—ସଞ୍ଚୟିତା—ପୃ. ୧୫୦

ଜସ୍ତ ସ୍ୱର୍ଗ ନିବାସିନୀ ଅବତୀର୍ଣ୍ଣା ମର୍ତ୍ତ୍ୟ ବିଭୂଷଣେ
ରୁକ୍ଷ ବର୍ଣ୍ଣେ, ଶୋଭ୍ର ବିତରଣେ ।” (୮)

'କୋଣାର୍କର ଲାସ୍ୟଲୀଳା' (୯) କବିତାରେ ଯଦିଓ ଜାତୀୟ ବେଦନା-ବୋଧର ଚିହ୍ନ ପରିଦୃଷ୍ଟ ହୁଏ ନାହିଁ ତଥାପି ତାଙ୍କର ରୋମାଣ୍ଟିକ ଦୃଷ୍ଟିଭଙ୍ଗୀ ଏବଂ ଗୀତିଧର୍ମର ଗୌରବରେ ଗୌରବାନ୍ୱିତ । 'କୋଣାର୍କର ଲାସ୍ୟଲୀଳା'ରୁ ମାନସିଂହଙ୍କର ଯୌବନ ସୁଲଭ ଭାବାବେଗ, ଦେହାକର୍ଷଣ ଓ ରୋମାଣ୍ଟିକ ଭୋଗାକାଂକ୍ଷା ପ୍ରତିପନ୍ନ ହୋଇଛି । ଜଣେ ଜାତୀୟବାଦୀ କବି ଭାବରେ 'କୋଣାର୍କ'ର ଭଗ୍ନାବସ୍ଥା ତାଙ୍କ ହୃଦୟକୁ ସ୍ପର୍ଶ କରିଛି । ତେଣୁ ମୁମୂର୍ଷୁ କୋଣାର୍କ ତାଙ୍କ ଜାତୀୟତାର ଅଖଣ୍ଡ ଆବେଗ ନେଇ ଛିଡ଼ା ହୋଇଛି ।

“ଅଶ୍ରୁସିକ୍ତ ନେତ୍ର ତଳେ କୋଟି ପ୍ରେମିକର
ତିଳେ ତିଳେ ମରୁଅଛ ସୁନ୍ଦରୀ କୋଣାର୍କ
ନିଶୂତର ଦୀର୍ଘଶ୍ୱାସ, ସହସ୍ରର ମୌନ ହାହାକାରେ
ହେ ସୁନ୍ଦରୀ ତୁମଲାଗି ଉଠେ ବିଶ୍ୱଚିତ୍ତେ
ସକରୁଣ ଅଶ୍ରୁତ ବିଳାପ ।” (୧୦)'

ରୋମାଣ୍ଟିକ କଳ୍ପନା ସହିତ ଜାତୀୟ ଚେତନାର ଏକ ଅପୂର୍ବ ସମନ୍ୱୟ ଘଟିଛି । ଏହି ରୋମାଣ୍ଟିକ ପ୍ରବଣତା ସମ୍ପର୍କରେ ମାନସିଂହଙ୍କର ଗୋଟାଏ ବିଶେଷ ପ୍ରତ୍ୟୟ ଅଛି । ଯେଉଁମାନେ ତାଙ୍କ କବିତା ଭଲଭାବରେ ପଢ଼ିଛନ୍ତି; ସେମାନେ କେବଳ ଏହି ପ୍ରତ୍ୟୟ ସମ୍ପର୍କରେ ସଚେତନ । ମାନସିଂହ ସାହିତ୍ୟରେ ପଲ୍ଲୀପ୍ରୀତି, ସ୍ୱଦେଶପ୍ରୀତି ଏବଂ ରୂପପ୍ରୀତି—ଏହି ତିନି ମୁଖ୍ୟ ଧାରାର ସ୍ରୋତ ଅବାରିତ ଭାବରେ ପ୍ରବାହିତ । ତାହାଙ୍କ ଜୀବନ ଓ କାବ୍ୟ ଦୁଇଟି ଯାକ ଗୋଟିଏ ସୂତାରେ ଗୁନ୍ଥା ହୋଇଛି । ଅପରୂପ ଅରୂପକୁ ରୂପ ମଧ୍ୟରେ ବାନ୍ଧିବାର ଏବଂ ରୂପ ମଧ୍ୟ ଦେଇ ଅରୂପକୁ ଆରାଧନା କରିବାର ଯେଉଁ ସାଧନା, ତାହା ମାନସିଂ ସାହିତ୍ୟରେ ପରିଦୃଷ୍ଟ ହୋଇଥାଏ । ତାଙ୍କ ଜୀବନରେ ସେହି ସାଧନାର ବିସ୍ତାର ଘଟିଛି । ତାଙ୍କ କାବ୍ୟ ଜୀବନ ଏବଂ ବ୍ୟାବହାରିକ ଜୀବନରେ କୌଣସି

---

(୮) 'କୋଣାର୍କ'—ମାନସିଂହ ଗ୍ରନ୍ଥାବଳୀ—ପୃ. ୬୩୭

(୯) 'କୋଣାର୍କର ଲାସ୍ୟଲୀଳା'—ସହକାର ୧୭ ଭାଗ—ଭାଦ୍ର-ଆଶ୍ୱିନ—୧୩୪୩ ଅଗଷ୍ଟ-ସେପ୍ଟେମ୍ବର—୧୯୩୫

(୧୦) ମୁମୂର୍ଷୁ କୋଣାର୍କ—ଝଙ୍କାର ୧୧/୧ ସଂଖ୍ୟା, ଏପ୍ରିଲ—୧୯୬୦, ମାନସିଂହ ଗ୍ରନ୍ଥାବଳୀ—ପୃ. ୬୫୫

ପ୍ରଭେଦ ନ ଥିଲା । ବିଚିତ୍ର ବର୍ଣ୍ଣବିଭାରେ ମାନସିଂହଙ୍କ ସାହିତ୍ୟ ବର୍ଣ୍ଣମୟ ଏବଂ ବିଚିତ୍ର ଭାବ ସମ୍ଭାରରେ ତାହା ସମୃଦ୍ଧ । ମାନସିଂହଙ୍କ କବି କୀର୍ତ୍ତି ସହିତ ଏକମାତ୍ର ନିଦର୍ଶ ଅରଣ୍ୟ ତୁଳିତ ହୋଇପାରେ । ଯେଉଁ ଅରଣ୍ୟ ଲତା ଗୁଳ୍ମଠାରୁ ଆରମ୍ଭ କରି ପ୍ରକାଣ୍ଡ ବୃକ୍ଷର ଐଶ୍ୱର୍ଯ୍ୟରେ କେବଳ ବୈଚିତ୍ର୍ୟମୟ ନୁହେଁ, ଭାବଗାମ୍ଭୀର୍ଯ୍ୟରେ ଏବଂ ଆୟତନ ବିରାଟତାରେ ମହାସ୍ଥାନ, ସେହି ବିରାଟ ଅରଣ୍ୟ ଭିତରେ ପ୍ରବେଶ କରିବା କ୍ଷଣି ବିଚ୍ଛିନ୍ନ ବୃକ୍ଷଲତା ଦୃଷ୍ଟିଗୋଚର ହୋଇଥାଏ ଏବଂ ପ୍ରତ୍ୟେକ ତରୁଲତା ପୃଥକ୍ ପୃଥକ୍ ଭାବରେ ଚିତ୍ତ ଏବଂ ଚକ୍ଷୁକୁ ଆକର୍ଷଣ କରିଥାଏ । ତାଙ୍କର 'କୋଣାର୍କ' କାବ୍ୟ ଯେପରି ଭାବରେ ହୃଦୟଗ୍ରାହୀ 'କେମା' କିମ୍ବା 'ସାଧବ ଝିଅ' ସେହିପରି ଭାବରେ ଆବେଗଧର୍ମୀ । କୋଣାର୍କ ପୂର୍ଣ୍ଣ ସୌନ୍ଦର୍ଯ୍ୟର ପ୍ରତିମା । ବିସ୍ମୟ ଓ ଆନନ୍ଦର ପରିପୂର୍ଣ୍ଣ ସୃଷ୍ଟି । ତାହାର ଦ୍ୟୁତି ବୈଦିକ ଅତୀତ ଏବଂ ବର୍ତ୍ତମାନର ସୀମା ଅତିକ୍ରମ କରି ଅନାଗତ ଭବିଷ୍ୟତର କଳ୍ପନା ଭିତରେ ବିସ୍ତୃତ । ମାନବର ଚିରନ୍ତନ ପ୍ରେମ ଓ ସୌନ୍ଦର୍ଯ୍ୟ-ବାସନା ମଧ୍ୟରେ ତାହାର ସ୍ମୃତି ବିଧୃତ । ବହୁ ପୁରାତନ ସଙ୍ଗୀତ ସ୍ମୃତି ତାହା ସହିତ ଜଡ଼ିତ ।

**ସାଧବ ଝିଅ—**

କୋଣାର୍କର ବିମର୍ଶ ଦୃଷ୍ଟିଭଙ୍ଗୀ ଆଉ ଏକ ଜାତୀୟ ଗୌରବପୂର୍ଣ୍ଣ ଅତୀତର ପୃଷ୍ଠାଙ୍କ ଉନ୍ମୋଚନ କରିବା ପାଇଁ ମାନସିଂହଙ୍କୁ ପ୍ରେରଣା ହୁଏତ ଦେଇଛି । ତେଣୁ ସେ ଅତୀତ ଉତ୍କଳର ଗୌରବଦୀପ୍ତ ନୌଯାତ୍ରାର କାହାଣୀ ଉପରେ ଆଧାରିତ ବିଷୟବସ୍ତୁକୁ ବାଛି ନେଇଛନ୍ତି 'ସାଧବ ଝିଅ' ଭାବରେ । (୧୧) କୋଣାର୍କଠାରୁ ସାଧବ ଝିଅ ପର୍ଯ୍ୟନ୍ତ ରୋମାଣ୍ଟିକ୍ ଓ ଜାତୀୟବାଦୀ ଚେତନାର ଚିତ୍ରଲିପି ଅଙ୍କିତ । ପ୍ରତ୍ୟେକ ରୋମାଣ୍ଟିକ୍ କବିଙ୍କର ଅତୀତ ପ୍ରତି ଗଭୀର ପ୍ରବଣତା ଥିବାର ପରିଦୃଷ୍ଟ ହୋଇଥାଏ । ସବୁଜ ଗୋଷ୍ଠୀର ସାହିତ୍ୟକମାନଙ୍କର ଏହି ରୋମାଣ୍ଟିକ୍ ଦୃଷ୍ଟିକୋଣ ସମ୍ପୂର୍ଣ୍ଣ ପୃଥକ ଥିଲା । ସେମାନେ ପଶ୍ଚିମବଙ୍ଗର ପରିକଳ୍ପନାରେ ମଜଗୁଲ ଥିବାବେଳେ ମାନସିଂହ ତାଙ୍କ 'ସାଧବ ଝିଅ' କାବ୍ୟର ମୁଖବନ୍ଧରେ ଲେଖିଥିଲେ "ସାଧବ ଘରର ବୋହୂ ଓ ଝିଅମାନଙ୍କର କାରୁଣ୍ୟ-ରସରଞ୍ଜିତ ଲୌକିକ କାହାଣୀ କେଉଁ ଓଡ଼ିଆର ଶୈଶବକୁ ମଥିତ ନ କରିଛି ? × × × ତଅପୋଇ ଗପରୁ, ଭ୍ରମରବର ପାଲାରୁ ଓ କେଉଁ କେଉଁ କାବ୍ୟ କବିତାରୁ ଉତ୍କଳର ଇତିହାସ ନିବଦ୍ଧ ସମୁଦ୍ର ବାଣିଜ୍ୟର ପାରିବାରିକ ଦିଗର କରୁଣ ଛବି ମୋ ଚିତ୍ତକୁ ବାଲ୍ୟକାଳରୁ ସ୍ପର୍ଶ ଚଞ୍ଚଳ କରି ରଖିଥିଲା । ସେହି ରୂପକଥାର ନରନାରୀମାନଙ୍କୁ, ନୂତନ ଓଡ଼ିଆ ଭାଷାରେ

(୧୧) ସାଧବ ଝିଅ—ଉତ୍କଳ ସାହିତ୍ୟ ୩୩/୨, ଜ୍ୟେଷ୍ଠ ୧୩୩୬ (ମେ ୧୯୨୯)

ନୂତନ ରୂପରେ ଉଜ୍ଜୀବିତ କରିବାର ଆସ୍ପର୍ଦ୍ଧା ଫଳରେ ମୁଁ ପ୍ରାପ୍ତ ଷୋଳବର୍ଷ ତଳେ କଲେଜରେ ପ୍ରବିଷ୍ଟ ଥିବା ସମୟରେ ପ୍ରଥମେ 'ସାଧବ ଝିଅ' କବିତାଟି ଲେଖିଥିଲି ଏବଂ ଉତ୍କଳ ସାହିତ୍ୟରେ ତାହା ପ୍ରକାଶିତ ହେଲାପରେ ତାହା ଅନେକ ପାଠକଙ୍କର ଚିତ୍ତରଞ୍ଜନ ହେବାର ଜାଣି ବହୁ ଉତ୍ସାହିତ ହୋଇ ପରେ ପରେ 'ମାଲୁଣୀ' ଓ 'ସାଧବ ପୁଅ' ନାମକ ଦୁଇଟି କବିତା ଲେଖିଥିଲି ।'' (୧୨) କବିଙ୍କର ଶୈଶବର ସ୍ମୃତିରେ ଆନ୍ଦୋଳିତ 'ସାଧବ ଝିଅ' ଅଧିକ ଗମ୍ଭୀର, ଅଧିକ ଫଳିତ ଅନୁଭୂତିର କାବ୍ୟ । ଏହି କାବ୍ୟର ଘନିଷ୍ଠ ଆତ୍ମୀୟତା ଅନସ୍ୱୀକାର୍ଯ୍ୟ । ''ମାନସିଂହଙ୍କ କାବ୍ୟଦରବାରରେ ଏ ଦେଶର ମଧ୍ୟଯୁଗୀୟ ଇତିହାସର ଗୌରବମୟ ଅତୀତ ପୁଣି ପୁନର୍ଜୀବିତ ହୋଇ ଉଠିଛି । ଏ ଦେଶର 'ସାଧବ ଝିଅ'ର ଅଶ୍ରୁବେଦନା ଯାହାକି ଆକାଶ ବତାଶରେ ଭାସି ଭାସି ଶୂନ୍ୟ ମନରେ ନିଜ ରୂପ ପ୍ରକାଶ ପାଇଁ ଶିଳ୍ପୀ ପ୍ରାଣରେ ଆସନ ଖୋଜି ବୁଲୁଥିଲା; ସେ ପୁଣି କବିପ୍ରାଣର ସହାନୁଭୂତି ପାଇ ମୂର୍ତ୍ତି ପରିଗ୍ରହ କରି ଆମ ସମ୍ମୁଖରେ ତା'ର ଅଶ୍ରୁ-ଅର୍ଘ୍ୟ ଧରି ଛିଡ଼ା ହୋଇଛି ।'' (୧୩) 'ସାଧବ ଝିଅ' ଯଦିଓ ରୋମାଣ୍ଟିକ୍ କାବ୍ୟ ଚେତନାର ମୂର୍ତ୍ତି ବିଗ୍ରହ; ତଥାପି ତା'ର ଅନ୍ତଃସ୍ୱର ଜାତୀୟପ୍ରୀତିମୂଳକ । ଓଡ଼ିଶାର ମଧ୍ୟଯୁଗୀୟ ଜଣେ ସାଧବ ଝିଅର ମନଗହନର ଅକୁହା ବ୍ୟଥାକୁ ମାନସିଂହ ରସୋତ୍ତୀର୍ଣ୍ଣ କରି ପ୍ରକାଶ କରିଛନ୍ତି ।

''ବିଜନ ବେଳା, ବିଜନ ବେଳା
କହୁ ନାହୁଁ କାହିଁ ବୋଇତ ଗଲା ।''

କିମ୍ବା ଉତ୍କଳର ନୌବାଣିଜ୍ୟର ଚିତ୍ର ଦେବାକୁ ଯାଇ କବି କହିଛନ୍ତି—

''ସାଧବ ପୁଅ ମୁଁ ବୋଇତରେ ମୋ ଜୀବନ
ସାଗର ଲହରୀ ଗଣି ସରେ ଯଉବନ
ଧ୍ରୁବତାରା ଗୃହିଁ ଶୁଖାଇ ଆଖିର ପାଣି
କାନେ ଚିର କରୁଁ ସୁନା ରୂପା ଝଣ ଝଣ ।'' (୧୪)

''ସାଧବ ଝିଅ' ବା 'କେମା' ମାନବ ଜୀବନର ମଧୁଯାମିନୀ ନୁହେଁ । ତାହା ଅଶ୍ରୁ-ଜାଗର ଯାପିତ ବିରହର ଅମାନିଶି । କବିଙ୍କ 'ସାଧବ ଝିଅ'ର ହୃଦୟ ସଙ୍ଗୀତ

(୧୨) ସାଧବ ଝିଅ ମୁଖବନ୍ଧ—ମାନସିଂହ ଗ୍ରନ୍ଥାବଳୀ—ପୃଷ୍ଠା: ୯

(୧୩) ମାନସିଂହଙ୍କ କାବ୍ୟ ପ୍ରତିଭା—ଅଧ୍ୟାପକ ଚନ୍ଦ୍ରମଣି ବେହେରା—ଡଗର ୧୯୫୭ ଅଗଷ୍ଟ

(୧୪) ସାଧବ ଝିଅ—ମାନସିଂହ ଗ୍ରନ୍ଥାବଳୀ (୨ୟ ଭାଗ) ପୃ: ୧୩୪

ସାଧବ ପୁଅ ନାଗ୍ର ହୃଦୟ ଓ ନାଗ୍ର ଲୁହ ଘେନ ବାଣିଜ୍ୟ କରିବା ଭଳି, କବି ମଧ୍ୟ ସ୍ୱକୀୟ ଭାବରାଜ୍ୟରେ ଏହି ପ୍ରୀତି ବାଣିଜ୍ୟ ବହୁସମୟରେ କରିଛନ୍ତି ସତ; କିନ୍ତୁ ସେଥିରେ ଅସାଧୁତା ବା ବିଶ୍ୱାସଘାତକତା କେଉଁଠି ପ୍ରକାଶିତ ହୋଇ ନାହିଁ ବରଂ ପ୍ରକାଶ ପାଇଛି ଶିଳ୍ପୀପ୍ରାଣର ନିଷ୍ଠା, ବିଶ୍ୱାସ ଓ ଆନ୍ତରିକତା ।" (୧୫) 'ସାଧବ ଝିଅ' କବିତା ସହିତ 'ସାଧବ ପୁଅ' 'ମାଲୁଣି', 'ମାଳା ଗ୍ରହଣ' ଆଦି ଅଧ୍ୟାୟ ଗୁଡିକ ବିଭିନ୍ନ ସମୟରେ କବିତାକାରରେ ଲିଖିତ ହୋଇ ମାନସିଂହଙ୍କ ରୋମାଣ୍ଟିକ୍ ଦୃଷ୍ଟିକୋଣକୁ ଅଧିକ ବିସ୍ତୃତ କରିଅଛି ।

**ଜେମା—**

ଜେମା କାବ୍ୟର ପ୍ରଥମ ପ୍ରକାଶ ୧୯୪୭ । ଏହାର ଭୂମିକାରେ କବି ଲେଖିଛନ୍ତି, "ଏହା ପ୍ରାୟ ୧୦ ବର୍ଷ ତଳେ ଲେଖା ହୋଇ ଅବହେଳିତ ଭାବରେ ପାଣ୍ଡୁଲିପିରେ ପଡ଼ି ରହିଥିଲା । ଏହାର ପ୍ରଥମ ସର୍ଗର କିଛି ଅଂଶ 'ବୁଢ଼ା ଦଳେଇ' ନାମରେ 'ନବ ଭାରତ' ୪/୧ ମିଥୁନ ୧୩୪୪ ଜୁନ୍ ୧୯୩୭ରେ ପ୍ରକାଶ ପାଇଥିଲା । ଏଇ କବିତାର ଫୁଟ୍‌ନୋଟ୍‌ରେ ଲେଖାଅଛି "ଲେଖକର ଅପ୍ରକାଶିତ ଜେମା କାବ୍ୟର ଅଂଶ ।" ଏହି କବିତାଟି ପୁନର୍ବାର ଆରତି ୧/୬ ଓ ୧/୭ କାର୍ତ୍ତିକ ଓ ମାର୍ଗଶୀର ୧୩୪୮ (ଅକ୍ଟୋବର ଓ ନଭେମ୍ବର ୧୯୪୦) ଦୁଇ ସଂଖ୍ୟାରେ ପ୍ରକାଶିତ । ଏଥିର ପ୍ରଥମ ସଂଖ୍ୟାରେ କବିତାର ଆରମ୍ଭରେ 'ନାୟିକା ପ୍ରତି' କବିତାଟି ଅଛି ଓ ପ୍ରଥମେ ନିର୍ଦ୍ଦେଶ ଦିଆଯାଇଛି । ବର୍ଣ୍ଣିତ ବିଷୟ ଦଳାଇ ଓ ଶଙ୍କରଙ୍କ ଦୁଇ କନ୍ୟା । ଗଞ୍ଜାମ ଧନୀଙ୍କର ସେମାନଙ୍କ ପ୍ରତି ଆଗ୍ରହ, ପଦ୍ମାର ବିବାହ ଓ ମୃତ୍ୟୁ, କଣୋଖ 'ଜେମା'ର ବୟସ୍କ ଧନୀକଙ୍କ ସହି ବିବାହ ।" ପ୍ରକାଶିତ ଜେମା କାବ୍ୟରେ (୧୯୪୭) ଏଇ ନାୟିକା ପ୍ରତି କବିତାଟି ନାହିଁ । (୧୬) ଜେମା ସଂପର୍କରେ ଶ୍ରୀମତୀ ମାନସିଂହଙ୍କ ମନ୍ତବ୍ୟ ଏଠାରେ ପ୍ରଣିଧାନଯୋଗ୍ୟ—

"ଜେମା କାବ୍ୟର ନାୟିକା ଜେମା ମାନସିଂହଙ୍କ ଗାଁର ଝିଅ । ଅତି ସାଧାରଣୀ ଗାଆଁ ଝିଅଟିଏ । ସମ୍ପର୍କରେ ମୋର ନଣନ୍ଦ । ଆମେ ନନ୍ଦଲା ଗାଆଁକୁ ଗଲେ ସେ ଆସେ ଦେଖା କରିବାକୁ । ଅଳ୍ପ ପରିହାସ କରେ । ମୋ ନିଜ ନଣନ୍ଦଙ୍କ ସମବୟସୀ । ଦୁହିଁଙ୍କ ଭାଗ୍ୟ ପ୍ରାୟ ଏକ । ଏହି ଏକ ସାଧାରଣ

---

(୧୫) ଓଡ଼ିଆ ସାହିତ୍ୟର ଇତିହାସ—ମାନସିଂହ—ପୃଷ୍ଠା (ଙ)

(୧୬) କବି ମାନସିଂହଙ୍କ ପଦର ବର୍ଷ ରଚନାର କାଳନିର୍ଣ୍ଣୟ—ଡକ୍ଟର ନଟବର ସାମନ୍ତରାୟ (ମାନସିଂ ସୃଷ୍ଟି ସମୀକ୍ଷା) ପୃ: ୬୬

ନାୟିକୁ ମାନସିଂହ ଅସାଧାରଣ କରି ଗଢ଼ିଛନ୍ତି ।'' (୧୭) ମାନସିଂହ ତାଙ୍କ ଗାଆଁର ଏହି ଜୀବନ୍ତ ଘଟଣାକୁ କାବ୍ୟ ଗୌରବ ଦେଇ ତାଙ୍କ ଗାଆଁ ନନ୍ଦଲାକୁ ସାର୍ଥକ କରିଗଲେ । "Sacrifice, thy name is woman." ନିରକ୍ଷର ପଲ୍ଲୀକନ୍ୟା 'ଜେମା'ର ଚରିତ୍ର ପ୍ରତି ତାହା ଏକାନ୍ତରେ ପ୍ରଯୁଜ୍ୟ । ଗଳ୍ପାଂଶଟି ସାଧାରଣ ହେଲେ ହେଁ ଏଥିରେ କବି ଲେଖନୀରେ ଯେଉଁ କଳାଗତ ନୈପୁଣ୍ୟ ଫୁଟି ଉଠିଛି; ତାହା ଅବିସ୍ମରଣୀୟ ।

**କମଳାୟନ—**

"ଦାନ୍ତେଙ୍କର ଡିଭାଇନ୍ କମେଡ଼ି ବା କାଳିଦାସଙ୍କର ରଘୁବଂଶ ବା ସେକ୍‌ସପିୟରଙ୍କ ନାଟକାବଳୀ ଯେପରି କାଳାତୀତ ହୋଇ ମଧ୍ୟ ଏକାନ୍ତରେ ସେହି ସେହି କବିଙ୍କର ସମସାମୟିକ କାଳର ପ୍ରକୃଷ୍ଟ ପ୍ରତିବିମ୍ବ ବୋଲି ଧରାଯାନ୍ତି, ମନେହୁଏ ଦୂର ଭବିଷ୍ୟତରେ ଆମକାଳର ଛବି ଯଦି କେହି କେହି ଖୋଜି ବସିବେ ; ତେବେ ହୁଏତ ସେ ତାହା ବିଶେଷ ଭାବରେ ପାଇବେ ଏହି କମଳାୟନରୁ ।'' (୧୮) ମାନସିଂହ ନିଜେ ସ୍ୱୀକାର କରିଛନ୍ତି ଅଜ୍ଞତା ଓ ସ୍ୱାର୍ଥପରତା ପ୍ରଭୃତି ଅନ୍ତରର ଦାନବୀୟ ଶକ୍ତି ସହିତ ସଂଗ୍ରାମ କରି ଶୁଭ୍ର ମାନବିକତାର ବିଜୟସ୍ତମ୍ଭ ପୃଥିବୀରେ ନିର୍ମାଣ କରିବାକୁ ସାମ୍ୟ ମୈତ୍ରୀର କରୁଣା ଦୃଷ୍ଟିରେ ପୃଥିବୀକୁ ମଧୁମୟ କରିବାକୁ ଏବଂ ବିଶ୍ୱକୁ ଏକ ପରିବାର ରୂପେ କଳ୍ପନା କରି ହିଂସା, ଦ୍ୱେଷର ବୀଜ ଧରଣୀ ବକ୍ଷରୁ ଲୋପ କରିବାକୁ ଏହି ବୃହତ୍ତ କାବ୍ୟରେ କବି ନିର୍ଦ୍ଦେଶ ଦେଇଛନ୍ତି । ସବୁଜ କାବ୍ୟ ଚେତନାର ପ୍ରତିବାଦ ଭାବେ ଓଡ଼ିଶାର ଐତିହ୍ୟ ଓ ସଂସ୍କୃତିକୁ କାବ୍ୟାକାରରେ ପୁନରୁଜ୍ଜୀବିତ କରିବାରେ ତାଙ୍କ କାବ୍ୟମାନସ ପ୍ରାଣିତ ହୋଇଉଠିଛି । ତାଙ୍କର ଦୀର୍ଘ କାବ୍ୟ 'କମଳାୟନ' (୧୯୬୭)ରେ ଏହା ଅଧିକ ସ୍ପଷ୍ଟ । ତତ୍କାଳୀନ ଜାତୀୟ ସଂଗ୍ରାମକୁ ପୃଷ୍ଠଭୂମି କରି ସେ କେତୋଟି ବାସ୍ତବ ଓ କାଳ୍ପନିକ ଚରିତ୍ରର ଅବତାରଣା କରିଛନ୍ତି । ଏ ସମ୍ପର୍କରେ ତାଙ୍କର ସ୍ପଷ୍ଟୋକ୍ତି "ନିଜର ସମସ୍ତ ଅକର୍ମଣ୍ୟତାଠାରେ ଜୀବନରେ ଯାହା ମହତ୍ତ୍ୱ, ଯାହା ସୁନ୍ଦର ଯାହା ସତ୍ୟ ମୁଁ କିନ୍ତୁ ରହିଆସିଛି କେବଳ ତାହାର ହିଁ ଉପାସକ ଭକ୍ତ । କୌଣସି ଗୋଷ୍ଠୀ, ଦଳ ବା ଇଜମ୍‌ର ପ୍ରଚାରକ ରୂପେ ଠିଆ ହେବା ମୋର ସ୍ୱଭାବ ବିରୁଦ୍ଧ । ମୁଁ ମୋର 'କମଳାୟନ' କାବ୍ୟରେ ଏହାହିଁ ଦେଖାଇବାକୁ ଯାଇଛି ଯେ ଦଳ

(୧୭) ପ୍ରିୟପରମ—ମାନସିଂହ ପରିକ୍ରମା—ଶ୍ରୀମତୀ ହେମଲତା ମାନସିଂହ, ପୃ.୧୬୯
(୧୮) ଓଡ଼ିଆ ସାହିତ୍ୟର ଇତିହାସ—ମାନସିଂହ—ପୃ. (ଛ)

ଓ ଦେଶ ଅପେକ୍ଷା ବ୍ୟକ୍ତି ଓ ମାନବ ବଡ଼ । ସେଥିପାଇଁ କମଳ ତା'ର ରାଜନୈତିକ ଦଳ ଛାଡ଼ି ବରଂ ମାନବ ଜାତିର ସେବାରେ ବାହାରିପଡ଼ିଛି । କୌଣସି ସ୍ଲୋଗାନ ମଣିଷର କଲ୍ୟାଣ ଆଣିପାରିବ ନାହିଁ । ଯେପରି ଆଣିବ ମଣିଷର ଚାରିତ୍ରିକ ଶୁଦ୍ଧତା, ନିଃସ୍ୱାର୍ଥପରତା, ସତ୍ୟପ୍ରତି ବିଶୁଦ୍ଧ ଅନୁରାଗ । କବି ଓ ସାହିତ୍ୟିକ ଗୋଷ୍ଠୀ ଭାବରେ ଓ ବ୍ୟକ୍ତିଗତ ଜୀବନରେ ନିଃସ୍ୱାର୍ଥ ବିଶୁଦ୍ଧତା ପ୍ରଚାର କରିବା ଏକାନ୍ତ କର୍ତ୍ତବ୍ୟ ।'' (୧୯) ଅତି ସାଧାରଣ ବିଷୟବସ୍ତୁ ଉପରେ ଆଧାରିତ ଏହି 'କମଳାୟନ' କାବ୍ୟଟି ଦେଶପ୍ରେମର ମଧ୍ୟ ଦେଇ କମଳ ଓ କରୁଣାର ପରସ୍ପର ସଖ୍ୟ, ବନ୍ଧୁତ୍ୱ ଏବଂ ପ୍ରେମ ସମ୍ପର୍କରେ ଉତ୍ତୀର୍ଣ୍ଣ ହୋଇପାରିଛି । ବାଧାବିଘ୍ନର ଜୀବନ ସଂଗ୍ରାମ ମଧ୍ୟରେ ତାହା ଅଧିକ ଔଜ୍ଜ୍ୱଲ୍ୟମୟ ହୋଇଉଠିଛି । ପୁନଶ୍ଚ ଗୋପବନ୍ଧୁ ଏବଂ ଉତ୍କଳର ଇତ୍ୟାଦିଙ୍କର ପ୍ରାଣସ୍ପର୍ଶୀ ବର୍ଣ୍ଣନା ଅଧିକ ମର୍ମସ୍ପର୍ଶୀ ହୋଇପାରିଛି । ''ତଣ୍ଡୁଳ ବର୍ଣ୍ଣନା କଥା ଉତ୍କଳର ଗ୍ରାମରେ/ଲାଗିଲା ସହସ୍ର ସେହି ବୁଭୁକ୍ଷୁ ପ୍ରାଣରେ/ଲାଗେ ଯେସନ୍ତେ ବନ୍ଧ କର୍ଣ୍ଣେ ମୁକ୍ତିର ଖବର / ଅନ୍ଧକାର ପଥେ ଆବିର୍ଭାବ ଆଲୋକର ।'' (୨୦) କମ୍ପା ଲବଣ ସତ୍ୟାଗ୍ରହୀ ଭାବରେ କମଳର ଆତ୍ମସମୀକ୍ଷା ଅଧିକ ହୃଦ୍ୟ ।

''କମଳ ଦେଖଇ ସବୁ ଭାବଇ ଅନ୍ତରେ
ଯେ ଦୀକ୍ଷା ନେଇଛି ସେହି ନବୀନ ମନ୍ତ୍ରରେ
ଯେ ମନ୍ତ୍ର କରିଛି ମୁଗ୍‌ଧ ଅସ୍ପୃଶ୍ୟ ଅସ୍ପୃଶ୍ୟ
ଯେ ଅସ୍ପୃଶ୍ୟେ ଲେଖୁଛନ୍ତି କାହାଣୀ ଅଦ୍ଭୁତ ।'' (୨୧)

ଆବେଗର ପରିଣତି ଏହି କାବ୍ୟରେ ବେଳେ ବେଳେ ଅତିରଞ୍ଜିତ ହେବା ବ୍ୟତୀତ ଅନ୍ୟ କୌଣସି ତ୍ରୁଟି ଆଖିରେ ପଡ଼େ ନାହିଁ । ''କମଳାୟନ' କାବ୍ୟରେ ସ୍ଥାନେ ସ୍ଥାନେ ପ୍ରଣୟର ଯେଉଁ ପ୍ରାଣପୂର୍ଣ୍ଣ ଅନୁଭୂତି ବର୍ଣ୍ଣିତ ହୋଇଛି ତାହା ମାନସିଂହଙ୍କ ପୂର୍ବ କାବ୍ୟଚେତନାର ଝଲକ ରୂପେ ଅବଧାରିତ ହୋଇ-ପାରେ ।'' (୨୨)

**ଉପେକ୍ଷିତା (୧୯୨୮)—**

ଏହି ଉପେକ୍ଷିତା କାବ୍ୟ କ୍ରମାଗତ ଭାବରେ ଅଗଷ୍ଟ, ସେପ୍‌ଟେମ୍ବର, ଅକ୍ଟୋବର (୧୯୨୮) ସହକାରରେ ପ୍ରକାଶିତ ହୋଇଥିଲା । ମାନସିଂହଙ୍କ କାବ୍ୟ-

---

(୧୯) 'ମୁଁ କାହିଁକି ଲେଖେ'—ମାନସିଂହ—ମାନସିଂହ ସୃଷ୍ଟି ସମୀକ୍ଷା—ପୃ. ୭
(୨୦) କମଳାୟନ—ମାନସିଂହ ଗ୍ରନ୍ଥାବଳୀ (୨ୟ ଭାଗ) ପୃ. ୧୭୧
(୨୧) କମଳାୟନ—ମାନସିଂହ ଗ୍ରନ୍ଥାବଳୀ, ପୃ. ୨୪୭
(୨୨) 'ସବୁଜରୁ ସାମ୍ପ୍ରତିକ'—ଡକ୍ଟର ନିତ୍ୟାନନ୍ଦ ଶତପଥୀ, ପୃ. ୨୪୦

ସୃଷ୍ଟିରେ ପୁରାଣଠାରୁ ଆରମ୍ଭ କରି ପଲ୍ଲୀର ନଗଣ୍ୟ ମଣିଷ ପର୍ଯ୍ୟନ୍ତ ସମସ୍ତେ ସ୍ଥାନ ଲାଭ କରିଛନ୍ତି । 'ଉପେକ୍ଷିତା' କାବ୍ୟରେ ସେ ପୁରାଣର ଏକ ଚରିତ୍ର ରାଜକୁମାରୀ ସୂର୍ପଣଖାକୁ ଚିତ୍ରିତ କରିଛନ୍ତି । ତା ପ୍ରତି କବି ପ୍ରାଣର ସମସ୍ତ ସମ୍ବେଦନା ଉଚ୍ଛ୍ୱସିତ ହୋଇଉଠିଛି । ସେ ରବୀନ୍ଦ୍ରନାଥଙ୍କ 'କାବ୍ୟେ ଉପେକ୍ଷିତା'ର ଭାବଧାରା ଦ୍ୱାରା ଅନୁପ୍ରାଣିତ ହୋଇଥିବାର ଜଣାଯାଏ । (୧୩) ରାମାୟଣରେ ଯେଉଁ ସୂର୍ପଣଖାକୁ କଦାକାର, କୁତ୍ସିତ କରି ଚିତ୍ରଣ କରାଯାଇଛି, ମାନସିଂ ସେହି ସୂର୍ପଣଖାକୁ ସୁନ୍ଦରୀ ନାରୀ ଭାବରେ ପରିକଳ୍ପନା କରିଛନ୍ତି । ପୁନଶ୍ଚ ରବୀନ୍ଦ୍ରନାଥଙ୍କ 'ବିଦାୟ ଅଭିଶାପ'ର ରୋମାଣ୍ଟିକ ଭାବଧାରା ଦ୍ୱାରା ଅନୁପ୍ରାଣିତ ହୋଇଛନ୍ତି । ସୂର୍ପଣଖା ରାମଚନ୍ଦ୍ରଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତା ହୋଇଛନ୍ତି । ଠିକ୍ ସେହିପରି 'ଦେବଯାନୀ' କଚଙ୍କ ଦ୍ୱାରା ଉପେକ୍ଷିତା ହୋଇଛନ୍ତି । ଦୁଇଜଣଙ୍କ ପ୍ରେମର ପରିଣତି ଅତି କରୁଣ । ମୃତ୍ୟୁସଞ୍ଜିବନୀ ମନ୍ତ୍ର ଶିକ୍ଷା ସମାପ୍ତ ପରେ 'କଚ' ସ୍ୱର୍ଗକୁ ଫେରିବା ନିମନ୍ତେ ବାଧ୍ୟ । ଦେବଯାନୀ ଓ ତାହାର ଆଶ୍ରମ ପରିବେଶ ପ୍ରତି ସେ ଅନୁରକ୍ତ । 'କଚ'ର ସହଜ ସରଳ ଅଥଚ ଆତ୍ମପ୍ରତ୍ୟୟଶୀଳ ଚରିତ୍ରର ଆଶ୍ରୟରେ ଦେବଯାନୀର ମାନବିକ ଶଙ୍କା, ଲଜ୍ୟା, ରାଗ ଭୟ, କାମନା ବାସନା, କମ୍ପିତ ପ୍ରେମ-ହୃଦୟର ବିକାଶ । ସାଧାରଣ ମାନବିକ ପ୍ରେମ ବାସନାର ଦୀପ୍ତିରେ ଦେବଯାନୀର ଦୀପ୍ତି । ବନଭୂମି, ବଟତଳ, ସ୍ରୋତସ୍ୱିନୀ ଏବଂ ବେଣୁମତୀ ପ୍ରଭୃତିର ଆବେଷ୍ଟନୀ କାଳିଦାସଙ୍କ ଶକୁନ୍ତଳା କଥା ସ୍ମରଣ କରାଏ । ମାନସିଂହଙ୍କର 'ଉପେକ୍ଷିତା' କାବ୍ୟରେ ରାମଚନ୍ଦ୍ରଙ୍କର ସୂର୍ପଣଖା ପ୍ରତି ବିତରାଗର ସୂଚନା ମିଳିଛି । ସୂର୍ପଣଖାର ପ୍ରେମ ନିବେଦନକୁ ସେ ଅତି କଠୋର ଭାବରେ ପ୍ରତ୍ୟାଖ୍ୟାନ କରିଛନ୍ତି । (୧୪)

---

(୧୩) "ଭାଲୋବାସି କି ନା ଆଜ ସେ ତର୍କେ କି ଫଲ୍
ଆମାର୍ ଯା ଆଛେ କାଜ୍ ସେ ଆମି ସାଧିବ
× × ×
ଆର୍ ଯାହା ଆଛେ ତାହା ପ୍ରକାଶେର ନୟ
ସଖୀ, ବହେ ଯାହା ମର୍ମମାଝେ ରକ୍ତମୟ
ବାହିରେ ତା କେମନେ ଦେଖାବ ।"
ବିଦାୟ ଅଭିଶାପ—ରବୀନ୍ଦ୍ରନାଥ ଠାକୁର (ସଞ୍ଚୟିତା), ପୃ. ୨୦୮

(୧୪) "ମୋ ପରିଣ ଜାଣିରଖ ଅନ୍ୟ ଯୁବତୀର
ସ୍ୱର୍ଣ୍ଣାଞ୍ଚଳେ ଚିରବନ୍ଦୀ, ଶୁଣିଲ ମୁଁ ଏବେ
ପିତା ମୋର ବାଲ୍ୟକାଳେ ଦେଇଛନ୍ତି କରି

ମାନସିଂହଙ୍କ 'ଉପେକ୍ଷିତା' କାବ୍ୟରେ ତାଙ୍କର 'ଧୂପ' କମ୍ପା ହେମଶସ୍ୟ ପରି ଆବେଗ ଉଚ୍ଛ୍ୱାସର ଭଙ୍ଗୀ ପଡ଼ିଯାଇଛି । ଅନେକାଂଶରେ ଏହା ସଂଯତ ଏବଂ ସଂହତ । ସମ୍ଭବତଃ ରାମଚନ୍ଦ୍ରଙ୍କ ସଂଯତ ଚରିତ୍ର ସମଗ୍ର କାବ୍ୟକୁ ନିୟନ୍ତ୍ରିତ କରୁଛି ।

**ଶୁଭଦୃଷ୍ଟି** (୧୯୩୦)—

ଏଥିରେ ନାଗେନ୍ଦ୍ର ଜେମା ଉଲୁପୀ ଓ ଅର୍ଜ୍ଜୁନଙ୍କ ପ୍ରଣୟ କାହାଣୀ ବର୍ଣ୍ଣିତ ହୋଇଛି । (୨୫) ଏହି କାବ୍ୟରେ କବି ମାନସିଂହଙ୍କର ପ୍ରେମ ଓ ପ୍ରଣୟର ଉଚ୍ଛ୍ୱସିତ ଚେତନା ପୁରାଣକୁ ଅବଲମ୍ବନ କରି ମଧ୍ୟ ଲୌକିକ ସତ୍ତା ହରାଇ ନାହିଁ । ତେଣୁ ଅର୍ଜ୍ଜୁନଙ୍କ ଦୀର୍ଘ ବିଚ୍ଛେଦରେ ସୂର୍ପଣଖା ପରି ଉଲୁପୀ ତା'ର ମର୍ମବେଦନା ସଖୀମାନଙ୍କ ସମକ୍ଷରେ ପ୍ରକାଶ କରିଛି ।

"ଅସୀମ ବେଦନାନଳେ ଦଗ୍ଧ ଏ ପରାଣ
ଧୂପସମ ଜାଳିଦେବି ଏ ଜୀବନ ମମ
ମୋ ପ୍ରିୟ ଗୌରବ ଲାଗି ପ୍ରେମ ସେ କି ନୁହେଁ
ପ୍ରେମ କି କେବଳ ଭୋଗେ ଅଙ୍ଗେ ଅଙ୍ଗ ମେଳେ
ଅଧରୁ ଅଧର ପାନେ ଶରୀର ଆଘ୍ରାଣେ ।"

(ଶୁଭଦୃଷ୍ଟି—ପୃ. ୫୫)

ରୂପ ଓ ଅରୂପ, ଇନ୍ଦ୍ରିୟ ଓ ଅତୀନ୍ଦ୍ରିୟର ସୀମା ମଧ୍ୟରେ ଶିଳ୍ପସଙ୍ଗତ ସାମଞ୍ଜସ୍ୟ ରକ୍ଷା କରି ପ୍ରେମ ପ୍ରତି ସ୍ୱୀୟ ଦୃଷ୍ଟିଭଙ୍ଗୀ କବି ମାନସିଂହ ପ୍ରକାଶ କରିଛନ୍ତି; ତାହା ତାଙ୍କ ସମସାମୟିକ ଅନ୍ୟାନ୍ୟ କବିଙ୍କ ଶିଳ୍ପ ସୃଷ୍ଟିରେ ଏତେ ସୁଲଭ ନୁହେଁ । ଦେହ ଓ ଆତ୍ମାର ଏଇ ପ୍ରେମ ମାନସିଂହ ମନକୁ ଅଧିକାର କରିଅଛି ଏବଂ ବାରମ୍ବାର ନାନା ସ୍ଥାନରେ, ନାନା ଭାବରେ ବିଚିତ୍ର ରୂପ ରସରେ ଉଦ୍ଭାସିତ କରିଛନ୍ତି ।

**କମଳା—**

ଏହି କାବ୍ୟର ପ୍ରେମ ଚେତନା ରାଜକନ୍ୟା ଓ ଦରିଦ୍ର କବିର ପ୍ରଣୟକୁ ନେଇ ସଂଗଠିତ । ଦେହଠାରୁ ଆତ୍ମା ଏବଂ ରାଜାସନଠାରୁ ଗୁଣୀର ସମ୍ମାନ

---

ଆରେକ ବାଳିକା ସହ ପରିଣୀତ ମୋତେ ।" (ଉପେକ୍ଷିତା)
ମାନସିଂହ ଗ୍ରନ୍ଥାବଳୀ—ପୃ. ୧୫

(୨୫) ଶୁଭଦୃଷ୍ଟି—'ସହକାର' ୧୧/୮, ୯, ସଂଖ୍ୟା, ମାର୍ଗଶୀର, ପୌଷ ୧୩୩୮
(ନଭେମ୍ବର, ଡିସେମ୍ବର ୧୯୩୦)

ଯୁଗେ ଯୁଗେ ଊର୍ଦ୍ଧ୍ୱରେ । ଯେଉଁ ପ୍ରେମ ଦେହ ସର୍ବସ୍ୱ କିମ୍ବା ଯେଉଁ ପ୍ରେମ ଉଚ୍ଚ ନୀଚ ତାରତମ୍ୟ ସୃଷ୍ଟି କରେ ; ସେ ପ୍ରେମ ମିଥ୍ୟା—ଏହା ମାନସିଂ କିଙ୍କିଣି କାବ୍ୟରେ ପ୍ରତିପାଦିତ କରିଛନ୍ତି । ଗୋଟାଏ ମନ ଓ ହୃଦୟ ଦେହକୁ ଅତିକ୍ରମ କରି ଆଉ ଗୋଟିଏ ମନ ଓ ହୃଦୟକୁ ପାଇବାକୁ ଚାହେଁ । ସ୍ପର୍ଶ କରିବାକୁ ଚାହେଁ ଏବଂ ତାହା ଯେତେବେଳେ ପାରେ ସେତେବେଳେ ପ୍ରେମାସ୍ପଦକୁ ଅନୁଭବ କରିହୁଏ, ପାଇହୁଏ ଏବଂ ଭୋଗ କରିହୁଏ । ରାଜଉଆସର ବିଳାସ ବ୍ୟସନର ଗର୍ବ ଟଳିପଡ଼ିଛି । ସୁଗୁଣ ଏବଂ ମାନବିକତାର ଜୟ ହୋଇଛି । (୨୭) କବି ଏହି କାବ୍ୟରେ ତାଙ୍କର ଦୂରଦର୍ଶିତାର ପରିଚୟ ଦେଇଛନ୍ତି । ମଣିଷର ଗୁଣ ଓ ମାନବିକତା ନିକଟରେ ବଂଶର ଆଭିଜାତ୍ୟ, ରାଜପ୍ରାସାଦର ମୋହ ଅତି ତୁଚ୍ଛ ।

ମାନସିଂହ କାବ୍ୟ କ୍ଷେତ୍ରରେ ଯେପରି ପ୍ରତିଭାର ସ୍ୱାକ୍ଷର ଅଙ୍କନ କରି ଯାଇଛନ୍ତି, କବିତାର ସୀମିତ କଳେବର ମଧ୍ୟରେ ମଧ୍ୟ ତାଙ୍କର ସୌନ୍ଦର୍ଯ୍ୟବୋଧ, ସତ୍ୟ ଓ ମାନବିକତାବୋଧ, ଐଶୀ ଚେତନା ଓ ସାର୍ବଭୌମ ପରିକଳ୍ପନାର ପରାକାଷ୍ଠା ପ୍ରତିପାଦନ କରି ଯାଇଛନ୍ତି । "ଅଳ୍ପ କଥାରେ କହିଲେ, ଏହି ପ୍ରତିଭା ଭାରତୀୟ ସାହିତ୍ୟ ଓ ସଂସ୍କୃତିର ପରମ୍ପରା ଦୃଷ୍ଟିରୁ ସର୍ବଦା ସତ୍ୟ ଶିବ ଓ ସୁନ୍ଦରର ପୂଜାରୀ ଏବଂ ସତ୍ୟ ହିଁ ତାଙ୍କ ସମସ୍ତ ସୃଷ୍ଟି ମଧ୍ୟରେ ଏକ ସକ୍ରିୟ ଭୂମିକା ରୂପେ ତାଙ୍କର ସମ୍ବେଦନଶୀଳ ଆତ୍ମା ଓ ସହଜ ବୌଦ୍ଧିକ ଚିନ୍ତାର ବାହକ ହୋଇ ଆସିଛି । ଭୌଗୋଳିକ ପରିବେଶ ବା ସମସାମୟିକ ରାଜନୀତିକ ସ୍ଲୋଗାନ ମୁକ୍ତ ତାଙ୍କର ସୃଷ୍ଟ ଜୀବନ ସର୍ବଦା ହୋଇଆସିଛି ମାନବାତ୍ମାର ମୁକ୍ତି ସନ୍ଧାନୀ । (୨୭) ମାନସିଂହଙ୍କ କବିତା ଗ୍ରନ୍ଥ ମଧ୍ୟରେ—୧ । ସେଦିନର କବିତା, ୨ । ଧୂପ, ୩ । ହେମପୁଷ୍ପ, ୪ । ହେମଶସ୍ୟ, ୫ । କୋଣାର୍କ, ୬ । ବାପୁତର୍ପଣ, ୭ । ଅକ୍ଷତ, ୮ । ମାଟିବାଣୀ, ୯ । ଜୀବନଚିତା, ୧୦ । କୃଷି, ୧୧ । ସିନ୍ଧୁ ଓ ବିନ୍ଦୁ, ୧୨ । ସ୍ୱରାଜ୍ୟାଶ୍ରମ, ୧୩ । କିଶୋର କବିତା, ୧୪ । ଗୀତରେଣୁ ।

---

(୨୬) "ଆଜଠାରୁ ଭାଙ୍ଗିଦିଅ ରାଜଜେମା କବିର ପ୍ରଭେଦ
ପ୍ରଣୟ ହିଁ ହେବ ଆମ ଏକୀଭୂତ ଜୀବନର ବେଦ ।"

ମାନସିଂହ ଗ୍ରନ୍ଥାବଳୀ (କିଙ୍କିଣି)—ପୃ. ୩୧

(୨୭) ଓଡ଼ିଆ ସାହିତ୍ୟର ଇତିହାସ—ଉତ୍କଳ ମାୟାଧର ମାନସିଂହ —ପୃଷ୍ଠା ପରିଶିଷ୍ଟ—୧, ଅଧ୍ୟାପକ ଚିନ୍ତାମଣି ବେହେରାଙ୍କ ଲିଖିତ ପ୍ରବନ୍ଧ

## 'ସେଦନର କବତା' ଓ ବାସ୍ତବବାଦୀ ଚେତନା—

ଏହି କାବ୍ୟଗ୍ରନ୍ଥର ମୁଖବନ୍ଧରେ କବ ନଜେ ସ୍ୱୀକାର କରଛନ୍ତ, "କଟକ ରେଭେନ୍‌ସା କଲେଜରେ ଛାତ୍ର ଜୀବନର ସେହ ସୁଖ ଆଦର୍ଶ କଳ୍ପନାମୟ ପ୍ରଥମ, ଦ୍ୱିତୀୟ, ତୃତୀୟବର୍ଷ ସେହି ନବଢ଼ ନଖୁଣ ଆଦ୍ୟ ଯୌବନର ଲେଖା"— ତେଣୁ ୧୯୨୩ ଠାରୁ ୧୯୨୫ ମଧ୍ୟରେ ଏହି କବତା ଗୁଡ଼କର ଜନ୍ମ ବୋଲ ଜଣାଯାଇଥାଏ । ଏହି କବତାଗୁଡ଼କ ବଭିନ୍ନ ସ୍ୱରରେ ଅନୁରଣିତ । କେଉଁଠାରେ ଚଲ୍ଲା ଲଘୁପକ୍ଷ ପ୍ରଜାପତ ପର ଉନ୍ମନ ତ କେଉଁଠାରେ ସାମାଜକ ନୀତ ନୟମ ଶୃଙ୍ଖଳାରେ ଶୃଙ୍ଖଳତ ଏବଂ ଆଉ କେଉଁଠାରେ ଜାତୀୟ ଚେତନାର ଗୌରବରେ ଉଦ୍ଦୀପ୍ତ । ଆମ ସମାଜର ଅଧଃପତତ ଏବଂ ଅବହେଳତ ଶ୍ରେଣୀ ପ୍ରତ କବ ଅଧିକ ସଚେତନ ହୋଇଥିବାର ଆମେ ଲକ୍ଷ୍ୟ କରୁଁ । ରକ୍‌ସାବାଲା, ମଜଦୁର୍, କୃଷକ, ବଢ଼େଇ, କମ୍ବାରଣୀ, ସ୍କୁଲମାଷ୍ଟର, କଳାସେବକ ପ୍ରଭୃତଙ୍କ ପ୍ରତ କବ-ଲେଖନୀ ଅଧିକ ସମ୍ବେଦନଶୀଳ ହୋଇଉଠିଛି । (୨୮)

'ସେଦନର କବତା' ଗ୍ରନ୍ଥର ମୁଖବନ୍ଧରେ ଆମେ ସାଧାରଣତଃ ଦେଖିବାକୁ ପାଉଁ କବ ଯେତେବେଳେ ରେଭେନ୍‌ସା କଲେଜରେ ଛାତ୍ର ଥିଲେ ସେହ ସମୟରେ ଏଗୁଡ଼କର ସୃଷ୍ଟି । ହୁଏତ ସେତେବେଳେ କବ ଭଗବତୀ ଚରଣ ପାଣିଗ୍ରାହୀଙ୍କ ସଂସ୍ପର୍ଶରେ ଆସି ସାମ୍ୟବାଦୀ ଚେତନା ପ୍ରତ ଅଧିକ ଶ୍ରଦ୍ଧାଶୀଳ ହୋଇପଡ଼ଛନ୍ତ । ଏହି କାବ୍ୟ ଚେତନା ପରବର୍ତ୍ତୀ ଗ୍ରନ୍ଥମାନଙ୍କରେ ଆଉ ଶୁଣିବାକୁ ମିଳନାହିଁ । ଏହାର ଉନ୍ମେଷ ଯେପର ଆକସ୍ମିକ ବଲୟ ମଧ୍ୟ ସେହପର ଅପ୍ରତ୍ୟାଶିତ । ଏହି

---

(୨୮) "ନରର ଦୁଃଖ ବୁଝେନା ନର
ବୁଝିବ କଏ ଆଉ,
ବାବୁଏ କଣ ଜାଣିବେ କେବେ
ଭୋକଲ ପେଟ ଦାଉ ।" (ରକ୍‌ସାବାଲା—ପୃ. ୫୭)

× × ×

"ଚଟକଲେ ମୁଁ ଓଡ଼ିଆ କୁଲ କଳର ଏକ ଚକ,
ଖଟି ଖଟିକା ସାରାଟି ଦନ ଉଡ଼ଯାଏ ମୋ ଧକ ।" (ମଜଦୁର—ପୃ. ୫୭)

× × ×

"ଜଣେ ଲୋକର ଏତେ ଯେ ଧନ ଶୂନ୍ୟ କୋଟି ଲୋକ,
ଜଣେ ଲୋକର ଭୋଜି ବଳାସ ଆଉ ସବୁର ଭୋକ ।" (ମଜଦୁର)
ମାନସିଂହ ଗ୍ରନ୍ଥାବଳୀ—ପୃ. ୫୮

'ଚିଲିଆ ଜୀବର ବିଳାପ' ଅନ୍ୟ କୌଣସି କାବ୍ୟକୃତିରେ ଆଉ ଶୁଣାଯାଇ ନାହିଁ । (୨୯) ବରଂ ମାନସିଂହଙ୍କ ପରବର୍ତ୍ତୀ କାବ୍ୟକୃତିରେ ରୋମାଣ୍ଟିକ ଭାବଧାରା ସହିତ ଅତିଭୌତିକ ଚିନ୍ତାଧାରାର ମଧୁର ସମନ୍ୱୟ ପରିଦୃଷ୍ଟ ହୋଇଥାଏ । 'ସେଦିନର କବିତା' ଅନ୍ତର୍ଗତ ଅଧିକାଂଶ କବିତାରେ, ଯଥା— 'ନବବଧୂର ବିରହ' (୧୯୩୨-୩୩), 'ରତି' (୧୯୨୮), 'ଅର୍ଜୁନ ଓ ଉର୍ବଶୀ', 'ଉନ୍ମନ', 'ଉଅରଳ ଯୌବନ', 'ସୌନ୍ଦର୍ଯ୍ୟ ଓ ସଂସାର' ପ୍ରଭୃତି କବିତାରେ କବିଙ୍କର ରୋମାଣ୍ଟିକ ଦୃଷ୍ଟିଭଙ୍ଗୀ ଅଧିକ ବ୍ୟାପକତା ଲାଭ କରିଛି । 'ଭାରତଗୀତି' (୧୯୩୦-୩୧), 'ମା ଓଡ଼ିଶା (୧୯ ୫), 'ତୀର୍ଥଧୂଳି', 'ଭୁଲିଯାଅ ଇତିହାସ' ଇତ୍ୟାଦିରୁ କବିଙ୍କର ଜାତୀୟ ଚେତନାର ମୂର୍ତ୍ତି ପ୍ରକାଶ ସହଜରେ ଅନୁମାନ କରାଯାଇପାରେ ।(୩୦)

## 'ଧୂପ'ରେ ପ୍ରୀତିଧୂପର ସୌରଭ (୧୯୩୧)—

'ଧୂପ' ପୁସ୍ତକର ପ୍ରକାଶକାଳ ୧୯୩୧ ସାଲ । ଉତ୍କଳ ସାହିତ୍ୟ ପ୍ରେସ୍ କଟକ-ସହକାର ୧୨/୨ ଜ୍ୟେଷ୍ଠ ୧୯୩୮ (ମେ, ୧୯୩୧) ସଂଖ୍ୟାରେ ସ୍ଥାନ ପାଇଥିବା ଗୋଟିଏ ସ୍ୱତନ୍ତ୍ର ଗ୍ଲେଟିଆ କାଗଜରେ ନିମ୍ନଲିଖିତ ବିଜ୍ଞାପନ ଦିଆଯାଇଛି ।

ମାୟାଧର ମାନସିଂହଙ୍କ
ପ୍ରଥମ କବିତା ଗ୍ରନ୍ଥ ଧୂପ
ଶୀଘ୍ର ପ୍ରକାଶିତ ହେବ
ପ୍ରାଣସ୍ପର୍ଶୀ ପ୍ରେମ କବିତାର ସଂଗ୍ରହ

---

(୨୯) 'ଚିଲିଆ ଜୀବର ବିଳାପ'—ମାନସିଂହଙ୍କ ସୂଚନା ଅନୁଯାୟୀ ଏ କବିତା-ଗୁଡ଼ିକ ୧୯୩୪-୩୫ ମଧ୍ୟରେ ରଚିତ (ସେଦିନର କବିତା—ଗ୍ରନ୍ଥାବଳୀ ପୃ. ୫୭) କିନ୍ତୁ ଏହା ଧାରାବାହିକ ଭାବେ ସହକାର ୨୩/୬, ୭, ୮, ୯ ସଂଖ୍ୟାରେ ପ୍ରକାଶିତ । ନଭେମ୍ବର ୧୯୪୨ ଠାରୁ ଜାନୁଆରୀ ୧୯୪୩—କଥନ ଛନ୍ଦର ପରୀକ୍ଷା ଏଇ କବିତାରେ ପ୍ରଥମ ଥର ପାଇଁ କରା-ହୋଇଥିଲା ।

(୩୦) 'ଭାରତ ଗୀତି' ଲେଖାକାଳ ସମ୍ଭବତଃ ୧୯୩୦-୩୧ । ତତ୍କାଳୀନ ଜାତୀୟ ଲବଣ ସଂଗ୍ରାମକୁ ଲକ୍ଷ୍ୟକରି ଲେଖାଯାଇଥିଲା । ଏ କବିତାଟି ପରେ ଛଦ୍ମ ନାମରେ (ଦୂର ଅତିଥି) ୧୯୩୩-୩୪ ସାଲର ସମାଜର କୌଣସି ସଂଖ୍ୟାରେ ପ୍ରକାଶ ପାଇଥିଲା । ଲେଖକ ସେତେବେଳେ ନିମାପଡ଼ା ହାଇସ୍କୁଲରେ ଶିକ୍ଷକ । (ମାନସିଂହ ଗ୍ରନ୍ଥାବଳୀ—ପୃ. ୨୯)

ପ୍ରାୟ ସମସ୍ତ କବିତା ଅପ୍ରକାଶିତ ଥିଲି । ଆଗାମୀ ପୂର୍ଣ୍ଣିମାକୁ ଅପେକ୍ଷା କରନ୍ତୁ । ସୁନ୍ଦର ଛାପା, ଶସ୍ତାଦାମ୍ ଉପହାରର ଶ୍ରେଷ୍ଠ ସାମଗ୍ରୀ ସହକାର ୧୨/୩ ଆଷାଢ଼ ୧୯୬୮ (ଜୁନ୍ ୧୯୩୧)ରେ ପତ୍ରିକାର ସମ୍ପାଦକ ଧୂପ ଉପରେ କହୁଛନ୍ତି, ଲେଖକ ଶ୍ରୀମାନ୍ ମାୟାଧର ମାନସିଂହ । ୩୨ଟି ପ୍ରେମ କବିତା ପୁସ୍ତକଟିର କଳେବର, କବିତାଗୁଡ଼ିକ ଗୀତିଛନ୍ଦରେ ଲିଖିତ ଇତ୍ୟାଦି । ଧୂପର ଦୁଇଟି ସଂସ୍କରଣରେ ୩୨ଟି ଲେଖାଏଁ କବିତା ଅଛି ।

"ଫୁଲଟା ଶୁଖି ଝଡ଼ିଯାଏ; କିନ୍ତୁ ତା ସମ୍ବନ୍ଧରେ ବଡ଼କଥା ଶୁଖି ଝଡ଼ିପଡ଼ିବାଟା; ନା ସେ ଦିନେ ଫୁଟି ଧରଣୀକି ଗନ୍ଧ ଓ ରୂପରେ ମୁହୂର୍ତ୍ତିକ ଲାଗି ହସେଇ ଦେଉଥିବାଟା । ମନୁଷ୍ୟ ଜୀବନରେ ରୂପ ଓ ଯୌବନ କ୍ଷଣସ୍ଥାୟୀ; ଏଥିରେ ଦ୍ୱିମତ ନାହିଁ । କିନ୍ତୁ ଦିନେ ଶୁକ୍ଳକେଶ ସ୍ଥବିର ବୃଦ୍ଧ ହେବ ବୋଲି; ଆଜିର ଯୁବକ ଓ ଯୁବତୀଙ୍କୁ ତାଙ୍କର ପ୍ରାଣ ପ୍ରାଚୁର୍ଯ୍ୟ ଉପଭୋଗ କରିବାକୁ ତାଙ୍କୁ ନିରୋଧ କରିବାରେ କି ଯୁକ୍ତି ଅଛି ? × × × କାବ୍ୟ ଯୋଗ୍ୟ ଅନୁଭୂତି ଲେଖକର ଜୀବନରେ ଘଟିଥିଲେ ହେଁ ଇଂରେଜ କବିମାନଙ୍କ ସହିତ ପରିଚୟ ଘଟି ନ ଥିଲେ ସେ ଅନୁଭୂତି ଏପ୍ରକାର ଆତ୍ମପ୍ରକାଶ କରିନଥାନ୍ତା । ଆମ ସାହିତ୍ୟରେ ପ୍ରେମ କବିତାର ଅରଣ୍ୟ ରହିଛି; କିନ୍ତୁ ସେଥିରେ ବିଚିତ୍ରତା ନାହିଁ । ସେ ଜଙ୍ଗଲ ଯେପରି ଗୋଟିଏ ଗଛର ଜଙ୍ଗଲ, କିନ୍ତୁ ଇଂରେଜ ସାହିତ୍ୟ ପ୍ରତ୍ୟେକ କବିର ବ୍ୟକ୍ତିଗତ ବିଭିନ୍ନ ଅଭିଜ୍ଞତାରେ ଶବଳିତ ।"(୩୧) ମାନସିଂହ ଇଂରାଜୀ ସାହିତ୍ୟର ଛାତ୍ର ଥିବାରୁ ସେ କୀଟ୍‌ସ, ବାଇରନ୍, ଓ୍ୱାର୍ଡ଼ସଓ୍ୱାର୍ଥ ପ୍ରଭୃତିଙ୍କ ଆଦର୍ଶକୁ ଅନୁକରଣ କରିବା ସ୍ୱାଭାବିକ । ଧୂପ କବିତା ଗ୍ରନ୍ଥର ୩୨ଟା କବିତା ମଧ୍ୟରୁ ସବୁଗୁଡ଼ିକ ଗୋଟାଏ ଧରଣର ନୁହେଁ । ସେଥିରୁ କେଉଁଟା ମାନବିକ ପ୍ରେମର ନିଛକ ହୋମଗନ୍ଧରେ ଭରପୂର ତ କେଉଁଟା ଅପାର୍ଥିବ ପ୍ରେମର ସ୍ୱର୍ଗୀୟ ମହକରେ ମହିମାନ୍ୱିତ । "ଏହି ଗ୍ରନ୍ଥ ନିହିତ କବିତାବଳୀ ମାନବିକ ପ୍ରଣୟର ସଫଳ ଓ ବାସ୍ତବ ପ୍ରୀତିର ଯେପରି ଗୀତିହାର; ସେହିପରି ତାହା ଅରୂପ ଓ ଅତୀନ୍ଦ୍ରିୟର ସଙ୍ଗୀ ସନ୍ଧାନୀ ଏକ ଦେହ ବ୍ୟର୍ଥ ପ୍ରଣୟର ପ୍ରଣ୍ଣବାଚୀ ।" (୩୨)

'ଧୂପ' କବିତା ଗ୍ରନ୍ଥର ଅନେକ କବିତା ପରକୀୟା ପ୍ରୀତି ରସରେ ରସାଣିତ । ତାଙ୍କ କବିତାର ପଂକ୍ତିମାନଙ୍କରୁ ସ୍ପଷ୍ଟ ହୁଏ ଯେ କୌଣସି ପରକୀୟା ବିବାହିତା ବଧୂପ୍ରତି ସେ ଆସକ୍ତ ଥିଲେ ।

---

(୩୧) ଧୂପର ମୁଖବନ୍ଧରେ ମାନସିଂହ—ମାନସିଂହ ଗ୍ରନ୍ଥାବଳୀ, ପୃ. ୭୦

(୩୨) ଓଡ଼ିଆ ସାହିତ୍ୟର ଇତିହାସ—ମାନସିଂହ, ପୃ. (ଗ)

"ହେ ସମବୟସୀ ତୁମର ମୋର ଯେ ପୀରତ
କଷ୍ଟୁର କେତେ ବୋଲୁଛନ୍ତି ପାପ ଭାରତ

× × ×

ନୟନୁ ଯାହାର ଲୋତକ ମୋ ପାଇଁ ବୋହିଲା
ମୋ ନୟନେ ସେତ ପରମ ପୂଜ୍ୟ ମହିଳା । (ପାପ ଓ ପ୍ରେମ)

ଦୂରବାସୀ ପ୍ରିୟ ଭରେ କେତେ ବ୍ୟଥା ତୁମ ପାଇଁ ବନ୍ଧନୀ
ଉପାୟ କି ଅଛି ନେଇଛି ତ ଆନ ଶରୀର ତୁମର କିଣି । (ବନ୍ଧନୀ ପ୍ରିୟା)

ବସନ୍ତେ ଆଜି ପ୍ରିୟା ମୋର କାହିଁ ପ୍ରିୟା
ବହୁଦୂରେ ସେ ତ ବନ୍ଧନୀ ପରକୀୟା । (ବସନ୍ତବରଷା)

ଏହି ପରକୀୟା ପ୍ରେମ ଧୂପ କବିତାର ମୂଳ ଉତ୍ସ ହେଲେ ବି କୌଣସି ଏକ ସ୍ବରୁକେଶୀ ବାଳିକାର ପ୍ରେମକୁ ମଧ୍ୟ କବି ଅସ୍ଵୀକାର କରିନାହାନ୍ତି । (ଟୀକା) 'ପ୍ରିୟ ପରମ'ରେ ଶ୍ରୀମତୀ ମାନସିଂହ ସ୍ପଷ୍ଟ ଭାବରେ ସ୍ୱୀକାର କରିଛନ୍ତି ଯେ ଧୂପର ଅଧିକାଂଶ କବିତା ବିଶେଷତଃ 'ଶଙ୍କିତ ସ୍ନେହ', 'ଦୂରେ ରହ', 'ପ୍ରେମର ଭାଷା' ଆଦି କେତୋଟି କବିତା ତାଙ୍କ ଉଦ୍ଦେଶ୍ୟରେ କବି ଲେଖିଥିଲେ । "ଏ କବିତାଗୁଡ଼ିକ ଏତେ ଭଲ ଲାଗିଲା ଯେ ମୁଁ ସମସ୍ତଙ୍କୁ ଲୁଚାଇ ତାକୁ ପଢ଼ିବାକୁ ଲାଗିଲି । 'ଶଙ୍କିତ ସ୍ନେହ', 'ଦୂରେ ରହ' 'ପ୍ରେମର ଭାଷା' ମୋ ହୃଦୟରେ ଆଲୋଡ଼ନ ସୃଷ୍ଟି କରୁଥାଏ । ବିଶେଷତଃ "ସ୍ବରୁକେଶୀ ସେହି ବାଳିକାର ପ୍ରେମପାଇଁ/ଏ ଜୀବନେ ମୋର ନ ଦେବାର କିଛି ନାହିଁ ।" ଆଦି ପଂକ୍ତିଗୁଡ଼ିକ ମୋତେ ବେଶ୍ ଉଦ୍‌ବୁଦ୍ଧ କରିଥିଲା । ଏ ଖାତାଟି ଦେବା ପୂର୍ବରୁ ମାନସିଂ

---

(ଟୀକା) "ସ୍ବରୁକେଶୀ ସେହି ବାଳିକାର ପ୍ରେମ ପାଇଁ
ଏ ଜୀବନେ ମୋର ନ ଦେବାର କିଛି ନାହିଁ ।
ମୋର ସୁଖ ଦେବି ତାର ସୁଖ ପାଇଁ ବଳି
ପଦ ଧୂଳି ତା'ର ଝାଡ଼ି ଦେବି କରେ ଧରି ।
('ଶଙ୍କିତ ସ୍ନେହ', 'ଧୂପ'—ଗ୍ରନ୍ଥାବଳୀ ୧୬୬)

"ତଥାପି ରୂପସୀ କିଶୋରୀ ତୁମର ଉଚ୍ଛଳ ଯୌବନେ
ଏକ ଗଣ୍ଡୁଷେ ପାନ କରିବାର ବାସନା ଜାଗଇ ମନେ ।
('ଦୂରେ ରହ'—ଗ୍ରନ୍ଥାବଳୀ ୧୬୫)

"ଲୋମେ ଲୋମେ ତବ ସୁଷମା ଜାଗଇ ଚେତନା ଉଠଇ ଥରି
ମଦ୍ୟ ଝରଇ ଅଧରରୁ ଅହରହ—ଦୂରେ ରହ ଦୂରେ ରହ ।"

*

ମୋତେ ପଚ୍ଚରି ମୋଠୁ ସମ୍ମତ ନେଇଥିଲେ ଯେ, ଗୋଟାଏ ବହି ମୋତେ ଉତ୍ସର୍ଗ କରିବେ । ଏହି ଖାତାଟି ପରେ 'ଧୂପ' ନାମରେ ପ୍ରକାଶ ପାଇଲା ଓ ପ୍ରଥମ ସଂସ୍କରଣର ଉତ୍ସର୍ଗରେ ଲେଖାଥିଲା "ହେମଲତା ଦେବୀ କାନ୍ତ କରେଷୁ"— ମୁଁ ପରେ ଯେତେବେଳେ ଧୂପ କବିତାର ମର୍ମ ବୁଝିପାରିଲି, ସେତେବେଳେ ଉତ୍ସର୍ଗଟି ଉଠାଇ ଦେବାକୁ କବିଙ୍କୁ ଅନୁରୋଧ କରିଥିଲି । ପରବର୍ତ୍ତୀ ସଂସ୍କରଣରେ ତାହା ଉଠାଇ ଦିଆଯାଇଥିଲା । ଏ କବିତାଗୁଡ଼ିକ ମୋ ମନରେ ଦାଗ କାଟିବାର କାରଣ ହେଲା; ଗ୍ରୀଷ୍ମାବକାଶ ଓ ଅନ୍ୟାନ୍ୟ ଅବକାଶମାନଙ୍କରେ କବି ମାନସିଂହ ଆମ ଘରେ କରଞ୍ଜିଆରେ ଛୁଟି କଟାଉଥିଲେ । ସେ ସମୟରେ ସେ ସର୍ବଦା ମୋର ଉପସ୍ଥିତି କାମନା କରୁଥିଲେ । (୬୪) ମାନସିଂହ ନିଜେ ସ୍ୱୀକାର କରିଛନ୍ତି "କୌଣସି ନିର୍ଦ୍ଦିଷ୍ଟ ନାରୀ ବା ପୁରୁଷ ଯେ ମୋର ସାହିତ୍ୟିକ ଜୀବନର ମୂଳ ଉତ୍ସ ଏକଥା ସ୍ୱୀକାର କରିବାର କୌଣସି କାରଣ ମୁଁ ଦେଖୁନାହିଁ । ଜୀବନ ପଥର ବହୁ ଅଭିଜ୍ଞତା ମଧ୍ୟରେ ସେମାନଙ୍କ ସହିତ ଦେଖାଦେଖି ଓ ଚହ୍ଲାଚହ୍ଲି । ସେହି ସ୍ଥାନ ଓ ସେହି କାଳରେ ସେହି ଅବସ୍ଥାରେ ଅନ୍ୟ କେହି ଆସିଥିଲେ ମଧ୍ୟ ହୁଏତ ସେହି ଆତ୍ମିକ ଆଲୋଡ଼ନ ଘଟିଥାନ୍ତା । ଗୋଲାପ ଓ ପଦ୍ମ ତୋଳିବାକୁ ଗଲେ ରୂପ ଓ ସୌରଭ ଭୋଗ ସଙ୍ଗେ ସଙ୍ଗେ କିଛି ପଙ୍କ ଲେପନ ଓ ଯେପରି ସହିବାର କଥା ମୋ ଭାଗ୍ୟରେ ତାହା ଘଟିଥିବାରୁ ଜଗତର ପ୍ରତ୍ୟେକ ଜିନିଷକୁ ଆଲୋକ ଅନ୍ଧକାରର ମିଶ୍ରଣ ବୋଲି ମୁଁ ଦେଖିବାକୁ ଶିଖିଛି । କବିର ମଧ୍ୟ ଜ୍ଞାନଦାନ୍ତ ଦିନେ ଉଠେ ।" (୬୫)

କବି ମାନସିଂହଙ୍କ ମତରେ ପ୍ରେମ ଜୀବନରେ ଥରେ ନୁହେଁ ବାରମ୍ବାର ଆସିପାରେ । ଏଥିରେ କୌଣସି ନୂତନତ୍ୱ ନାହିଁ । ଅଛି ସ୍ୱାଭାବିକ ଏକ ମାନବୀୟ ଅନୁଭୂତିର ଚେତନା ଓ ପ୍ରଣୟସୁଲଭ ଦୁର୍ବଳତା । "ପ୍ରେମ କି ଥରେ ଆସି ଥରକେ ହୁଏ ଶେଷ/ଜଣକୁ ଦେଲେ ସଁପି ନ ରହେ ଅବଶେଷ × × ଜୀବନପଥ ପରେ ଅନେକ ସାଥୀ ଡାକ/କାହାକୁ ଦୂରେ ଠେଲି ଯିବି ମୁଁ କାହା ପାଖ" '(ପ୍ରେମର ପରମାପ'—'ଧୂପ'—ଗ୍ରନ୍ଥାବଳୀ—ପୃଷ୍ଠା ୧୬୦) ମାନସିଂହଙ୍କ ଇନ୍ଦ୍ରିୟ ଲବ୍ଧ ପ୍ରେମ ଚିନ୍ତାର ଏକ ଚୂଡ଼ାନ୍ତ ଦୃଷ୍ଟିଭଙ୍ଗୀ ରୂପେ ଗ୍ରହଣ କରାଯାଇପାରେ । ଧୂପର ପ୍ରେମ କଳ୍ପନା ଯେପରି ଉଦ୍ଦାମ ଓ ଉଚ୍ଛଳ, ହେମଶସ୍ୟରେ ସେହିପରି ଶାନ୍ତ ଓ ସଂଯତ । ବେଳେବେଳେ 'ଧୂପ' କବିତା ଗ୍ରନ୍ଥରେ ତାଙ୍କ କାବ୍ୟସ୍ୱର ଭିନ୍ନ ମୋଡ଼

(୬୪) ପ୍ରିୟ ପରମ—ଶ୍ରୀମତୀ ହେମଲତା ମାନସିଂହ, ମାନସିଂହ ପରିକ୍ରମା—ପୃ ୧୫୮ ।

(୬୫) ମୁଁ କାହିଁକି ଲେଖେ—ମାନସିଂହ, ନଗର ୧୪/୧ ସଂଖ୍ୟା ତା ୧-୭-୫୦

ଗ୍ରହଣ କରିଛି । ସମ୍ଭବତଃ ତାହା ସ୍ୱଭାବର ପ୍ରଭାବ ଯୋଗୁଁ । ସେଥିପାଇଁ ଅନ୍ତରର ସମସ୍ତ ପ୍ରଣୟାନୁଚନ୍ତା ପ୍ରତି ସେ ବିମୁଖ ହୋଇଉଠିଛନ୍ତି । ତାହା 'ହିସାବ ନିକାଶ' କବିତାରୁ ସ୍ପଷ୍ଟ ହୋଇଥାଏ । (୩୬)

"ଏହି କବିତାଟି ସହକାରରେ ପ୍ରକାଶ ପାଇବା ପରେ ପରେ ବୈକୁଣ୍ଠନାଥ ଦାସ ସେହିବର୍ଷ ସହକାରର ୩ୟ ସଂଖ୍ୟାରେ 'ହିସାବ ନିକାଶ—ନିଶାପ' ନାମକ ଏକ କବିତା ଲେଖି ମାନସିଂହଙ୍କ କାବ୍ୟଧିର ବିରୁଦ୍ଧରେ ତୀବ୍ର ପ୍ରତକ୍ରିୟା ପ୍ରକାଶ କରିଥିଲେ । ଏହା ଏକ ଐତିହାସିକ ଦଲିଲ୍ ପରି ସେତେବେଳେ କାବ୍ୟମୋଦୀଙ୍କ ମଧ୍ୟରେ ଯେ ଖୁବ୍ ଚହଲ ସୃଷ୍ଟି କରିଥିଲା ତାହା 'ସହକାର'ର ପୃଷ୍ଠାରୁ ଅନୁମିତ ହୁଏ ।" (୩୭)

ମନେହୁଏ ଯେପରିକି ମାନସିଂହଙ୍କର କାବ୍ୟପୁରୁଷର ନବ ନବ ଜନ୍ମପାଇଁ ଏହି ପ୍ରଥମ ପ୍ରୀତିଧୂପ ହିଁ ସାର୍ଥକ ସାଙ୍କେତିକ ଓ ଦିଗ୍‌ଦର୍ଶକ । ଏହି ପ୍ରଣୟର ଆଦିମ ଜିଜ୍ଞାସା ହିଁ ହୁଏତ କବିଙ୍କୁ ନିତ୍ୟ ଜୀବନ, ସୌନ୍ଦର୍ଯ୍ୟ ଓ ସତ୍ୟ ଏବଂ ଧର୍ମପଥରେ ଅଗ୍ରସର କରାଇ ନେଇଛି ।

**ହେମଶସ୍ୟ** (୧୯୩୬)—ହେମଶସ୍ୟ ବୋଧହୁଏ ୧୯୩୬ରେ ପ୍ରଥମ ମୁଦ୍ରିତ ହୋଇଥିଲା । ଲେଖକଙ୍କର କେତେକ କଲେଜ ସହପାଠୀଙ୍କ ଦ୍ୱାରା ଗଠିତ ପ୍ରଗତି ସଂଘ ଏହାର ପ୍ରକାଶକ ହୋଇଥିଲେ । × × × ବହୁ ଦୁର୍ଦ୍ଦିନ, ସଙ୍କଟସଙ୍କୁଳ ଏକ କବି ଜୀବନରେ ଏହି କବିତାଗୁଡ଼ିକ ଆଶାଦାୟୀ ରବିରଶ୍ମି ବା ଦାହ ଶୀତଳକାରିଣୀ ଜ୍ୟୋତ୍ସ୍ନାର ଏକ ଏକ କ୍ଷଣସ୍ଥାୟୀ ଝଲକ ପରି ବୁଝିବାକୁ ପଡ଼ିବ । × × ହେମଶସ୍ୟ ତ ଦୂରର କଥା, ଲେଖକର କୁଟୀରରେ ସାଧାରଣ ଖାଦ୍ୟଶସ୍ୟର ଅଭାବ ହିଁ ଲାଗି ରହିଛି । ସେଇ ଚିରନ୍ତନ ଅଭାବ, ସେଇ ଅପ୍ରାପ୍ତତା ସ୍ୱପ୍ନ ରହିଛି—'ହେମଶସ୍ୟ'ର ହୁଏତ ନିଜର ଚିର ଚୂର୍ଣ୍ଣିତାଂଶ ଜୀବନଟାକୁ ସାର୍ଥକତାର କନକ ଦେବାପାଇଁ । (୩୮) "ଧୂପ ଓ ହେମଶସ୍ୟ" ମଧ୍ୟରେ ଗଭୀର

---

(୩୬) ଗର୍ବ ଅଭିମାନ କରୁଛି ଭାବୁଛି ହେ ପୁରାତନୀ
ତୁମପାଇଁ ଖାଲି ଘୃଣାରେ ଚମକେ ମୋର ଧମନୀ
ମିଥ୍ୟାଗୃହିଣୀ, ପାପ ବିଳାସିନୀ
ତବ ଭୂଲଣରେ ପୂଜା ହେଲି ଯାହା କବି ଲେଖନୀ"
—'ହିସାବ ନିକାଶ' ସହକାର
୭୩/୧ମ, ବୈଶାଖ ୧୩୪୯ (ଏପ୍ରିଲ ୧୯୪୨)

(୩୭) ମାନସିଂହ ପରିକ୍ରମା—ଡକ୍ଟର ନିତ୍ୟାନନ୍ଦ ଶତପଥୀ, ପୃ ୨୨୬

(୩୮) ହେମଶସ୍ୟର ଭୂମିକା—ମାନସିଂହ ଗ୍ରନ୍ଥାବଳୀ ପୃ-୯

ତାରତମ୍ୟ ଦେଖାଯାଇଥାଏ । 'ଧୂପ'ରେ ଥିଲା ପରକୀୟା ପ୍ରେମର ପ୍ରୀତିଧୂପ କିନ୍ତୁ ହେମଶସ୍ୟ ସ୍ୱକୀୟା ପ୍ରେମର ଅନ୍ତରଙ୍ଗ ଇସ୍ତାହାର । ଧୂପର ଇନ୍ଦ୍ରିୟଧର୍ମୀ ଚେତନା ; ତାହା ହେମଶସ୍ୟରେ ଇନ୍ଦ୍ରିୟାତୀତ ହୋଇଉଠିଛି । "ଧୂପର ପ୍ରେମସ୍ରୋତ ଏକ ବର୍ଷାକାଳୀନ ନଦୀ ପ୍ରବାହ ; ତାହା ଉଚ୍ଛ୍ୱାସମୟୀ ଓ ଅପ୍ରତିରୋଧ ବନ୍ୟଗତିରେ ନିରନ୍ତର ଆବେଗମୟୀ । ସେଥିରେ ଅଛି ଉଦ୍ଦାମତା, କ୍ଷିପ୍ରତା ଓ କ୍ଷୁବ୍‌ଧତାର ବୈପ୍ଳବିକ କଣ୍ଠସ୍ୱର । ମାତ୍ର ହେମଶସ୍ୟର ବହୁ କବିତାରେ ନାହିଁ ଏହି ଉଦ୍ଦାମ ଆବେଗ, କ୍ଷିପ୍ରତା ଓ ଦୀପ୍ତ ତେଜସ୍କ୍ରିୟତା ।" (୩୯)

ପୁନଶ୍ଚ କବି ତାଙ୍କର ଏହି ପରିବର୍ତ୍ତିତ କାବ୍ୟଚେତନାକୁ ସନେଟର ଆଙ୍ଗିକ ମଧ୍ୟରେ ପ୍ରକାଶ କରିଛନ୍ତି । ଏହା ସନେଟ୍ ନୁହେଁ ବୋଲି କବି ମୁଖବନ୍ଧରେ ଯେତେ ଦାବୀ କଲେ ମଧ୍ୟ ଓଡ଼ିଆ ସାହିତ୍ୟରେ ଏହା ଗୋଟିଏ ଗୋଟିଏ ମୂଲ୍ୟବାନ୍ ରତ୍ନ । ନିଜର ବ୍ୟକ୍ତିଗତ ପ୍ରଣୟାନୁଭୂତିକୁ ନେଇ ଯେପରି ଇଂରେଜୀ କବି ସାର୍ ଫିଲିପ୍ ସିଡ଼ନୀ ଏବଂ ଓ୍ୱାର୍ଡ଼ସ ଓ୍ୱାର୍ଥ ସଫଳତା ହାସଲ କରିଛନ୍ତି ଓଡ଼ିଆ ସାହିତ୍ୟରେ ଡକ୍ଟର ମାନସିଂହ ମଧ୍ୟ ତାହାର ଯୋଗସୂତ୍ର ରକ୍ଷା କରିବା ନିମନ୍ତେ ସଫଳ ହୋଇପାରିଛନ୍ତି । 'ହେମଶସ୍ୟ'ର ସନେଟ୍‌ଗୁଡ଼ିକ ଏକ ଦାମ୍ପତ୍ୟ ଜୀବନର ସୁଖ ଦୁଃଖ, ହସ କାନ୍ଦ, ମାନ ଅଭିମାନରେ ସମୃଦ୍ଧ । ମାନସିଂହଙ୍କ ସନେଟ୍ ପ୍ରଣୟ ଚିତ୍ର ଦେବାରେ ଯେପରି ନିପୁଣ, ଇନ୍ଦ୍ରିୟୋତ୍ତର ଭାବନାରେ ସେହିପରି ମର୍ମିଳ । 'ବଧୂ ପ୍ରବେଶ', 'ଯୁଗଳ ଜୀବନ', 'ପ୍ରେମସ୍ପର୍ଶ', 'ଦେହ ଓ ସ୍ନେହ' 'କଳ୍ପଲତା' ଇତ୍ୟାଦି କବିତାରେ ଇନ୍ଦ୍ରିୟୋତ୍ତର ଚେତନା ଅଧିକ ମୂର୍ତ୍ତି ହୋଇଉଠିଛି । (୪୦)

---

(୩୯) ଓଡ଼ିଆ ସାହିତ୍ୟର ଇତିହାସ—ମାନସିଂହ—ପରିଶିଷ୍ଟ ପୃ-ଘ,
—ଚିନ୍ତାମଣି ବେହେରା

(୪୦) "ଲଭିଛି ବନ୍ଧନ ଦେଇ ଇନ୍ଦ୍ରିୟର ଶେଷେ
ଅତୀନ୍ଦ୍ରିୟ ସୁଖ ଲଭି ଆଜି ଅବଶେଷେ
ହୋଇଛି ମୁଁ ଜିତେନ୍ଦ୍ରିୟ । ଆଜି ଯେବେ ପ୍ରିୟା
ପାଶେ ଆସି ଯୁକ୍ତ କରେ ହୃଦ । ସଙ୍ଗେ ହିୟା ।
ଭୁଲେ ମୁଁ ଶରୀର ସ୍ପର୍ଶ ; ଅନୁଭବେ ଖାଲି
ତା ଦେହ ମନ୍ଦିର ମଧ୍ୟେ ; ପ୍ରିୟା ମୋର ଜାଳି"

× × ×

କରୁଛି ଜୀବନ ରସ ପ୍ରଣୟ ଆମ୍ଭର
ରୂପ ପର ଥିଲି ଦିନେ ଆଜି ରୂପୋତ୍ତର ।

'ଦେହ ଓ ସ୍ନେହ'—ହେମଶସ୍ୟ —ଗ୍ରନ୍ଥାବଳୀ, ପୃ-୧୯୪

ଝରଇ ପ୍ରତ୍ୟେକ ପବ୍ଦ ଆନନ୍ଦ ଜାହ୍ନବୀ
ପିଏ ଯା ମୁଁ ଅନୁପମ ସୁଖ ଅନୁଭବ
ମୋ ନଖିଲ ଇନ୍ଦ୍ରିୟରେ ସେ ଚନ୍ଦନବଲ୍ଲରୀ
ଲତାଇ ନଖିଲ ଅଙ୍ଗେ ଆଶୀର୍ବାଦ ପରି
ସଞ୍ଚାରଇ ପ୍ରାଣେ ମୋର ଅନନ୍ତ କଲ୍ୟାଣ
ଅତୀନ୍ଦ୍ରିୟ କରେ ଚକ୍ଷୁ ଶୁଦ୍ଧ କରେ ପ୍ରାଣ ।"

'କଳ୍ପଲତା'—ହେମଶସ୍ୟ—ଗ୍ରନ୍ଥାବଳୀ, ପୃ-୧୭୭

ହେମଶସ୍ୟରେ କବିଙ୍କର ଇନ୍ଦ୍ରିୟ ଏବଂ ଅତୀନ୍ଦ୍ରିୟ ଚେତନା ମଧ୍ୟରେ ଆଧିଭୌତିକ ଚେତନା ଗୋଟାଏ ପ୍ରକାର ମୃଦୁ ସୌରଭ ସଞ୍ଚାର କରୁଛି । ଯେପରି "ସୀମାହୀନ ବ୍ୟୋମପଥେ, ଏ ମହାସୃଷ୍ଟିର, (ଭକ୍ତି) "ଦିନେ ଦିନେ ତାରକିତ ଗଗନରେ ଗୃହି ଦେଖେଁ ମୁଁ ସୃଷ୍ଟିର ଲୀଳା, (ବିରାଟ ସ୍ରଷ୍ଟା) ଏଇ ଯେ ବିରାଟ ସ୍ରଷ୍ଟା ସେ କଣ ଶୁଣଇ (ସନ୍ଦେହ) ଦୁର୍ବଳର ଜାନୁଭଙ୍ଗ—କହିବ କିଏ ସେ ଈଶ୍ୱର ଶୁଣନ୍ତି ତାକ ନରର—" (ଦୁଃଖମୟ ସୃଷ୍ଟି) । ମାନବର ଦୁଃଖକଷ୍ଟ ; ଜଗତର ପ୍ରାସ (ବିଶୁଦ୍ଧ ସନ୍ଦେହ) 'ସ୍ୱର୍ଗମୁକ୍ତି ନାହିଁ ବାଞ୍ଛେ, ଜୀବନ ମୁଁ ଗୃହେଁ ।' (ମୁକ୍ତି ନାହିଁ ନାଗେ) 'କେଉଁ ଅହଙ୍କାରେ ହୋଇ ଅଣୁଁ ଅଣୁତର କହ କାଳପଥରେ ସ୍ଥିର ମନ୍ଦିର ଯଶର' (ସତ୍ୟପୁଷ୍ପ) ପ୍ରଭୃତି କବିତାରେ ଅତିଭୌତିକ ଚେତନାର ବ୍ୟଞ୍ଜନା ଅଧିକ ସ୍ପଷ୍ଟ । ଏସବୁ କବିତାରେ ସୂକ୍ଷ୍ମତର ଅନୁଭୂତି ଅନୁପସ୍ଥିତ । ଏହି କାରଣରୁ 'ହେମଶସ୍ୟ'ର କବିତାଗୁଡ଼ିକୁ ଯେତେବେଳେ ସାମଗ୍ରିକ ଦୃଷ୍ଟିକୋଣରୁ ବିଗୃର କରୁଁ; ତାହା ମନକୁ ଏତେ ବେଶୀ ଆବେଗାଭିଭୂତ କରେ ନାହିଁ—ଯେପରି 'ଧୂପ'ର କବିତାଗୁଡ଼ିକ କରିଥାଏ । ସେଥିପାଇଁ ସମାଲୋଚକ ଅଧ୍ୟାପକ ଚନ୍ଦ୍ରମଣି ବେହେରା କହନ୍ତି—"ପ୍ରଣୟର ସରସ ପିୟୂଷ ରନ୍ଧ୍ର ଏଇ ଯେ କବି ହରାଇ ବସିଲେ ତା'ର କ୍ଷତି ପୂରଣ ପରବର୍ତ୍ତୀ ସୃଷ୍ଟିରେ ବହୁଦିଗରୁ କରିଥିଲେ ହେଁ ପ୍ରେମାମୃତର ସ୍ୱାଦୁ ଲାଭ କରିବାକୁ ଏହି ରୂପପ୍ରାଣ କବି ଆଉ ସମର୍ଥ ହୋଇ ପାରିନାହାନ୍ତି । ଏହାର ମୁଖ୍ୟ କାରଣ ରୂପଜ ପ୍ରେମ ପ୍ରତି କବିଙ୍କର ଶିଳ୍ପଚେତନାର ସଚେତନ ବିଦ୍ରୋହ ।" (୪୧) ନାରୀକୁ ସମଗ୍ର ମାନବ ଜାତିର ଆରାଧ୍ୟ ଦେବୀ ଭାବରେ ମାନସିଂ ଚିତ୍ରଣ କରି ପ୍ରଣତି ବାଢ଼ିଛନ୍ତି । ଦେହଠାରୁ ଆତ୍ମା ବଡ଼ ବୋଲି ସେ ସ୍ୱୀକାର କରିଛନ୍ତି । "ରୂପାତୀତ ସ୍ନେହମମ,

(୪୧) ମାନସିଂହଙ୍କ କାବ୍ୟ ପ୍ରତିଭା—ଡଗର, ଅଗଷ୍ଟ ୧୯୫୭—ଅଧ୍ୟାପକ ଚନ୍ଦ୍ରମଣି ବେହେରା ।

ଜଡେନ୍ଦ୍ରିୟ ପର ।'' (୪୨) ପ୍ରତଦ୍ଦନର ପ୍ରଭାତ ପରି ପ୍ରୀତି ନିତ୍ୟ ନୂତନ । ବିବାହ ବନ୍ଧନରେ ଏହି ପ୍ରୀତିର ସ୍ୱର୍ଗୀୟ ଅନୁଭୂତି ମିଳେ । ସେଥିପାଇଁ କବି ବାରମ୍ବାର ଧରିତ୍ରୀବତରଣ କରିବାକୁ ଚାହେଁ । ବାରମ୍ବାର ଜନ୍ମହୋଇ ପ୍ରୀତି-ମୁଗ୍ଧ ଚକିତ ଗୃହିଣୀକୁ ଅନୁଭବ କରିବାକୁ ସେ ଇଚ୍ଛାକରେ । (୪୩) କବି ମାନସିଂହଙ୍କ କବିତାରେ ଓଡ଼ିଆ ମଧ୍ୟଯୁଗୀୟ ସାହିତ୍ୟ, ଇଂରାଜୀ ରୋମାଣ୍ଟିକ ଯୁଗର କବିମାନଙ୍କ ପ୍ରଭାବ ଏବଂ ରବୀନ୍ଦ୍ର କାବ୍ୟମାନସର ପ୍ରଭାବ ବହୁଭାବରେ ଲକ୍ଷ୍ୟ କରିହୁଏ । ଅଭିମନ୍ୟୁ, ବାଇରନ୍, କୀଟସ୍ ବା ରବୀନ୍ଦ୍ରନାଥହିଁ ମାନସିଂହଙ୍କ କବିତାର ପ୍ରେରଣା ଉତ୍ସ । ମାନସିଂହ ଏଇ ପ୍ରେମ ସମ୍ପର୍କରେ କହନ୍ତି, "ଯାହାକୁ ଆମେ ଭଲ ପାଉଁ କେବଳ ତାହାର ମଧ୍ୟରେ ଆମେମାନେ ଅନନ୍ତର ପରିଚୟ ପାଉ; ଏପରିକି ଜୀବ ମଧ୍ୟରେ ଏହି ଅନନ୍ତକୁ ଅନୁଭବ କରିବାର ଅନ୍ୟନାମ ହେଉଛି ପ୍ରେମ । ପ୍ରକୃତି ମଧ୍ୟରେ ଅନୁଭବ କରିବାର ନାମ ସୌନ୍ଦର୍ଯ୍ୟ-ସମ୍ଭୋଗ ।'' (୪୪)

ରବୀନ୍ଦ୍ରନାଥ ଏଇ ଶାଶ୍ୱତ ପ୍ରେମର ସ୍ୱରୂପ ପ୍ରକାଶ କରିବାକୁ ଯାଇ ଲେଖିଛନ୍ତି—"ଆମ୍ରା ଦୁଜନେ ଭାସିୟା ଏସେଛି ଯୁଗଲ୍ ପ୍ରେମେର୍ ସ୍ରୋତେ ଅନାଦି କାଲେର୍ ହୃଦୟ ଉତ୍ସ ହତେ/ଆମର୍ ଦୁଜନେ କରିୟାଛି ଖେଲା କୋଟି ପ୍ରେମିକେର୍ ମାଝେ/ବିରହ ବିଧୂର ନୟନ ସଲିଲେ ମିଲନ ମଧୁର ଲାଜେ, ପୁରାତନ ପ୍ରେମ ନିତ୍ୟ ନୂତନ ସାଜେ ।। ଆଜ ସେଇ ଚିର ଦିବସେର ପ୍ରେମ ଅବସାନ ଲଭିୟାଛେ । ରାଶି ରାଶି ହୟେ ତୋମାର ପାୟେର୍ କାଛେ ।। ['ଅନନ୍ତ ପ୍ରେମ'—ସଞ୍ଚୟିତା (ମାନସୀ) ପୃ. ୧୬ ।]

ପ୍ରେମର ମୃତ୍ୟୁ ନାହିଁ । ତାହା ଅବିନଶ୍ୱର । ପ୍ରେମର ଚିରନ୍ତନତାକୁ ମାନସିଂ ତାଙ୍କର ଏକାଧିକ କବିତାରେ ପ୍ରକାଶ କରିଛନ୍ତି । ଯେପରି "ତୁମେଇ ମୋହର ସଖୀ ସନାତନୀ ଜନମେ ଜନମେ ସାନ୍ତ୍ୱନା କିମ୍ବା ମରଣ କପାଟ

---

(୪୨) ଆତ୍ମାର ସୌନ୍ଦର୍ଯ୍ୟ—ହେମଶସ୍ୟ—ଗ୍ରନ୍ଥାବଳୀ—ପୃ. ୧୯୯

(୪୩) ନିଷ୍ପାପ ସେ ସ୍ୱପ୍ନମୟ ରସମୟ ବିମଳ ଦି' ଆଖି
ପ୍ରାଣର ଦି' ବାତାୟନ ଅନ୍ତରର ସତ୍ୟବାଣୀ ସାକ୍ଷୀ
ପାଇବାକୁ ସେ ଦୁଇର ପରିପୂର୍ଣ୍ଣ ଆତ୍ମସମର୍ପଣ
ହେ ସଖୀ କରୁଛି ମୁଁ କି ଜନ୍ମେ ଜନ୍ମେ ଧରିତ୍ରୀବତରଣ ।
'ଧରିତ୍ରୀବତରଣ'—ହେମଶସ୍ୟ—ଗ୍ରନ୍ଥାବଳୀ—ପୃ. ୨୩୬

(୪୪) ମାନସିଂହ ପରିକ୍ରମା—ସମ୍ପାଦନା ଡକ୍ଟର ନିତ୍ୟାନନ୍ଦ ଶତପଥୀ, ପୃ. ୨୩୧

ପଲ୍ଲବ ଯେବେ ଗୋ ଏହି ଜନମର ସରଣୀ ଶେଷେ ।” (‘ହେମଶସ୍ୟ’ ପୃ. ୨୧୧) ପରକୀୟା ପ୍ରେମର ଇନ୍ଦ୍ରିୟାନୁଭୂତ ପରିତ୍ୟାଗ କରି କବି ଲେଖନୀ କ୍ରମଶଃ ଅତିଭୌତିକତା ଆଡ଼କୁ ଗତି କରିଥିବାର ଦେଖି ଆଶ୍ଚର୍ଯ୍ୟ ନ ହୋଇ ରହିହୁଏ ନାହିଁ । ଏହି ଅତିଭୌତିକତାର ସ୍ୱର କେବଳ ହେମଶସ୍ୟରେ ନୁହେଁ, ‘କୃଷି’, ‘ଅକ୍ଷତ’, ‘ଜୀବନ ଚିତା’ ଆଦି କବିତା ଗ୍ରନ୍ଥରେ ଅଧିକ ମୂର୍ତ୍ତିମନ୍ତ ରୂପ ବିଗ୍ରହ ଲାଭ କରିଛି ।

**ହେମପୁଷ୍ପ** (୧୯୭୫)—

‘ହେମପୁଷ୍ପ’ ସମ୍ପର୍କରେ କବି ମୁଖବନ୍ଧରେ କହିଛନ୍ତି, “ପ୍ରେମଶସ୍ୟ’, ‘ମାଟିବାଣୀ’ ଓ ‘ଜୀବନ ଚିତା’ ପ୍ରଭୃତିରେ ମୋର ଖଣ୍ଡ କବିତା ଗୁଡ଼ିକର ଜାତି-ବିଭାଗ ହୋଇସାରିଲା ପରେ ଯାହା ଉଦ୍‌ବୃତ୍ତ ରହିଲା ହେମପୁଷ୍ପ ସେଇଗୁଡ଼ିକର ସଂଗ୍ରହ । ୧୯୪୭ରେ ଯେଉଁ ହେମପୁଷ୍ପ ପୁସ୍ତକ ପ୍ରକାଶ ପାଇଥିଲା ; ଏ ହେମପୁଷ୍ପ ତାହାର ପରବର୍ତ୍ତୀ ସଂସ୍କରଣ ନୁହେଁ । ଏହା ଏକ ନୂତନ ସଂସ୍କରଣ । ଏଥିରେ ପୂର୍ବ ପୁସ୍ତକର ଅନେକ କବିତା ଅନ୍ୟ ପୁସ୍ତକକୁ ଚାଲିଯାଇଛି ଏବଂ କେତେକ ନୂତନ କବିତା ସେମାନଙ୍କର ସ୍ଥାନ ଅଧିକାର କରିଛନ୍ତି” ।(୪୫) କବି ମାନସିଂହଙ୍କ ପନ୍ଦର ବର୍ଷ ରଚନାର କାଳ ନିର୍ଣ୍ଣୟ ଶୀର୍ଷକ ପ୍ରବନ୍ଧରେ ଡକ୍ଟର ନଟବର ସାମନ୍ତରାୟ କହିଛନ୍ତି “ଏ ପୁସ୍ତକର ସମଗ୍ର କବିତା ସଂଖ୍ୟା ହେଉଛି ୪୬ଟି । ପୁସ୍ତକଟି ‘ସୂଚୀ’, ‘ପ୍ରେମଶସ୍ୟ’ ଓ ‘ହେମପୁଷ୍ପ’ ଏହି ତିନିଭାଗରେ ବିଭକ୍ତ ।”

୧ । ସୂଚୀ—ଏଥିରେ ଅଛି ୫ଟି କବିତା ।

(କ) ‘ଜୀବନ ଚିତା’—କବିର ପୁରସ୍କାର ।

(ଖ) ହେମପୁଷ୍ପ (୧୯୪୭) ୩ଟି କବିତା (ଶୁଭଦୃଷ୍ଟିର ୩ଟି ସର୍ଗ) ।

(ଗ) ଅନ୍ୟାନ୍ୟ—୧ (ମାଙ୍ଗଳିକ) ।

୨ । ହେମଶସ୍ୟ—ଏଥିରେ ଅଛି ୧୩ଟି କବିତା ।

(କ) ପ୍ରେମଶସ୍ୟ—(୧୯୪୫) ୩ଟି—ମିଳନ ମାଧୁରୀ, ଅତୃପ୍ତ ଭୋଗ ଓ ବିରହ ଗାଥା ।

(ଖ) ଅନ୍ୟାନ୍ୟ ୧୦ଟି କବିତା—ପ୍ରେମ ଓ ସିଦ୍ଧି, ମନୋରଥ, କୃତ୍ୟ ବସନ୍ତ, ପ୍ରିୟଚକ୍ଷୁ, କଥା କହ, ଅପେକ୍ଷା, କଥୟନ୍ତୀ, ପ୍ରଥମ ଓ ପ୍ରଧାନ, ସର୍ବମୟ ଓ କରଞ୍ଜିଆ ।

---

(୪୫) ମୁଖବନ୍ଧ—ହେମପୁଷ୍ପ—ମାନସିଂହ ଗ୍ରନ୍ଥାବଳୀ, ପୃ ୧୨୮ ।

୩ । ହେମପୁଷ୍ପ—ଏଥିରେ ଅଛି ୨୮ଟି କବିତା ।

(କ) ମାଟିବାଣୀ, ୩ଟି କବିତା—ଅନୂଢ଼ା, ମହାନଦୀରେ ଜ୍ୟୋତ୍ସ୍ନାବିହାର ଓ କଣ୍ଟକାଚ ।

(ଖ) 'ଜୀବନ ଚିତା' ୧୦ଟି କବିତା—ଦକ୍ଷିଣା ପ୍ରତି, ଧରଣୀ ବାସ, ଜୀବନ ସ୍ୱର୍ଣ୍ଣଯୁଗ, ସୁଖଦୁଃଖ, ବୀଣାଭିକ୍ଷା, ପ୍ରାଣପକ୍ଷୀ, ବିଶ୍ୱରୂପ, ଦେବପୂଜା ଓ ଗୀତାର୍ପଣ । 'ଜୀବନ ଚିତା'ର ମୂକ ଦେବତା, ଆଲୋକ ମାଗେ, ଆହୁତି ଓ ଭ୍ରମର ପ୍ରୟୋଜନ—ଏହି ଚାରୋଟି କବିତା ଗୀତାର୍ପଣର ଚାରୋଟି କବିତା ସହିତ ସମାନ ।

(ଗ) ହେମପୁଷ୍ପ (୧୯୪୭) ୧୩ଟି କବିତା ।

(ଘ) ଅନ୍ୟାନ୍ୟ—ଦୁଇଟି କବିତା (ଭଗିନୀ ଓ ଭଗ୍ନ ମନୋରଥ) ସମୁଦାୟ ୪୭ଟି କବିତା ।

୧୯୪୦ ସାଲ ପରେ ମାନସିଂହ ଅନେକ କବିତା ଲେଖିଛନ୍ତି । କବିତା ପୁସ୍ତକ ମଧ୍ୟ ଛପାଇଛନ୍ତି । କିନ୍ତୁ ପ୍ରେମଶସ୍ୟ (୧୯୪୪), ଜୀବନଚିତା (୧୯୪୭), ମାଟିବାଣୀ (୧୯୪୭) ଓ ହେମପୁଷ୍ପ (୧୯୪୭) ପୁସ୍ତକମାନଙ୍କରେ ଆଲୋଚ୍ୟ ସମୟର ଅନେକ କବିତା ସ୍ଥାନ ପାଇଛି । କେଉଁ ପୁସ୍ତକରେ ଏପରି କେତେ କବିତା ସ୍ଥାନଲାଭ କରିଛି ତାହା ଦେଖନ୍ତୁ—

୧ । ପ୍ରେମଶସ୍ୟ—(୧୯୪୧) ଧୂପ, ହେମଶସ୍ୟ ଓ ଶେଷଗୁଚ୍ଛ ନାମରେ ଏହା ୩ଟି ଭାଗରେ ବିଭକ୍ତ । ଏ ପ୍ରତ୍ୟେକ ବିଭାଗର କବିତା ଦେଖନ୍ତୁ—

(କ) ଧୂପ ବହିରୁ ୨୨ଟି କବିତା ; ଶେଷଗୁଚ୍ଛ—ଧୂପ ବହିରୁ ୩ଟି କବିତା, ତେଣୁ ଧୂପର ୨୫ଟି କବିତା ଏଥିରେ ଅଛି । ବାକି ନ ଥିବା ସାତଟି କବିତା ହେଉଛି ତରୁଣ କବିର ଆଶା, ପ୍ରଣୟୀ, ପାଶୋର ପ୍ରଣୟ, ପ୍ରେମର ପରିମାପ, ପ୍ରେମର ଭିକ୍ଷା, ପ୍ରେମ ଓ ଜଗତ ଏବଂ ପ୍ରେମ ଓ ମୃତ୍ୟୁ ।

(ଖ) ଶେଷଗୁଚ୍ଛ—(୧) ହେମପୁଷ୍ପ (୧୯୩୫)ରୁ ୩ଟି କବିତା—ବିରସ ଗାଥା, ମିଳନ ମାଧୁରୀ ଓ ଅତୃପ୍ତ ଭୋଗ । (୨) ଅନ୍ୟାନ୍ୟ ୭—ଜ୍ୟୋତ୍ସ୍ନାଭୋଗ, ଶ୍ରାବଣ ଅଭିସାର, ନର୍ତ୍ତକୀ ସ୍ୱୟମ୍ବର, ଯୋଗ୍ୟହେବ, ନବଜନନୀ, ନାରୀର ଅଧିକାର ଓ ବିରହ ପ୍ରଦୀପ—'ବିରହ ପ୍ରଦୀପ' ପତ୍ରିକାରେ ପ୍ରକାଶିତ । (ଆଧୁନିକ, ଅକ୍ଟୋବର ୧୯୩୭)

(ଗ) ହେମଶସ୍ୟ—୩୭ଟି କବିତା, ସର୍ବମୋଟ ୭୨ଟି କବିତା ।

୬ । ଜୀବନଚିତା (୧୯୪୭)—ଏଥିରେ ଅଛ୍ଛ ୩୦ଟି କବିତା ।

(କ) ହେମପୁଷ୍ପ (୧୯୩୫)ରୁ ୧୪ଟି କବିତା ।

(ଖ) 'ଧୂପ'ରୁ ୨ଟି କବିତା (ତରୁଣ କବିର ଆଶା ଓ ପ୍ରଣୟୀ)

(ଗ) ପତ୍ରିକାରୁ ୩ଟି କବିତା (ନିଦ୍ରିତ ଭଗବାନ, ଶକ୍ତିର ଗୌରବ) ଭଞ୍ଜ ପ୍ରଦୀପ—ଜାନୁୟାରୀ ୧୯୪୧ ଓ ଆତତାୟୀ ସହକାର ନଭେମ୍ବର ୧୯୪୧ ।

(ଘ) ଅନ୍ୟାନ୍ୟ—୧୧ଟି (ଶେଷକଥା, ବିଶୃଙ୍ଖଳ ସୃଷ୍ଟି, ବନ୍ଧନ, କୃତାର୍ଥ, ଦୁର୍ବାର ଆରାଧନା, ଅନୁତପ୍ତ, ଦୁର୍ବଳ ସୈନିକ, ତୀର୍ଥଧୂଳି, ଅଶ୍ରୁ ପୂଜା, ସମରବିମୁଖ ଓ ଦ୍ୱନ୍ଦ୍ୱ) ମୋଟ ୩୦ଟି କବିତା ।

୩ । ମାଟିବାଣୀ (୧୯୪୭)—ଏଥିରେ ଅଛି ୨୯ଟି କବିତା ।

(କ) ହେମଶସ୍ୟ (୧୯୩୩)ରୁ ୨ଟି କବିତା ।

(ଖ) ହେମପୁଷ୍ପ (୧୯୩୫)ରୁ ୩ଟି କବିତା ।

(ଗ) ପତ୍ରିକାରୁ ୧୨ଟି କବିତା (ଏଥିରୁ କେବଳ ପଲ୍ଲୀ ସନ୍ଧ୍ୟା ଭଞ୍ଜ ପ୍ରଦୀପ, ଏପ୍ରିଲ ୧୯୪୨ରେ ପ୍ରକାଶିତ, ଅନ୍ୟାନ୍ୟ ୧୯୪୦ ପୂର୍ବରୁ)

(ଘ) ଅନ୍ୟାନ୍ୟ—୧୨ଟି କବିତା (କୁଟୀର ଚିରନ୍ତନ) ସ୍ୱଭାବ କବି ଗୋପାଳକୃଷ୍ଣ, ଗାନ୍ଧିଜୀ, ରବୀନ୍ଦ୍ରନାଥ, ତଅପୋଇ ବିଳାପ ଇତ୍ୟାଦି । ମୋଟ ୨୯ଟି କବିତା ।

୪ । ହେମପୁଷ୍ପ (୧୯୬୭)—ଏଥିରେ ଅଛି ୩୫ଟି କବିତା ।

(କ) ହେମଶସ୍ୟ (୧୯୩୫)ରୁ ୧ (ରୂପାଲୋକ)

(ଖ) ପତ୍ରିକାରୁ ୨ଟି—ରୂପସୀର ପୂଜା (ଅଗଷ୍ଟ ୧୯୨୮) ଓ ଶେଳୀ ମୃତ୍ୟୁ, ଭଞ୍ଜ ପ୍ରଦୀପ, (ସେପ୍ଟେମ୍ବର, ଡିସେମ୍ବର ୧୯୪୩)

(ଗ) ହେମପୁଷ୍ପ (୧୯୩୫)ରୁ ୧୭ଟି କବିତା—(ଶୁଭଦୃଷ୍ଟି ୩ ସର୍ଗ, ରୂପ ଦେବତା, ଇରାନୀ କଣ୍ଢେଇ, ବରଷା ଘନ, ପ୍ରାବୃଟ ସମ୍ଭାଷଣ, ଯଥାସ୍ଥାନ, ଘନ ଶର୍ବରୀ, ହଂସ ହତ୍ୟା, ବସନ୍ତୋତ୍ସବ, ଜ୍ୟୋତ୍ସ୍ନାମୟୀ, ଇତସ୍ତତଃ, କୁଳଟା ରାଧା, ବଂଶୀର ଡାକ, ଆତ୍ମପର, ବେଠିକ୍—ବେଠିକ୍ କବିତାଟି 'ହେମପୁଷ୍ପ' (୧୯୩୫) ପୁସ୍ତକରେ କୌଣସି ନାମରେ ନାହିଁ ।

(ଘ) ଅନ୍ୟାନ୍ୟ—୧୫ଟି କବିତା ।

'ହେମପୁଷ୍ପ'ରେ ଥିବା ପ୍ରତ୍ୟେକ କବିତା ସହିତ ପ୍ରତ୍ୟେକର ସଂଯୋଗ ସୂତ୍ର ରହିଛି ବୋଲି କବି ସ୍ୱୀକାର କରିଛନ୍ତି । 'ରୂପ ଦେବତା'ଠାରୁ ଆରମ୍ଭ କରି 'ଗୀତା ତର୍ପଣ' ପର୍ଯ୍ୟନ୍ତ ବିଭିନ୍ନ କବିତାରେ ବିଭିନ୍ନ ସ୍ୱର ମୂର୍ଚ୍ଛିତ । ଇସ୍ତ୍ରୀ କଣେଇ, ବିରହୀ ଘନ, ପ୍ରାବୃଟ ସମ୍ଭାଷଣ, ଘନଶବଂଶି, ଇତସ୍ତତଃ, କୁଳଟା ରାଧା, ବଂଶୀ ଡାକ, ରୂପସୀର ପୂଜା—ଏହି ସମସ୍ତ କବିତାରେ ରୂପପ୍ରାଣତା ମୂର୍ତ୍ତି ଏବଂ ଗୀତା ତର୍ପଣ, ଶେଷ ମୃତ୍ୟୁ, ଆମ୍ବପର, ଉଦାସୀ ପାନ୍ଥ, ବିଶ୍ୱଦେବାଳୟ, ନାରୀ ଏବଂ ମହାଦାନ ପ୍ରଭୃତି କବିତାରେ ସାଧନାର କଥା, ବେଦନାର କଥା ଏବଂ ସଂଗ୍ରାମର କଥା ସେ କହିଛନ୍ତି । (୪୬) 'ଭଗିନୀ' କବିତାରେ କବିଙ୍କର ବ୍ୟକ୍ତିଜୀବନର ସ୍ମୃତି ଯେପରି ହୃଦ୍ୟ, ସେହିପରି କରୁଣ । "କବିଙ୍କ ଜ୍ୟେଷ୍ଠା ଭଗ୍ନି ସୁଜାଅପା । × × କବିଙ୍କର ଏହି ଭଗିନୀ ଅତିଶୟ ଦୁଃଖିନୀ । ବାଲ୍ୟକାଳରେ ପିତାମାତା ଉଭୟଙ୍କର ପରଲୋକ ହୋଇଯାଇଥିଲା । × × ସେତେବେଳର ଏକମାତ୍ର ଏଣ୍ଟ୍ରାନ୍ସ ପାଶ୍ ଯୁବକ ଉଦୟନାଥ ଜେନାଙ୍କୁ ଜାମାତା ରୂପେ ଗ୍ରହଣ କରିଥିଲେ । ବିବାହ ସମୟକୁ ଉଦୟନାଥ ପାରିକୁଦ ରାଜାଙ୍କ କ୍ୟାସିୟର ଭାବେ କାର୍ଯ୍ୟ କରୁଥାନ୍ତି । × × କେତେମାସ ପରେ ଭାରଯୋର ନେଇ ପୁଅାଣି ହୋଇ ଶ୍ୱଶୁରାଳୟକୁ ଗଲେ । ସେତେବେଳକୁ ସ୍ୱାମୀ ସରକାରୀ ଟଙ୍କା ତୋଷରପାତ କରି ପଳାତକ । ପରେ ଶୁଣାଗଲା ସେ ମାଳୟରେ ଆଉ କାହାକୁ ବିବାହ କରି ସବୁଦିନ ପାଇଁ ରହିଗଲେ । ସ୍ୱାମୀ ଶୋକରେ ଘାରି ହେଉଥିଲାବେଳେ ପୁତ୍ରଟିଏ ଜାତହେଲା । ଅପା ଚେତନାଶୂନ୍ୟା । × × ଅପାଙ୍କ ଜୀବନ ଚିତ୍ର ମାନସିଂହଙ୍କ 'ଭଗିନୀ' କବିତାରେ ସ୍ପଷ୍ଟ ହୋଇଉଠିଛି ।" (୪୭)

---

(୪୬) ତଥାପି ନିତ୍ୟ ଖୋଜଇ ପାନ୍ଥ ମୁହିଁ
ଅରୂପ ସେହି ଦେବତାର ପୁରଦ୍ୱାର
ଅତୃଷ୍ଣ ମୋର ପିପାସା ଅଛି ପ୍ରାଣେ
ଦେଖିବି ଆଖେ, ଶୁଣିବି ବାକ୍ୟ ତା'ର ।
ବିଶ୍ୱଦେବାଳୟ—ଗ୍ରନ୍ଥାବଳୀ, ପୃ-୧୬୧

× × ×

ତୁମ କରୁଣାର ଯୋଗ୍ୟ ନୁହେଁ ମୁଁ
ତୁମ କରୁଣା କଂପା ମାଗିବି
ଦେଇଛ ଯେଉଁ ଦୁଃଖ ନିବିଡ଼ ଦାବ ଦାହ
ନୀରବେ ପ୍ରାଣେ ପ୍ରାଣେ ଭୋଗିବି (ଗୀତା ତର୍ପଣ)
ହେମପୁଷ୍ପ—ଗ୍ରନ୍ଥାବଳୀ, ପୃ-୧୬୫

(୪୭) ପ୍ରିୟପରମ—ଶ୍ରୀମତୀ ହେମଲତା ମାନସିଂହ—ମାନସିଂହ ପରିକ୍ରମା, ପୃ.୧୬୧

"ଅପା କି କରୁଥିବ ସାନବୋହୂ ସେ
ବଳିତା ଦେବନି ତ ସରମ ବଶେ
ଚୁଲି ମୁହଁରେ କାଆଁ ଗୁଞ୍ଜାଇ ଧୀରେ
ଶମାଉଥିବ ଦୁଃଖ ନୟନ ନୀରେ
ପଦ ପଦକେ ଖଞ୍ଜା ଜାଆ ଗଞ୍ଜଣା
କାହିଁଅଛୁ ତା ଦୁଃଖର ଆହା କଳଣା ।"

ହେମପୁଷ୍ପ (ଭଗିନୀ)—ଗ୍ରନ୍ଥାବଳୀ, ପୃ ୧୭୩

ଜୀବନାନୁଭୂତର ଗଭୀରତର ପ୍ରକାଶ, ଅଧ୍ୟାତ୍ମ ଚେତନା, ବ୍ୟକ୍ତିଗତ ଶୋକର ନୈର୍ବ୍ୟକ୍ତିକ ଅଭିବ୍ୟକ୍ତି, ପ୍ରେମର ମାଧୁର୍ଯ୍ୟର ନିସର୍ଗ ସୌନ୍ଦର୍ଯ୍ୟରେ ହେମପୁଷ୍ପର ପ୍ରତ୍ୟେକ କବିତା ଅନବଦ୍ୟ ।

ଅକ୍ଷତ, ବାପୁତର୍ପଣ (୧୯୪୮), ମାଟିବାଣୀ (୧୯୪୭), ଜୀବନ ଚିତା (୧୯୪୭) ଏବଂ କୂଳେ (୧୯୫୭) ମାନବ ମହିମାର ପୂଜା, ଜୀବନାନ୍ତରର ଆଭାସ, ଜୀବନକୁ ଗଭୀର ଭାବରେ ଉପଲବ୍ଧି କରିବାର ଚେଷ୍ଟା, ରୂପ ଏବଂ ଅରୂପର ସମନ୍ୱୟ, ପୁରାତନ ଜୀବନର ନୂତନ ଅଭିବ୍ୟକ୍ତି, ସମାଜ ଚେତନାର ପରିଚୟ, ମାଟିର ଡାକ, ପଲ୍ଲୀଜୀବନର ନୂତନ ଛନ୍ଦ, ରେଙ୍ଗୁନ୍ ଚିଠି, ପଲ୍ଲୀସନ୍ଧ୍ୟା, ବର୍ଷାସନ୍ଧ୍ୟା, ପଲ୍ଲୀପ୍ରିୟା, ଘରପଶା, ବୋଇତ ବନ୍ଦାଣ, ନଷ୍ଟପଲ୍ଲୀ, କଣ୍ଟକାଚ ଅନୂଢ଼ା ଆଦି 'ମାଟିବାଣୀ'ରେ ପ୍ରକାଶିତ କବିତାଗୁଡ଼ିକରେ ଏହି ଦୃଷ୍ଟିଭଙ୍ଗୀ ସ୍ପଷ୍ଟ ପ୍ରତିଭାତ ହୁଏ । କ୍ରମଶଃ ପଲ୍ଲୀ ଜୀବନରେ ରିକ୍ତତା ଭରିଯାଉଛି, ତାହାର କରୁଣ ଚିତ୍ର ଏହି କବିତାଗୁଡ଼ିକ ବହନ କରିଛି ।

"ଧାନ ମଣି ଦେଇ ଗ୍ରାମି ଯେ ରୁନ୍ଧିଛି ଦ୍ୱାର,
ଘରେ ଭାତ ନାହିଁ ତିନି ପ୍ରାଣୀ ପଡ଼ିଥିବେ ଓପାସେ ।
× × ×
ପ୍ରାଣଶ୍ୱାନ ମାଟି ନଡ଼ା ଇଟା ଗଡ଼ା କୁଡ଼ିଆ ପୁଣି
ବନ୍ଧୁ ଜନ ପର ଚିତ୍ତକୁ ଟାଣଇ ତାହାରେ ଗୁଣି ।"

'ଘରପଶା'—(ମାଟିବାଣୀ) ଗ୍ରନ୍ଥାବଳୀ ପୃଷ୍ଠା ୩୩୪ । ସହକାର ୧୩/୭, କାର୍ତ୍ତିକ ୧୩୪୦ ଅକ୍ଟୋବର ୧୯୩୬ରେ ଏହା ଗୃହମାୟା ନାମରେ ପ୍ରକାଶିତ ।

"କବିଙ୍କର ଜନ୍ମସ୍ଥଳୀ ପୁରୁଣା ନନ୍ଦଳା ଗାଁ ବର୍ତ୍ତମାନ ନାହିଁ । ୧୯୪୩ରେ ଭୟଙ୍କର ତୋଫାନରେ ଗ୍ରାମ ଧ୍ୱଂସ ହୋଇ ଯାଇଛି । ଚିଲିକା ଓ ସମୁଦ୍ର ଜଳ ଏକାକାର ହୋଇ ପର୍ବତାକାରରେ ମାଡ଼ି ଆସିଥିଲା । କାର୍ତ୍ତିକ ମାସରେ ଝଡ଼ତୋଫାନ ଦେଖି କବି ଚିତ୍ତ ଚଞ୍ଚଳ ହୋଇ ଉଠିଥିଲା । ଆଠଗଡ଼ରୁ ଢୁଢ଼ା,

ଗୃହଲ ଓ ଉଖୁଡ଼ା ଧରି କଟକରୁ ଶ୍ରୀ ଲଳିତ କୁମାର ଘୋଷଙ୍କ ସାଙ୍ଗରେ ନେଇ କବି ବାଲୁଗାଁରୁ ନୌକା ଯୋଗେ ତାଙ୍କ ଗ୍ରାମରେ ପହଞ୍ଚିଲେ । ଗ୍ରାମର ଚହ୍ଲବର୍ତ୍ତି ନ ଥିଲା । × × ପାଞ୍ଚଶତରୁ ଊର୍ଦ୍ଧ୍ୱ ମନୁଷ୍ୟ ମୃତ୍ୟୁ ମୁଖରେ ପଡ଼ିଥାଆନ୍ତି । ଗୃହପାଳିତ ପଶୁ ଓ ମନୁଷ୍ୟଙ୍କ ଶବରେ ବାୟୁମଣ୍ଡଳ ଦୁର୍ଗନ୍ଧପୂର୍ଣ୍ଣ । × × ବ୍ୟଥିତ କବିପଲ୍ଲୀର ଏହି ଅବସ୍ଥାକୁ ଲକ୍ଷ୍ୟକରି 'ନଷ୍ଟପଲ୍ଲୀ' କବିତାଟି ରଚନା କରି ଯାଇଛନ୍ତି ।" (୪୮) 'କଣ୍ଟକାଚ'ର ଅପା ପ୍ରତି କବିଙ୍କର ବେଦନାବୋଧ ଅଧିକ ମାର୍ମିକ ହୋଇଉଠିଛି । କବି କଟକରେ ପଢ଼ୁଥିବାବେଳେ ତାଙ୍କ ଅପା କଟକରୁ ଦୁଇପଟ ସୁନାକାଚ ଆଣିବା ପାଇଁ ତାଙ୍କର କାଚପଟେ ତାଙ୍କୁ ଦେଇଥିଲେ, କିନ୍ତୁ କବି ଆଣିବା ପାଇଁ ସମର୍ଥ ହୋଇପାରି ନ ଥିଲେ । ସେଇ ସୁନା ଅପା ଖିପଣ ଦୁଃଖିନୀ ଥିଲେ । ସ୍ୱାମୀ ତାଙ୍କର ପଳାତକ ହେଲାପରେ ସେ ଆଉ ସୁନାକାଚ ପାଇଁ ମନ ବଳାଇ ନ ଥିଲେ । ଏହା ଅତି ମର୍ମସ୍ପର୍ଶୀ ଭାବରେ କବି ପ୍ରକାଶ କରିଛନ୍ତି । ହେମଲତା ମାନସିଂହ ·ତାଙ୍କର "ପ୍ରିୟପରମ"ରେ କହିଛନ୍ତି, "କଣ୍ଟକାଚର ଅପା ଗାଁର ପିତୃପିତାର୍ଜିତ ଭୂମିକି ଜଗି ଆଜି ବି ବଞ୍ଚି ରହିଛନ୍ତି । ଆଖିରୁ ତାଙ୍କର ଅସରି ଲୁହର ଦାଗ ଶୁଖୁନାହିଁ ।" କବିଙ୍କର ବାଲ୍ୟକୈଶୋରର ସାଥି 'ନନ୍ଦଳା' ଗାଁ'ର ଅପାଶୋରି ସ୍ମୃତି 'ମାଟିବାଣୀ'ର ପ୍ରେରଣା କହିଲେ ଅତ୍ୟୁକ୍ତି ହେବନାହିଁ ।

କୃଷ୍ଣ, ଜୀବନ ଚିତା ଏବଂ ଅକ୍ଷତରେ ଜୀବନ ଜିଜ୍ଞାସା—ଆତ୍ମବିଶ୍ଳେଷଣ, ଆତ୍ମପରିଚୟର କାବ୍ୟ କୃଷ୍ଣ । ଜୀବନ ଜିଜ୍ଞାସାରେ ଏହା ମୁଖର । ଈଶ୍ୱରାନୁଭୂତି ଏବଂ ଅତୀନ୍ଦ୍ରିୟ ଚେତନାରେ ଏହା ଉଦ୍‌ବୁଦ୍ଧ । "ଦେହର ଜଡ଼ ଅନୁଭୂତିରୁ ଆତ୍ମାର ଚେତନାଲୋକକୁ, ରୂପର ପୁଷ୍ପିତ ପ୍ରାଙ୍ଗଣରୁ ଅରୂପର ଅଳକାପୁରୀକୁ ଏବଂ ସୀମାର ସଙ୍କୀର୍ଣ୍ଣ ନଗଡ଼ରୁ ବୃହତ୍ତର ଭୂମାପରିସରକୁ ଅନ୍ତରର କବିମନୁଷ୍ୟଟି କ୍ରମଶଃ ଗତିଶୀଳ ହୋଇଛି ଓ ପ୍ରଣୟିନୀର ରୂପାଲୋକରେ ମଧ୍ୟ ଅରୂପର ସନ୍ଧାନ କରିଛି । କବିପ୍ରାଣର ପ୍ରଣୟାଭିସାର ଦେହକାରାଗାରର ଇନ୍ଦ୍ରିୟବନ୍ଧନୀ ମଧ୍ୟରେ ଆରମ୍ଭ ହୋଇଥିଲେ ହେଁ ପରିଣତିରେ ଏକ ସିଦ୍ଧି ଧାମରେ ଆସି ପହଞ୍ଚିଛି; ଯେଉଁ ଧାମ କି ମୁକ୍ତ ସୌନ୍ଦର୍ଯ୍ୟ ଓ ନିତ୍ୟ ଆନନ୍ଦର ଗୋଲକ ।" (୫୦)

---

(୪୮) ପ୍ରିୟପରମ—ହେମଲତା ମାନସିଂହ—ମାନସିଂହ ପରିକ୍ରମା—ପୃ. ୧୬୧

(୪୯) କେବେ ସେ ମୋତେ କହିଲା ନାହିଁ କନକକାଚ କଥା
ରହିଲା ତୁନି ମରମେ ଜାଣି ଅପା ମୋହର ଦରିଦ୍ରତା ।
କଣ୍ଟକାଚ (ମାଟିବାଣୀ) ଗ୍ରନ୍ଥାବଳୀ—ପୃ. ୩୬୩

(୫୦) ମାନସିଂହଙ୍କ କାବ୍ୟ ପ୍ରତିଭା—ଉତ୍କଳ ଅଗଷ୍ଟ ୧୯୫୭
ଅଧ୍ୟାପକ ଚନ୍ଦ୍ରମଣି ବେହେରା

ଝୁଣର ସନେଟଗୁଡ଼ିକରେ ଏହି ଚିନ୍ତା ମୂର୍ତ୍ତି ହୋଇଉଠିଛି । ମାନସିଂହ ନିଜେ ସ୍ୱୀକାର କରିଛନ୍ତି, "ପ୍ରତ୍ୟେକଟି ସନେଟ୍ ସ୍ୱୟଂସମ୍ପୂର୍ଣ୍ଣ ହେଲେ ହେଁ ସବୁଗୁଡ଼ିକୁ ସମ୍ପର୍କିତ କରି ଏକ ଶୋକବିକ୍ଷୁବ୍ଧ, ଅଶ୍ରୁଦଗ୍ଧ ପ୍ରାଣର କାତର ବାଣୀ ଓ ତତ୍ତ୍ୱଜିଜ୍ଞାସା ଓତଃପ୍ରୋତ ଭାବରେ ସୂତ୍ର ରୂପେ କାର୍ଯ୍ୟ କରୁଥିବାର ସହୃଦୟ ପାଠକ ଅନୁଭବ କରିପାରିବେ ବୋଲି ମୋର ବିଶ୍ୱାସ।" (୫୧) ମାନସିଂହଙ୍କର ଜୀବନର ଆରମ୍ଭରେ ଯୌବନ ପୂଜା ଏବଂ ପରିଣତ ଜୀବନର ଯୌବନ ପୂଜାର ଭାବଗତ ପାର୍ଥକ୍ୟ ସହଜରେ ବାରି ହୋଇପଡ଼େ । ଦେହଜ ପ୍ରେମରୁ ଅତୀନ୍ଦ୍ରିୟ ଚେତନାକୁ ଗତି କଲାବେଳେ ମାନସିଂହଙ୍କର କବିତାରେ ଆଉ ରୂପର ମୋହ ବା ଜୈବିକ ଲାଳସାର ଚିହ୍ନ ନାହିଁ । ତାଙ୍କ କାବ୍ୟ ଜୀବନର ଉତ୍ତରାୟଣରେ ରଚିତ ଝୁଣ ଇତ୍ୟାଦିରେ ଏହାର ମୁଦ୍ରାଙ୍କ ସ୍ପଷ୍ଟ ।

"ଆଜି ଦେହ ଖୋଜେ ଏକ ଦୁର୍ଲଭ ବିଦେହୀ
ଚିତ୍ତ ଖୋଜେ ଏକ ତେଜ ବିରାଟ ନିଖିଳେ
ଖୋଜେ ମୁଁ ଅରୂପେ ରୂପ କ୍ଳାନ୍ତନେତ୍ର ଦେଇ
ସ୍ନାତ ହୋଇଉଠେ ଗଣ୍ଡ ଅନାସକ୍ତ ନୀରେ"

ଝୁଣ—ନୂତନ ପ୍ରଣୟ, ପୃ-୪୩

କିମ୍ବା 'ତୃପ୍ତି ଖୋଜି ଏଣେତେଣେ ଧାଇଁଥିବ ଯାହା' (ଜନ୍ମ ଜନ୍ମାନ୍ତର) 'ଭ୍ରମି ଭ୍ରମି କ୍ଳାନ୍ତ ମୁହିଁ ଆନନ୍ଦ ସନ୍ଧାନେ' (କସ୍ତୁରୀ ମୃଗ) ଇତ୍ୟାଦି ପଂକ୍ତିରୁ ମାନସିଂହଙ୍କ ଅତୀନ୍ଦ୍ରିୟ କାବ୍ୟଚେତନା ସହଜରେ ଅନୁଭୂତ ହୋଇଥାଏ ।

'ଅକ୍ଷତ'ର ନିସର୍ଗ ସୌନ୍ଦର୍ଯ୍ୟ, ଅଧ୍ୟାତ୍ମ ପ୍ରତ୍ୟୟ ଓ ଆତ୍ମପ୍ରତ୍ୟୟର ଦୃଢ଼ତା ମୁକ୍ତିର ଆନନ୍ଦରେ ଗରିମାନ ହୋଇଉଠିଛି । ମାନସିଂହ ଅକ୍ଷତର ମୁଖବନ୍ଧରେ କହିଛନ୍ତି "ଏହି ଲେଖକ ଯତି, ଭକ୍ତ ବା ଧାର୍ମିକ ନୁହେଁ । ଧରାତଳର କୋଟି କୋଟି ପଥଯାତ୍ରୀମାନଙ୍କ ମଧ୍ୟରୁ ସେ ଏକ ସାମାନ୍ୟତମ ଯାତ୍ରୀ ମାତ୍ର । ସାଧାରଣ ସହଯାତ୍ରୀମାନଙ୍କ ପରି ତାର ଶରୀର ଜୀବନ ସଂଗ୍ରାମର ଅସ୍ତ୍ରକ୍ଷତରେ ବିକଳ। ତାର ଗଣ୍ଡ ଅଶ୍ରୁସ୍ନାତ, ତାର ଅନ୍ତର ଅସନ୍ତୋଷ ଓ ଅଭିମାନରେ ଭରା । × × ନିଜ ଜୀବନର ଓ ସହଯାତ୍ରୀ ଜୀବଗ୍ରାମର ଦୁଃଖ ଦୁର୍ଦ୍ଦଶାର କଥା ଭାବୁଭାବୁ ଲେଖକ ବେଳେବେଳେ ଗୌତମ ବୁଦ୍ଧଙ୍କ ସଙ୍ଗେ ନିରୀଶ୍ୱର ହେଲାବେଳକୁ ତେଣେ ରାମକୃଷ୍ଣ ପରମହଂସଙ୍କର ଈଶ୍ୱର କୃଟମୂର୍ତ୍ତିତା ଦେଖି ସ୍ତବ୍ଧ ହୁଏ । ଏ ରହସ୍ୟର ଠିକ୍ ଉତ୍ତର କିଏ ଦେବ । × × ବୁଦ୍ଧ ଏଥିପାଇଁ ସୃଷ୍ଟି ଓ ସ୍ରଷ୍ଟାର ତତ୍ତ୍ୱନେଇ ସମୟ ବୃଥା ନଷ୍ଟ ନ କରି ଆତ୍ମକର୍ଷଣ ଦ୍ୱାରା ସଂସାର ଦୁଃଖରୁ ନିର୍ବାଣ ଲାଭ କରିବାକୁ ଉପଦେଶ ଦେଇଥିଲେ । କିନ୍ତୁ ମନୁଷ୍ୟର ଚିତ୍ତ ସବୁବେଳେ ଏକ

(୫୧) ଝୁଣ—ମୁଖବନ୍ଧ—ଡକ୍ଟର ମାୟାଧର ମାନସିଂହ

ଅଦୃଶ୍ୟ ଶକ୍ତି ସଙ୍ଗେ ନିଜକୁ ସମ୍ପର୍କିତ ରଖି ଏକ ପ୍ରକାର ମାନସିକ ସୁଖ ଆସ୍ୱାଦନ କରିବାକୁ ଚାହେଁ × × ଆଗେ ତ କହିଛି ଲେଖକ ଭକ୍ତ ବା ସାଧକ ନୁହେଁ । ସେ ଇହ ଜୀବନର ଦୁଃଖସୁଖର ଏକ ଖେଳୀ ମାତ୍ର । ମନୁଷ୍ୟ ନିଜ ଅନ୍ତରର ଦୁଃଖ ଅନ୍ୟ ଆଗରେ କହି ସୁଖ ପାଏ । ଲେଖକ ଅନ୍ୟଗତି ନ ଦେଖି ; ଈଶ୍ୱର ନାମକ ସେହି ଶାଶ୍ୱତ ରହସ୍ୟମୟ ଅଦୃଷ୍ଟ ପୁରୁଷ ନିକଟରେ ତାହାହିଁ କରିବାକୁ ଯାଉଛି ।" (୫୨) ଏହି ସ୍ୱୀକାରୋକ୍ତି ଅକ୍ଷତର ଅନେକ କବିତାରେ ଉଚ୍ଚାରିତ ହୋଇଛି । "ନାନା ଧର୍ମ, ନାନା ଶାସ୍ତ୍ର, ନାନା ଦରଶନେ/ପଢ଼ି ମୋର ଭ୍ରାନ୍ତି କଲି ମୋର ଶିରେ ॥ କସ୍ତୁରିକା ମୃଗସମ ଭ୍ରାନ୍ତ ଅନ୍ୱେଷଣ/କରି ମୁଁ ଫେରିଛି ଶେଷେ ତୁମ୍ଭ ସନ୍ନିଧିରେ"—ଅକ୍ଷତ (ଏକ ଓ ବହୁ—ଗ୍ରନ୍ଥାବଳୀ ପୃ-୨୯୦ । )

"କବି ମାନସିଂହଙ୍କ କାବ୍ୟସ୍ୱରର ଏଇ ଯେ ପରିବର୍ତ୍ତିତ ତାହା ବହୁମାତ୍ରାରେ ରବୀନ୍ଦ୍ରନାଥଙ୍କ ଚିନ୍ତାଧାରା ଦ୍ୱାରା ପରିପୁଷ୍ଟ ହୋଇଛି । × × ରବୀନ୍ଦ୍ରନାଥଙ୍କ ଅଧ୍ୟାତ୍ମ ଚିନ୍ତାରେ ଯେଉଁ ରହସ୍ୟବାଦୀ ଉପାଦାନ ପରିଲକ୍ଷିତ ହୁଏ ; ବାସ୍ତବ ଜୀବନର ପ୍ରାତ୍ୟହିକ ପ୍ରସଙ୍ଗରେ ତାର ଯାଥାର୍ଥ୍ୟ ସୁସ୍ପଷ୍ଟ । × × ମାନସିଂହ କାବ୍ୟ କବିତାର ଉଚ୍ଛଳ ପ୍ରଣୟସୂଚକ ଚେତନା ଓ ଅନୁସଙ୍ଗଠାରୁ ଅକ୍ଷତ, ଜୀବନଚିନ୍ତା ଓ ଈଶ୍ୱର ଅସ୍ତିତ୍ୱ ଚିନ୍ତାରାଜି ମଧ୍ୟରେ ମସୃଣ ତୁଳନା କଲିଦେଲେ ନିରପେକ୍ଷ ସମାଲୋଚକ ମାନସିଂହଙ୍କ ଚିନ୍ତାଧାରାର ଏହି ପର୍ଯ୍ୟାୟରେ ରବୀନ୍ଦ୍ର ଚେତନାର ସଂକ୍ରମଣକୁ ନିଶ୍ଚିତ ଭାବେ ସ୍ୱୀକାର କରିବେ କାରଣ ଏହି ଛୋଟୋଟି ପୁସ୍ତକରେ ଶତାଧିକ ସନେଟ୍ ଓ ଆଧିଭୌତିକ ଅନୁଚିନ୍ତା ମଧ୍ୟରେ କବି ମାନସିଂହଙ୍କ ମୌଳିକତା ବହୁଭାବରେ କ୍ଷୁର୍ଣ୍ଣ ହୋଇଛି ।" (୫୩)

ମାନସିଂହଙ୍କ ପରବର୍ତ୍ତୀ ପର୍ଯ୍ୟାୟର କାବ୍ୟସାଧନା ବୌଦ୍ଧଧର୍ମ ପ୍ରତି ଆକୃଷ୍ଟ ହୋଇଥିବାର ଦେଖାଯାଏ । ଏହି ପର୍ଯ୍ୟାୟରେ ମାନସିଂହ ନିଜକୁ ନିରୀଶ୍ୱରବାଦୀ ବୋଲି ପ୍ରମାଣ କରିବାକୁ ଉଦ୍ୟମ କରିଛନ୍ତି । ତାଙ୍କ ପୂର୍ବ ରୋମାଣ୍ଟିକ୍ ଚେତନାର ସୌକୁମାର୍ଯ୍ୟ କ୍ରମଶଃ କ୍ଷୁର୍ଣ୍ଣ ହୋଇଛି । ନିଜ ସମ୍ପର୍କରେ ସେ ଯୁକ୍ତି ବାଢ଼ି କହିଛନ୍ତି—"ଏବେ ମୁଁ ବହୁକାଳଧରି ଅପୌତ୍ତଳିକ । ହିନ୍ଦୁ ଦେବଦେବୀଙ୍କର ପ୍ରତିମାକୁ ମୁଁ ନମସ୍କାର କରେନା । ମୋର ବର୍ତ୍ତମାନର ବଦ୍ଧ ଧାରଣା ଯେ ଏଇ ଅପୌତ୍ତଳିକତା ଓ ବ୍ରାହ୍ମଣନିର୍ଭର ସାମାଜିକ ଜୀବନ ପରିତ୍ୟାଗ ନ କଲେ ସାମାଜିକ ଭାବରେ ହିନ୍ଦୁ ସମାଜ କେବେହେଲେ ସଭ୍ୟ ବା ଉନ୍ନତ ହୋଇପାରିବ ନାହିଁ ।" (୫୪)

---

(୫୨) ମୁଖବନ୍ଧ, ଅକ୍ଷତ—ଡଃ ମାୟାଧର ମାନସିଂହ, ଗ୍ରନ୍ଥାବଳୀ, ପୃ-୨୮୯
(୫୩) ସବୁଜରୁ ସାଂପ୍ରତିକ—ଡଃ ନିତ୍ୟାନନ୍ଦ ଶତପଥୀ, ପୃ-୧୪୦ ।
(୫୪) ମୁଁ କାହିଁକି ଲେଖେଁ—'ଡଗର' ୧୪/୧ ସଂଖ୍ୟା । ୧.୭.୭୫

୧୯୪୭ଠାରୁ ୧୯୬୦ ମଧ୍ୟରେ ରଚିତ ସମସାମୟିକ ପତ୍ରିକାମାନଙ୍କରେ ପ୍ରକାଶିତ କେତେକ କବିତା 'ବନ୍ଧୁ ଓ ସିନ୍ଧୁ' (୧୯୬୨) ନାମରେ ଗ୍ରନ୍ଥାବଳୀରେ ସନ୍ନିବେଶିତ ହୋଇଛି । ସେଥିରେ 'ପତିତପାବନ ବୁଦ୍ଧ', 'ବୁଦ୍ଧଂ ଶରଣଂ ଗଚ୍ଛାମି' ଏବଂ 'ଭେଟିବି' ଆଦି କବିତାଗୁଡ଼ିକରେ ଦାର୍ଶନିକତା ପରିସ୍ଫୁଟ ହୋଇଛି । "ସନ୍ଧ୍ୟାସକାଳେ ସଙ୍ଘେ ବିହାରେ ନିମଗ୍ନ ଯେବେ ଧ୍ୟାନେ/ତଥାଗତବାଣୀ ଅମୃତୋପମ ବାଜୁଥାଏ କାନେ କାନେ"—(ବୁଦ୍ଧଂ ଶରଣଂ ଗଚ୍ଛାମି—ସିନ୍ଧୁ ଓ ବନ୍ଧୁ—ଗ୍ରନ୍ଥାବଳୀ, ପୃ-୫୧୭) । 'ସେହି ହିଁ ଈଶ୍ୱର ମୋର ସେହି ମୋର ଆଶ୍ୱାସ', 'ଦୁଃଖ ଦିଅ ବିପଦ ଦିଅ ଯାତନା କେବଳ ଅନ୍ଧକାରେ' ପ୍ରଭୃତି କବିତାରେ ଦାର୍ଶନିକତା ଓ ଆଧ୍ୟାତ୍ମିକତା ମଧ୍ୟରେ ପ୍ରାଣ ପ୍ରାଚୁର୍ଯ୍ୟର ଅଭାବ ପରିଲକ୍ଷିତ ହେଲେ ମଧ୍ୟ ମାନସିଂହଙ୍କର ଏହି ପରିଣତ କାବ୍ୟମାନସ ଭିତରେ ଏକ ସ୍ୱାତନ୍ତ୍ର୍ୟର ଗନ୍ଧ ବାରି ହୋଇଥାଏ ।

ସ୍ୱରାଜ୍ୟାଶ୍ରମ (୧୯୫୨-୫୭), କିଶୋର କବିତା ଏବଂ ଗୀତରେଣୁ—ବିଭିନ୍ନ ସମୟରେ ଲିଖିତ । (୧୯୫୨-୧୯୫୭) କବିତାଗୁଡ଼ିକ ସ୍ୱରାଜ୍ୟାଶ୍ରମ ନାମରେ ପ୍ରସିଦ୍ଧ । ଏଥିରେ 'ସ୍ୱରାଜ୍ୟାଶ୍ରମ, ବନ୍ୟା ଓ ଗୋପବନ୍ଧୁ, ଯଦୁସ୍ୱାଇଁ ଗାଥା, କଟକ ମ୍ୟୁନିସିପାଲିଟି ଏବଂ ଅହଲ୍ୟା ପ୍ରଧାନ' ଆଦି କବିତାଗୁଡ଼ିକରେ କବି ହୃଦୟର ବିଭିନ୍ନ ଅଭିବ୍ୟଞ୍ଜନା ଚିତ୍ରିତ ହୋଇଛି । କବି ଶିକ୍ଷକ ଥିବା ସମୟରେ ଓଡ଼ିଆ ସାହିତ୍ୟରେ ଏକ ଆଦର୍ଶ ପାଠ୍ୟପୁସ୍ତକ ଲେଖିବା ପାଇଁ ଚେଷ୍ଟା କରିଥିଲେ । ସେଥିପାଇଁ ଏହି କିଶୋର କବିତାର ପରିକଳ୍ପନା । "ଏଥିରୁ ଅଧିକାଂଶ ଅତି ପ୍ରାଚୀନ । 'ସେଦିନର କବିତା'ରେ ଏମାନଙ୍କର ସ୍ଥାନ ଥିବା ଉଚିତ ଥିଲା । କିନ୍ତୁ କେବଳ ସମଶ୍ରେଣୀକତା ପାଇଁ ଏଗୁଡ଼ିକ ଏକତ୍ର ଭିନ୍ନ ଆକାରରେ ଓ ନୂତନ ନାମ ଦେଇ ଠିଆ କରିଗଲା ।" (୫୫)

'କିଶୋର କବିତା'ର ବିଭିନ୍ନ କବିତାଗୁଡିକ ଭିନ୍ନ ଭିନ୍ନ ରାଗିଣୀରେ ଅନୁରଣିତ । ଦଶେଟି ଗୀତ, ବୋଉ, ଆମ ଗାଆଁ ବୁଢ଼ୀ, ରେଲ୍‌ଗାଡ଼ି, ଉଡ଼ିଯାଏ ଗେଣ୍ଡାଳିଆ ପଡ଼ିଯାଏ ଗୁଡ଼ି ଆଦି କବିତାଗୁଡ଼ିକ ଓଡ଼ିଆ ଶିଶୁ ସାହିତ୍ୟରେ ଗୋଟିଏ ଗୋଟିଏ ଅମୂଲ୍ୟ ମଣି । 'ଗୀତରେଣୁ'ର ପ୍ରତ୍ୟେକ କବିତା ସରଳ ଶିଶୁ ପ୍ରାଣରେ ଅଧ୍ୟାତ୍ମ ଭାବ ଉଦ୍ରେକ କରିବା ନିମନ୍ତେ ସାହାଯ୍ୟ କରିବ । ଯେପରି "ହେ କରୁଣ ପିତା', 'ଦରଶନ ଦିଅ', 'ମହାଜୀବନ' ଆଦି କବିତାଗୁଡ଼ିକ ସରଳ କିଶୋର ହୃଦୟରେ ଗଭୀର ଛାପ ପକାଇଥାଏ ; ସେହିପରି ଭକ୍ତିରସରେ ରସାଣିତ କରିଥାଏ । ଏସବୁ କବିତାର ସାଙ୍ଗୀତିକ ମୂଲ୍ୟ ଅନସ୍ୱୀକାର୍ଯ୍ୟ ।

●

---

(୫୫) କିଶୋର କବିତାର ମୁଖବନ୍ଧ—ଡଃ ମାୟାଧର ମାନସିଂହ ।

# ତୃତୀୟ ପରିଚ୍ଛେଦ

## ମାନସିଂହଙ୍କ କବିତାରେ ରୋମାଣ୍ଟିକ୍ ଚେତନା

"କବି ମାନସିଂହ ଥିଲେ ସେଇ ମୁହୂର୍ତ୍ତ ଯାହା ଏକ ଐଶ୍ୱର୍ଯ୍ୟମୟ ଅତୀତକୁ ଏକ ବିଚ୍ଛିନ୍ନ ଦୂରତ୍ୱରୁ ନିରୀକ୍ଷଣ କରିବାର ଆନନ୍ଦ ଓ ଅଭିମାନରେ ପୂର୍ଣ୍ଣ ; ଅଥଚ ଯାହା ବର୍ତ୍ତମାନର ଯନ୍ତ୍ରଣା ଓ ଜଟିଳତାରୁ ଯଥାସମ୍ଭବ ବିଚ୍ଛିନ୍ନ ହୋଇ ରହିବାକୁ ନିଜର କାବ୍ୟଧର୍ମ ବୋଲି ମନେକରି ଆସିଛି × × × ସମକାଳୀନ ଫକ୍ନରଙ୍କ ପରି ସେ ମଧ୍ୟ ବେଳେ ବେଳେ ଚିତ୍କାର କରି ଉଠିଛନ୍ତି—We have all failed to match our dreams in perfections, ମାତ୍ର ସେ ଚିତ୍କାର ଏକ ରୋମାଣ୍ଟିକ୍ ଯନ୍ତ୍ରଣାର ଧ୍ୱନି ମାତ୍ର ; ବିଦ୍ରୋହର ଉଚ୍ଚାରଣ ନୁହେଁ । ସେଇ ବୋଧହୁଏ ଆମ ଯୁଗର ସର୍ବଶେଷ ଏବଂ ସର୍ବଶ୍ରେଷ୍ଠ ରୋମାଣ୍ଟିକ୍ ଅଥଚ ସବୁଜର ଧୂଆଁଳିଆ ବାଷ୍ପୀୟ ମଣ୍ଡଳ ଭିତରେ ସେଇ ପ୍ରଥମେ ଓଡ଼ିଶା ମାଟିର ଗନ୍ଧ ଆଣିଦେଇପାରିଥିଲେ ।" (୧)

ମାନସିଂହଙ୍କ ସୃଷ୍ଟି ସମ୍ପଦ ଏତେ ବିପୁଳ ଏବଂ ସୁପ୍ରସାରିତ ଯେ ବେଳେ ବେଳେ ଗଭୀର ସମ୍ବେଦନାରେ ପ୍ରାଣକୁ ସ୍ପର୍ଶକରି ଦେଇଯାଏ । ଏହି କବିତା-ଗୁଡ଼ିକରେ ପ୍ରକୃତିପ୍ରୀତି, ସୌନ୍ଦର୍ଯ୍ୟ ଚେତନା, ଅତୀନ୍ଦ୍ରିୟ ଚେତନା, ଜାତୀୟତାବୋଧ ଆଦି ବିଭିନ୍ନ ବିଭବଗୁଡ଼ିକ ପ୍ରଚୁର ରୋମାଣ୍ଟିକ୍ ପ୍ରବଣତାରେ ପରିପୂର୍ଣ୍ଣ । ଏହି ରୋମାଣ୍ଟିକ୍ ଚେତନା ପ୍ରତ୍ୟେକ କଳାକାରର ଏକ ସ୍ୱତନ୍ତ୍ର ଚିତ୍ତବୃତ୍ତିର ପରିଚାୟକ । ରୋମାଣ୍ଟିକ୍ ତତ୍ତ୍ୱ ଅତି ବଳିଷ୍ଠ ଭାବରେ ସର୍ବଦା ଘୋଷଣା କରେ ଯେ କଳା ବା କବିତା ଏକ ସ୍ୱାଧୀନ ସୃଷ୍ଟି । ଜର୍ମାନ୍ କବି ଗେଟେଙ୍କ ମତରେ "ରୋମାଣ୍ଟିକ୍ ଚେତନା ଏକ ରୁଗ୍ଣ ମାନସିକତା ଓ କ୍ଲାସିକ୍ ଚେତନା ସ୍ୱାସ୍ଥ୍ୟର ଲକ୍ଷଣ ।" ରୋମାଣ୍ଟିକ୍ କଥାବସ୍ତୁ ଅଖ୍ୟାତନାମା ଦେଶର ଦୃଶ୍ୟ ଓ ସଂସ୍କୃତି ; ମଧ୍ୟଯୁଗର ଚିତ୍ର, ଜାତିର ଐତିହ୍ୟ, ସ୍ଥାନୀୟ ପରିବେଶ,

---

(୧) ମାନସିଂହ ପରିକ୍ରମା—(କବି ମାୟାଧର ମାନସିଂହ ଏକ ସ୍ୱପ୍ନ ପ୍ରୟାଣ) ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ—ପୃ-୧୪୬ ।

ଅପ୍ରାକୃତିକତା, ଅତି ଲୌକିକତା, ଧ୍ୱଂସ, ରାତି, ମୃତ୍ୟୁ, ପ୍ରଲମ୍ବିତ ସ୍ୱପ୍ନ ଓ ଅବଚେତନ ମନର ଚିତ୍ରାଙ୍କନ । ଅଶ୍ରୁସ୍ନାତ ମୁହୂର୍ତ୍ତ ମଧ୍ୟରେ ପ୍ରାପ୍ତ ଆବଦ୍ଧ । ରୋମାଣ୍ଟିକ୍ କବି ସାଧାରଣତଃ ବ୍ୟକ୍ତିକୈନ୍ଦ୍ରିକ ଏବଂ ବିଷାଦବାଦୀ । ଯୁକ୍ତି ଅପେକ୍ଷା ଆବେଗ ଓ ଉଚ୍ଛ୍ୱାସକୁ ସେ ଅଧିକ ପ୍ରାଧାନ୍ୟ ଦେଇଥାଆନ୍ତି । ଫଳତଃ ରୋମାଣ୍ଟିକ୍ କବିତାରେ ଦିବାସ୍ୱପ୍ନ, ଚନ୍ଦ୍ରାଧାରର ଅସ୍ପଷ୍ଟତା ଓ ଅଫଲଗ୍ନତା ଅନେକ ସମୟରେ ପରିଲକ୍ଷିତ ହୋଇଥାଏ ।

ଫରାସୀ କବି ବୋଦ୍‌ଲେୟାର (Boudelaire) ରୋମାଣ୍ଟିକ୍ ଚେତନାର ସର୍ବକାଳୀନତାକୁ ସ୍ୱୀକାର କରି ତାର ଆଧୁନିକ ପ୍ରାଣସତ୍ତ୍ୱକୁ ନିମ୍ନମତେ ଚିହ୍ନାଇଛନ୍ତି—"Romanticism, for me the most recent, the most upto date expression of the beautiful. Romanticism will not consist of perfect execution but of a conception analogous to the morality of this country. Whoever speaks of romanticism means spirituality, colour, asportadion towards the infinite." ସୌନ୍ଦର୍ଯ୍ୟ, କାରୁଣ୍ୟ ଓ ଅସୀମର ଦ୍ୟୋତନା ସହ ରହସ୍ୟାଚ୍ଛନ୍ନ ଆନନ୍ଦାନୁଭୂତିର ପ୍ରାଧାନ୍ୟ ରୋମାଣ୍ଟିକ୍ ଚେତନା ଦ୍ୱାରା ସୂଚିତ ହୁଏ । ରୋମାଣ୍ଟିକ୍ ଦୃଷ୍ଟିଭଙ୍ଗୀ ମଧ୍ୟଦେଇ ଆନ୍ତରିକତା ମଧ୍ୟରେ ଆଶାବାଦ ଓ ପ୍ରେମାବେଗର ବିମୋଚନ ଘଟିଥାଏ । ତେଣୁ ଆଲୋଚକ କାର୍ଲାଇଲ ଯଥାର୍ଥରେ କହନ୍ତି "Romanticism is the star what weeps, it is the wind that wails, it is the night that shudders, the bird that flies and the flower that breathes perfume, it is the sudden gush, ecstasy grown faint, the cistern beneath the palmes, rosy hopes with her thousand loves, the angel and the pearl, the white robe of the willows. It is the infinite and the starry."

କେତେକ ସମାଲୋଚକ ରୋମାଣ୍ଟିକ୍ ଚେତନାକୁ ଏକ ନିମ୍ନତର ସାହିତ୍ୟିକ ବିଭବରୂପେ, ଏକ ଶିଥିଳ କାବ୍ୟଦୃଷ୍ଟି ରୂପେ ବର୍ଣ୍ଣିତ କରିଛନ୍ତି । ସୃଷ୍ଟିଶୀଳତା ଓ ରୋମାଣ୍ଟିକ୍ ଦୃଷ୍ଟିଭଙ୍ଗୀ ଏପରି ପରସ୍ପର ସହ ଜଡ଼ିତ ଯେ ଗୋଟିକୁ ଅନ୍ୟଠାରୁ ଭିନ୍ନକରି ଦେଖିବା ସମ୍ଭବ ନୁହେଁ । ରୋମାଣ୍ଟିକ୍‌କୁ ବର୍ଜନ କରି

*

କ୍ଲାସିକ ନିଷ୍ପ୍ରାଣ ଏବଂ କ୍ଲାସିକକୁ ପରିତ୍ୟାଗ କରି ରୋମାଣ୍ଟିକ୍ ନିରର୍ଥକ । ଦୃଷ୍ଟିଭଙ୍ଗୀର ସ୍ୱାତନ୍ତ୍ର୍ୟ ରୋମାଣ୍ଟିକ୍ କବିର ଅନ୍ୟତମ ବୈଶିଷ୍ଟ୍ୟ । ଦୃଷ୍ଟିଭଙ୍ଗୀର ସ୍ୱତନ୍ତ୍ରତା କବିର କଳ୍ପନାଶକ୍ତି ଓ ଚିତ୍ତବୃତ୍ତି ଦ୍ୱାରା ନିର୍ଣ୍ଣୀତ ହୋଇଥାଏ । ଏ ଶତାବ୍ଦୀର ବିଶ୍ୱବିଖ୍ୟାତ ଆଧୁନିକ ବାସ୍ତବବାଦୀ କବି (T. S. Eliot) ରୋମାଣ୍ଟିକ୍ ଚେତନାକୁ ଗୁରୁତ୍ୱ ଦେଇ ନ ଥିଲେହେଁ ସୃଜନଶୀଳତା ସମ୍ପର୍କରେ ତାଙ୍କର ନିମ୍ନୋକ୍ତ ବକ୍ତବ୍ୟରୁ ରୋମାଣ୍ଟିକ୍ ଚେତନାର ଅପରିହାର୍ଯ୍ୟତା ଅନୁମିତ ହୋଇଥାଏ, "for my meaning is, that the poet has, not a personality to express, but a particular medium, which is only a medium and not a personality, in which impressions and experiences combine in particular and unexpected ways" (Tradition and the individual talent"—Three Essays of T. S. Eliot—Edited by Prof. Shiv K. Kumar, Page-23)

ସୃଷ୍ଟିଶୀଳତା ସହ ରୋମାଣ୍ଟିକ୍ ଚିତ୍ତବୃତ୍ତିର ଅପରିହାର୍ଯ୍ୟ ଏକାତ୍ମତାରୁ ସ୍ପଷ୍ଟ ଅନୁମିତ ହୁଏ ଯେ ସୃଷ୍ଟିମାନେ ହିଁ ଏହି ଚିତ୍ତବୃତ୍ତି ସହ ସମ୍ପର୍କିତ । ରୋମାଣ୍ଟିକ୍ ଚେତନା ଆଧୁନିକ ଅର୍ଥରେ ୟୁରୋପୀୟ ଊନବିଂଶ ଶତକର ପ୍ରଥମାର୍ଦ୍ଧର ସାହିତ୍ୟ ସୃଷ୍ଟି କିମ୍ବା ଓଡ଼ିଆ ସାହିତ୍ୟରେ ଏହି ଅଷ୍ଟାଦଶ ଶତକର ଶେଷଭାଗରୁ ବିଂଶ ଶତକର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ସାହିତ୍ୟ ସୃଷ୍ଟିକୁ ମୁଖ୍ୟତଃ ବୁଝାଉଥିଲେହେଁ ଏହି ସମୟର ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ କାଳର ସୃଷ୍ଟିରେ ମଧ୍ୟ ରୋମାଣ୍ଟିକ୍ ଚିତ୍ତବୃତ୍ତି ପ୍ରତିଫଳିତ ହୋଇଥିବା ଲକ୍ଷ୍ୟ କରାଯିବ । ପ୍ରଚଳିତ ଧାରାକୁ ଭଙ୍ଗ କରି ଓଡ଼ିଆ କାବ୍ୟ ସାହିତ୍ୟକୁ ନୂତନ ଭାବରେ ସ୍ପନ୍ଦିତ କରିଥିବା କବି ରାଧାନାଥ ରାୟ ରୋମାଣ୍ଟିକ୍ କାବ୍ୟ କବିତାର ପଥପ୍ରଦର୍ଶକ । ସତ୍ୟବାଦୀ ଯୁଗର କବିମାନେ ଯେତେବେଳେ ଜାତିପାଇଁ, ଦେଶପାଇଁ ଉଦ୍‌ବୁଦ୍ଧ ; ସେତେବେଳେ ସବୁଜ କବିମାନେ ସ୍ୱପ୍ନ ଏବଂ କଳ୍ପନା ମଧ୍ୟରେ ଆତ୍ମମଗ୍ନ ହୋଇ ପ୍ରତ୍ୟେକେ ନିଜସ୍ୱ ରୁଚି ଓ ଭାବରେ ରୋମାଣ୍ଟିକ୍ କାବ୍ୟ କବିତାକୁ ପରିସ୍ଫୁଟ କରିଛନ୍ତି । ଏମାନଙ୍କ କବିତାରେ ପ୍ରକୃତି ପ୍ରୀତି, ସ୍ୱଦେଶ ପ୍ରେମ ଏବଂ ଆତ୍ମକେନ୍ଦ୍ରିକ ବ୍ୟକ୍ତିଗତ ପ୍ରେମ ସମ୍ପର୍କୀୟ ଅନୁଭୂତିର ଅଭିନବ ରୂପାୟନ ଘଟିଛି । ରୋମାଣ୍ଟିକ୍ କବି ରାଧାନାଥଙ୍କ ପୂର୍ବରୁ କୌଣସି କବି ପ୍ରକୃତିଠାରେ ମାନବିକ ସତ୍ତାର ଆରୋପ କରି ନ ଥିଲେ । ଏହା ଥିଲା ନାୟକ ନାୟିକାଙ୍କର ପ୍ରେମର ପୃଷ୍ଠଭୂମି । ପ୍ରଥମେ ତହିଁରେ ଅପୂରନ୍ତ ସୌନ୍ଦର୍ଯ୍ୟ ଓ ପ୍ରାଣସତ୍ତା ସନ୍ଦର୍ଶନ କଲେ କବି

ରାଧାନାଥ । ପ୍ରକୃତି ସହିତ ମଣିଷର ମନର ଅପୂର୍ବ ଯୋଗାଯୋଗ ସ୍ଥାପନ କରିଥିଲେ ଓ ଅନୁଭବ ମାଧ୍ୟମରେ ପ୍ରକୃତିର ବିଭିନ୍ନ ଚିତ୍ର, ବର୍ଷୋତ୍ସବ, ଋତୁଚିତ୍ର ସନ୍ଧ୍ୟା ପ୍ରଭାତ ଆଦିକୁ ନୂତନ ଭାବରେ ପ୍ରକଟିତ କଲେ । ଏହି ପ୍ରକୃତିପ୍ରୀତି ପରବର୍ତ୍ତୀ ସମୟର କବି ମାନସିଂହ, ସଚ୍ଚି ରାଉତରାୟ, ଗଡ଼ନାୟକ ପ୍ରଭୃତିଙ୍କୁ ବହୁଭାବରେ ପ୍ରଭାବିତ କରିଥିବାର ଦେଖାଯାଏ ।

ପ୍ରକୃତିପ୍ରୀତି ପରି ସ୍ୱଦେଶପ୍ରେମ ମଧ୍ୟ ରୋମାଣ୍ଟିକ୍ ଚେତନାକୁ ବହୁଭାବରେ ଅନୁପ୍ରାଣିତ କରିଛି । ରାଧାନାଥୀ କାବ୍ୟ କବିତାରେ ପ୍ରଥମେ ଜାତୀୟ ଚେତନାର ପ୍ରଥମ ସ୍ଫୁରଣ ଘଟିଛି । ସେ ଇଂରାଜୀ ରୋମାଣ୍ଟିକ୍ କବିତା ଦ୍ୱାରା ବହୁଭାବରେ ପ୍ରଭାବିତ ହୋଇଥିବାର ଜଣାଯାଏ । ଅତୀତ ଗୌରବ ପ୍ରତିଷ୍ଠାପନ ଓ ବର୍ତ୍ତମାନର ଅଧଃପତନକୁ ନେଇ ଖେଦ ପ୍ରକାଶ ତାଙ୍କ ଜାତୀୟତାର ପ୍ରାଣସ୍ୱରୂପ । ଏ ଦେଶ ମାଟିରେ ଆଧୁନିକ ଶିକ୍ଷାର ଉତ୍ତରୋତ୍ତର ପ୍ରସାର ଇତିହାସ ଜ୍ଞାନର ବିକାଶ, ସାମାଜିକ ଆନ୍ଦୋଳନ ଇତ୍ୟାଦିରୁ ଜାତୀୟତାବୋଧର ଅଭ୍ୟୁଦୟ ହୋଇଥିଲା । ଦେଶମାତୃକାର ପୂଜା ଏବଂ ତାର ଉନ୍ନତି ନିମନ୍ତେ ରାଧାନାଥଙ୍କର "ଶିବାଜୀଙ୍କର ଉତ୍ସାହବାଣୀ", 'ମହାଯାତ୍ରା' ଅନ୍ତର୍ଗତ । ପଦ୍ମଚରଣ ପଟ୍ଟନାୟକଙ୍କର 'ପଦ୍ମପାଖୁଡ଼ା' କବି ମଧୁସୂଦନ ରାଓ ଓ ମେହେରଙ୍କର ଉତ୍କଳ ସଙ୍ଗୀତ ଓ 'ଉତ୍କଳ ଲକ୍ଷ୍ମୀ' ଆଦି ଉତ୍କଳ ଜନନୀର ସ୍ତୁତିଗାନରେ ମୁଖର । ଦେଶପାଇଁ, ଜାତିପାଇଁ ପ୍ରାଣ ବିସର୍ଜନ କରିବା ଯେ ମାନବର ସର୍ବଶ୍ରେଷ୍ଠ ଅଭିଳାଷ ; ତାହା ରୋମାଣ୍ଟିକ୍ କବିମାନେ ହିଁ ପ୍ରଥମେ ପ୍ରକାଶ କଲେ । ଫକୀରମୋହନଙ୍କର 'ଲାଗ ଲାଗ ଉତ୍କଳ ଯୁବକ', ଗୋପବନ୍ଧୁଙ୍କର 'ଅବକାଶ ଚିନ୍ତା' ଓ 'କାରା କବିତା' ଇତ୍ୟାଦିରେ ଦେଶର ଦୂରବସ୍ଥା ଲାଗି ବିଳାପ ଓ ଦୁଃଖାନୁଭୂତି ସହିତ ଭବିଷ୍ୟତ ନିର୍ମାଣରେ ଆଶାବାଦ ପୋଷଣ କରାଯାଇଛି । ଦେଶାତ୍ମବୋଧର ଉତ୍ତେଜନା ସୃଷ୍ଟିଲାଗି ଇତିହାସ ଗାଥାକୁ ରାଧାନାଥ ପ୍ରଥମେ କାବ୍ୟର ଉପାଦାନ ରୂପେ ବ୍ୟବହାର କଲେ । ଏପରି କବିବିଶ୍ୱାସ ରୋମାଣ୍ଟିକ୍ କଳାସଚେତନତାରୁ ସୃଷ୍ଟ ହୋଇଥିବାର ଜଣାଯାଏ । ରୋମାଣ୍ଟିକ୍ କବିମାନଙ୍କ ଦୃଷ୍ଟିରେ ଇତିହାସ ପରି ପୂର୍ବପୁରୁଷଗଣ ବା ପରମ୍ପରା ମଧ୍ୟ ଜାତୀୟ ଜୀବନର ପ୍ରଗତି ପାଇଁ ପ୍ରେରଣା ହୋଇପାରିଛି । ମାନସିଂହ ମଧ୍ୟ ଏଥିରୁ ବାଦ୍ ଯାଇନାହାନ୍ତି । ତାଙ୍କର ଏକାଧିକ କାବ୍ୟ କବିତାରେ ଏହି ସ୍ୱଦେଶାନୁଚିନ୍ତା ଅନୁରଞ୍ଜିତ ହୋଇଛି ।

ରୋମାଣ୍ଟିକ୍ କବିମାନଙ୍କର କାବ୍ୟ କବିତାରେ ପ୍ରଣୟାନୁଚିନ୍ତା, ଅଧ୍ୟାତ୍ମ ଚେତନାକୁ ବର୍ଜନ କରି ମାନବ ହୃଦୟର ନିଭୃତ ଆବେଗରେ ମଣ୍ଡିତ ହୋଇଛି । ଇଂରାଜୀ ସାହିତ୍ୟ ଅଧ୍ୟୟନ ଫଳରେ ପ୍ରେମଜୀବନର ବିପୁଳତର ଓ ବୈଚିତ୍ର୍ୟମୟ

ପ୍ରକାଶ ପ୍ରତି ଓଡ଼ିଆ କବିମାନେ ଅଧିକ ଶ୍ରଦ୍ଧାଶୀଳ ହୋଇଛନ୍ତି । ବ୍ୟକ୍ତିଗତ ପ୍ରେମାନୁଭୂତି ପ୍ରକାଶ କରିବା ନିମନ୍ତେ ସେମାନେ ଅନ୍ୟକିଛି ମାଧ୍ୟମର ଆବଶ୍ୟକତା ଉପଲବ୍ଧି ନ କରି ପ୍ରତ୍ୟକ୍ଷଭାବେ ନିଜ ଅନୁଭୂତି ପ୍ରକାଶ କରିଛନ୍ତି । ଏହିସବୁ ପ୍ରେମାନୁଭୂତି ଅନେକ ସମୟରେ ବାଇରନ୍, ଶେଲି, କୀଟସ୍‌ଙ୍କ ରୂପତୃଷ୍ଣା ଓ ଇନ୍ଦ୍ରିୟାଶ୍ରୟିତା ସହିତ ଅପୂର୍ବ ସମନ୍ୱୟ ସ୍ଥାପନ କରିଛି । ଓଡ଼ିଆ କବିଙ୍କ ଦୃଷ୍ଟିରେ ପ୍ରେମ ଏକ ସାଧନା । ଆଘାତରେ ଏହାର ବିଲୟ ହୁଏ ନାହିଁ । ସବୁପ୍ରକାର ବ୍ୟର୍ଥତା, ବିଷାଦବୋଧ ଓ ମର୍ମପୀଡ଼ା ଭିତରେ ବି ଏହା ବିରାଜମାନ କରୁଥାଏ । ଏହି ପ୍ରଣୟ ଭାବନାର ଅବିନଶ୍ୱରତା ନନ୍ଦକିଶୋର ଓ ଗୋପବନ୍ଧୁଙ୍କ କବିତାରୁ ଉପଲବ୍ଧି କରାଯାଇପାରେ । ପ୍ରେମ ଚେତନାର ସଞ୍ଚାର ଭୂମିରେ ଇନ୍ଦ୍ରିୟ ଆବେଗ ସହିତ ଆଦର୍ଶ ଓ ଆଧ୍ୟାତ୍ମିକ ପ୍ରଣୟାବେଗର ସମାନ୍ତରାଳ ଗତି ପ୍ରଣୟ ଜିଜ୍ଞାସାର ଆୟତ କ୍ଷେତ୍ରକୁ ପରିବ୍ୟାପ୍ତ କରିଛି । ଏହାର ଉନ୍ମେଷ ଓ ପ୍ରବାହ ଯେ ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ; ଏଥିରେ ସନ୍ଦେହର ଅବକାଶ ନାହିଁ ।

ମାନବ ହୃଦୟର ଗଭୀର ଆବେଗ ସମ୍ବଳିତ ପ୍ରେମ କବିତା ଯେତେବେଳେ ଅଚିନ୍ତ୍ୟମୟ ସତ୍ତାପ୍ରତି ନିବେଦିତ ହୋଇଥାଏ ; ସେଠାରେ ରହସ୍ୟମୟ ଆନନ୍ଦାନୁଭୂତି ଉଦ୍ରେକ ହୋଇଥାଏ । ରହସ୍ୟାନୁଭୂତି ସମ୍ବଳିତ ଓଡ଼ିଆ କବିତା-ଗୁଡ଼ିକ ପାଶ୍ଚାତ୍ୟ ରୋମାଣ୍ଟିକ୍ ରହସ୍ୟବାଦୀମାନଙ୍କ ଦ୍ୱାରା ଅନୁସୃତ ହୋଇଛି । ମାନସିଂହଙ୍କ ଅଧିକାଂଶ କବିତାରେ ଏହି ରହସ୍ୟବାଦୀ ପ୍ରେମ ଚେତନାର ପରିପ୍ରକାଶ ଘଟିଥିବାର ଦେଖାଯାଏ ।

ରୋମାଣ୍ଟିକ ବିଷାଦବାଦ ମଧ୍ୟ ପାଶ୍ଚାତ୍ୟ ସାହିତ୍ୟର ଅନ୍ୟତମ ଅବଦାନ । ଏହି ବିଷାଦ ଭାବ ମଣିଷ ମନର ଏକ ଅବସ୍ଥା । ଏହି ବିଷାଦ ଚେତନା କେବେ ପ୍ରକୃତିଠାରୁ ବିଚ୍ଛେଦଜନିତ ତ କେବେ ଦେଶମାତୃକାର ହୃତ ଗୌରବ ଦର୍ଶନରେ ସୃଷ୍ଟି ହୋଇଥାଏ । କେବେ ପୁଣି ପ୍ରେମାସ୍ପଦର ବିଚ୍ଛେଦରେ ଏବଂ ସାଂସାରିକ ଜୀବନର ଦୁର୍ଦ୍ଦିନ ମଧ୍ୟରୁ ଏହାର ସୃଷ୍ଟି । ତେଣୁ ଏହି ବ୍ୟକ୍ତିଗତ ଅନୁଭୂତିପ୍ରଧାନ ରୋମାଣ୍ଟିକ କାବ୍ୟକବିତାରେ ବ୍ୟକ୍ତିଚେତନାକୁ ଆଚ୍ଛନ୍ନ କରିଥିବା ଏହି ଶକ୍ତିଶାଳୀ ବିଷାଦଭାବ କବିତାର ଉପଜୀବ୍ୟ ରୂପେ ପ୍ରକାଶିତ ହୋଇଛି । ମାନସିଂହଙ୍କ ଅଧିକାଂଶ କବିତାରେ ଏହି ରୋମାଣ୍ଟିକ ବିଷାଦବାଦ ପ୍ରାଧାନ୍ୟ ଲାଭ କରିଛି ।

**(କ) ମାନସିଂହଙ୍କ କବିତାରେ ସ୍ୱଦେଶ ପ୍ରେମ ବା ଜାତୀୟତା-ବୋଧ—**

"ବିଜନ ବେଳା ବିଜନ ବେଳା
କହୁ ନାହୁଁ କାହିଁ ବୋଇତ ଗଲା ବୋଇତ ଗଲା ।"

ସ୍ୱଦେଶପ୍ରେମର ରୋମାଣ୍ଟିକ ଚେତନାଠାରୁ ପଲ୍ଲୀ ଜୀବନର ଅସଂଖ୍ୟ ଭାବାନୁଭୂତି ଏବଂ ଆଧିଭୌତିକ ଅନୁଭବ ମଧ୍ୟରେ ତାଙ୍କ କବିତା ଦୀର୍ଘ ଚାଳିଶବର୍ଷ ଧରି ନୂତନତ୍ୱର ପରିଚୟ ଦେଇଆସିଛି । ସମସାମୟିକ ସବୁଜ କବିମାନେ ସତ୍ୟବାଦୀ ଯୁଗର କାବ୍ୟାଦର୍ଶକୁ ଉପେକ୍ଷା କରିଥିବା ବେଳେ ମାନସିଂହଙ୍କ ସୃଷ୍ଟି ସମ୍ଭାରରେ ଏହା "କୋଣାର୍କ" (୨)ରେ ଜନ୍ମନେଇ କ୍ରମେ ବାରବାଟୀ (୧୯୨୬), ସାଧବଝିଅ (୧୯୨୯), ଉତ୍କଳବନ୍ଦନା (୧୯୩୭) ଆଦି କାବ୍ୟରେ ବିକଶିତ ହୋଇ କମଳାୟନ (୧୯୪୭)ରେ ଏକ ପରିଣତ ରୂପ ଲାଭ କରିପାରିଛି । ଏସବୁ କବିତାରେ ରୋମାଣ୍ଟିକ ଭାବନା ଓ ଜାତୀୟତାବାଦୀ ଚେତନାର ଚମତ୍କାର ସମନ୍ୱୟ ଘଟିଛି । 'ମା ଓଡ଼ିଶା', 'ଉତ୍ତିଷ୍ଠ ଉତ୍କଳ', 'ବନ୍ଦେ ଉତ୍କଳ ଜନନୀ', 'ବୋଇତ ବନ୍ଦାଣ', 'ତଅପୋଇ ବିଳାପ', 'ବିଜୟସ୍ଥଳଲକ୍ଷ୍ମୀ' ଆଦି କବିତାରେ କବିଙ୍କର ସ୍ୱଦେଶପ୍ରେମର ମୁଦ୍ରା ସୁସ୍ପଷ୍ଟ । 'କୋଣାର୍କର ଲାସ୍ୟଲୀଳା' (୧୯୩୫) (୩) 'ମୁମୂର୍ଷୁ କୋଣାର୍କ', (୪) 'ବାରବାଟୀ', (୫) 'ମାଟିବାଣୀ', (୬) 'ସାଧବ ଝିଅ', 'ମହାନଦୀରେ ଜ୍ୟୋତ୍ସ୍ନାବିହାର' (୭) 'ଉତ୍କଳ ବନ୍ଦନା' (୮) ଆଦି କବିତାରେ ରୋମାଣ୍ଟିକ ଅନୁଭବ ସହିତ ଜାତୀୟ ଚେତନାର ଅପୂର୍ବ ସମନ୍ୱୟ ଘଟିଛି । ବାରବାଟୀ ଓଡ଼ିଶାର ଲୁପ୍ତ ଗୌରବର ମୂକସାକ୍ଷୀ । ସେହି ବାରବାଟୀର ପତନରେ କବିଙ୍କର କାବ୍ୟସ୍ୱର ଅତ୍ୟନ୍ତ ବ୍ୟଥାହତ । ଏହି କାବ୍ୟ ପ୍ରତିକ୍ରିୟାର ସ୍ୱାଭାବିକ ପରିଣତି ଭାବେ ସେ ଏତି ଅତୀତର ଗୌରବାବହ ନୌଯାତ୍ରା ପ୍ରସଙ୍ଗକୁ ବାଛି ନେଇଛନ୍ତି ସାଧବ ଝିଅ ସୃଷ୍ଟି ଭିତରେ । "ତେଣୁ ମାନସିଂହଙ୍କ କାବ୍ୟ ଦରବାରରେ ମଧ୍ୟଯୁଗୀୟ ଇତିହାସ ପୁଣି ଥରେ ପୁନରାବୃତ୍ତି ହୋଇଛି । ଯେଉଁ

---

(୨) କୋଣାର୍କ—'ବାରୁଣୀ' ଆଷାଢ଼ ୧୩୩୩ (ଜୁନ୍ ୧୯୨୬) ପ୍ରଥମେ ଲେଖକ 'ଶ୍ରୀ' ଛଦ୍ମ ନାମରେ ପ୍ରକାଶିତ ।

(୩) କୋଣାର୍କର ଲାସ୍ୟଲୀଳା—ସହକାର ୧୭ ଭାଗ—ଭାଦ୍ର, ଆଶ୍ୱିନ—୧୩୪୩, (ଅଗଷ୍ଟ, ସେପ୍ଟେମ୍ବର—୧୯୩୫)

(୪) ମୁମୂର୍ଷୁ କୋଣାର୍କ—ଗ୍ରନ୍ଥାବଳୀ, ପୃ. ୨୫୫

(୫) 'ମାଟିବାଣୀ—ଗ୍ରନ୍ଥାବଳୀ, ପୃ. ୩୧୭ରେ ସଂଯୋଜିତ

(୬) 'ସାଧବ ଝିଅ'—ଉତ୍କଳ ସାହିତ୍ୟ ୩୩/୨ ଜ୍ୟେଷ୍ଠ ୧୩୩୬ (ମେ ୧୯୨୯) ସାଧବ ଝିଅ କାବ୍ୟର ପ୍ରଥମ କବିତା

(୭) ମହାନଦୀରେ ଜ୍ୟୋତ୍ସ୍ନାବିହାର—ଉତ୍କଳ ସାହିତ୍ୟ ୩୩/୭, କାର୍ତ୍ତିକ—୧୩୩୭ ନଭେମ୍ବର—୧୯୨୯

(୮) ବର୍ତ୍ତିକା ୧/୧, ଭାଦ୍ର—୧୩୪୫ (ଅଗଷ୍ଟ—୧୯୩୭) ଉତ୍କଳ ବନ୍ଦନା

ସାଧବ ଝିଅକୁ ଶିଳ୍ପୀ ତାର ତୁଳୀ ସ୍ପର୍ଶରେ ଅମର କରିଥିଲା; ସେଇ 'ସାଧବ ଝିଅ' ମାନସିଂହଙ୍କ ଅମର ଲେଖନୀରେ ମୂର୍ତ୍ତିମନ୍ତ ବିଗ୍ରହ ଲାଭ କଲା । ସୌନ୍ଦର୍ଯ୍ୟର କବି ମାନସିଂହ ରୋମାଣ୍ଟିକ କଳ୍ପନା ବିଳାସୀ ହୋଇ ମଧ୍ୟ ସବୁଜ କବିମାନଙ୍କ ପରି ଜାତୀୟ ଜୀବନର ସମସ୍ୟାକୁ ଉପେକ୍ଷା କରିନାହାନ୍ତି । କାବ୍ୟଗୁଡ଼ିକର ବାହ୍ୟରୂପ ପ୍ରେମ, ପ୍ରଣୟମୂଳକ ହେଲେ ହେଁ ତାହାର ଅନ୍ତଃସ୍ୱର ଜାତୀୟପ୍ରୀତିରେ ଉଚ୍ଛଳ ।" ସେ ସବୁବେଳେ ଓଡ଼ିଶାର ଐତିହ୍ୟ ପ୍ରତି ସଚେତନ ହୋଇ ଉଠିଛନ୍ତି । ଏହି ଉତ୍କଳୀୟ ପ୍ରୀତିରୁ ଜନ୍ମ ନେଇଛି 'ସାଧବ ଝିଅ' 'ଜେମା' ପରି କେତୋଟି ଚରିତ୍ର । ଓଡ଼ିଶା ମାଟିରେ ଏମାନଙ୍କ ସୃଷ୍ଟି । କାଳ୍ପନିକ ହେଲେ ମଧ୍ୟ ଏମାନେ ଯେପରି ଓଡ଼ିଶାର ପାଣି ପବନ ସହିତ ଓତପ୍ରୋତ ଭାବେ ଜଡ଼ିତ ରହିଛନ୍ତି । 'ସାଧବ ପୁଅ', 'ମାଳୁଣୀ', 'ମାଳା ଗ୍ରହଣ' ଆଦି ଅଧ୍ୟାୟଗୁଡ଼ିକ କବିତାକାରରେ ଲିଖିତ ହୋଇ ମାନସିଂହଙ୍କ ରୋମାଣ୍ଟିକ ଚେତନାର ପ୍ରକାଶ ଘଟାଇଛି । ସାଧବ ଝିଅ ମାନସିଂହଙ୍କର ଦେଶପ୍ରୀତିର କାବ୍ୟ, ଜୀବନାନୁଭୂତିର କାବ୍ୟ । ରୋମାଣ୍ଟିକ ଚେତନାର କାବ୍ୟ । "କୋଣାର୍କଠାରୁ ସାଧବ ଝିଅ ପର୍ଯ୍ୟନ୍ତ ତାଙ୍କର ଏହି କାବ୍ୟମାନସରେ ରୋମାଣ୍ଟିକ ଓ ଜାତୀୟତାବାଦୀ ଚେତନାର ଚମତ୍କାର ସହାବସ୍ଥାନ ଦେଖିବାକୁ ମିଳେ । ପ୍ରଥମ ଚେତନାଟି ତାଙ୍କ କାବ୍ୟର ଆଭିମୁଖ୍ୟ ହେଲେ ଅନ୍ୟଟି ଏହାର ପରିପ୍ରକାଶ ମାତ୍ର ।" (୯) ବେଳେବେଳେ ରୋମାଣ୍ଟିକ କବି ମାନସିଂହ ଅତୀତ ପ୍ରତି ଭାବପ୍ରବଣ ହୋଇପଡ଼ିଛନ୍ତି । "ମହାନଦୀରେ ଜ୍ୟୋତ୍ସ୍ନାବିହାର"ରେ ଏହି ପ୍ରବଣତା ଅଧିକ ଅନୁରଣିତ ହୋଇ-ଉଠିଛି ।(୧୦)

---

(୯) ସବୁଜରୁ ସାମ୍ପ୍ରତିକ—ଡ଼ଃ ନିତ୍ୟାନନ୍ଦ ଶତପଥୀ—ପୃ. ୧୬୪

(୧୦) ହାୟରେ ଉତ୍କଳଭୂମି ପ୍ରକୃତି ସୁନ୍ଦର
ମନ୍ଦାକିନୀ ସମନଦୀ ଶିବସମ ଗିରି
କାନନେ କେଦାରେ ଲକ୍ଷ୍ୟ ଶୋଭାର ବନ୍ଦର
ଥାଉଁ ତୋର କହି କିମ୍ପା ଏତେ ହତଶ୍ରୀ ।
ଏ ସ୍ୱର୍ଗ ସୁଷମା ଯାର କରିବ ବିଶ୍ୱାସ
କେମନ୍ତେ କହିଲେ ତାର ଅନ୍ତର ଅଭାବ
ସୁରସମ ମୁଗ୍‌ଧ କରେ ଯା ନିଃଶ୍ୱାସୁ
ତାଦେହେ ସମ୍ଭବ କାହୁଁ ଦୁର୍ଦ୍ଦିନ ଅଭାବ ।

ମହାନଦୀରେ ଜ୍ୟୋତ୍ସ୍ନାବିହାର—ଗ୍ରନ୍ଥାବଳୀ—ପୃ. ୩୧୨

ସେତେବେଳେ ଓଡ଼ିଶାରେ ବିଚ୍ଛିନ୍ନାଞ୍ଚଳର ମିଶ୍ରଣ ପାଇଁ ଜାଗରଣ ସୃଷ୍ଟି ହୋଇଥିଲା । କବି ନିଜେ ଏହି ଆନ୍ଦୋଳନର ପୁରୋଧାମାନଙ୍କ ଦ୍ୱାରା ପ୍ରଭାବିତ ହେବାକଥା ତାଙ୍କ 'ଶିକ୍ଷାବିତ୍ତର ଗାଥା'ରେ ପ୍ରକାଶ କରିଛନ୍ତି । "ସେଇଠି ପ୍ରଥମେ ମଧୁବାବୁଙ୍କୁ ଦେଖିଲି, ଦେଖିଲି ଗୋପବନ୍ଧୁଙ୍କୁ, ଦେଖିଲି ସତ୍ୟବାଦୀର ବରେଣ୍ୟ ଶିକ୍ଷକବୃନ୍ଦଙ୍କୁ । ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ ଓ କୃପାସିନ୍ଧୁଙ୍କୁ— ୧୧, ୧୨ ବର୍ଷ ବାଳକର ଅନ୍ତରତମ ଗହନ ତଳେ ହୁଏତ ସ୍ୱପ୍ନ ଗଜୁରି ଉଠିଥିବ ଏଇମାନଙ୍କ ପରି ଜଣେ ହେବାକୁ । × × ଜାତୀୟ ଜୀବନର ପୁଣ୍ୟ ସ୍ରୋତରେ ପୂର୍ଣ୍ଣ ଅବଗାହନର ଆଶା । (୧୧)

ଜନ୍ମଭୂମି ପ୍ରତି କବିଙ୍କର ଅନ୍ତରଙ୍ଗ ଅନୁଭବ ତାଙ୍କୁ ପଲ୍ଲୀ ଜୀବନ ପ୍ରତି ଶ୍ରଦ୍ଧାଶୀଳ କରାଇଛି । ପଲ୍ଲୀର ଅଗଣିତ ସୁଖ ଦୁଃଖ, ହସ କାନ୍ଦ ତାଙ୍କ ଲେଖନୀରେ ମହିମାମୟ ହୋଇଉଠିଛି । 'ରେଙ୍ଗୁନ ଚିଠି', 'ପଲ୍ଲୀସନ୍ଧ୍ୟା', 'ବର୍ଷାସନ୍ଧ୍ୟା', 'ଘରପଣା', 'ଖଳଲକ୍ଷ୍ମୀ', 'କଣ୍ଟକାଚ', 'ନଷ୍ଟପଲ୍ଲୀ' ଆଦି 'ମାଟିବାଣୀ'ର ପ୍ରକାଶିତ କବିତାଗୁଡ଼ିକରୁ ତାଙ୍କ ପଲ୍ଲୀପ୍ରୀତି ଷ୍ପଷ୍ଟ ହୋଇଉଠେ । 'ମାଟିବାଣୀ' କବିତା ସଙ୍କଳନରେ କବିଙ୍କର ଜନ୍ମମାଟି ପ୍ରତି ପ୍ରୀତି ପ୍ରକଟିତ ହୋଇପାରିଛି ।

ସ୍ୱଭାବକବି ଗୋପାଳକୃଷ୍ଣ, ଭଗବତୀ ଚରଣ ପାଣିଗ୍ରାହୀ, ରାଜକୁମାରୀ ଶୁଭେନ୍ଦ୍ର ଏବଂ ରାଧାନାଥ ପ୍ରଭୃତି ବ୍ୟକ୍ତିତ୍ୱ ପ୍ରତି ତାଙ୍କର ସମ୍ମାନବୋଧ ସ୍ୱଦେଶ ପ୍ରୀତିର ଅନ୍ୟତମ ନିଦର୍ଶନ । ଉତ୍କଳମଣି ଗୋପବନ୍ଧୁ, ମହାତ୍ମା ଗାନ୍ଧୀ ପ୍ରଭୃତି ବ୍ୟକ୍ତିତ୍ୱ ପ୍ରତି କବିଙ୍କର ସମ୍ମାନବୋଧ ବିପୁଳ । ସ୍ୱର୍ଗାଦପି ଗରୀୟସୀ ତାଙ୍କର ଜନ୍ମଭୂମି । ଯୁଗେ ଯୁଗେ ଏ ଜାତି ବୀର ଏବଂ ସାଧକମାନଙ୍କର ପୂଜା କରି ଆସିଛି । (୧୨) ବାପୁ ତର୍ପଣ କବିତାରୁ କବିଙ୍କର ମହାଭାରତୀୟ ଜାତୀୟତା ଅଧିକ ସ୍ପଷ୍ଟ ହୋଇଉଠେ । (୧୩) ଅସ୍ପୃଶ୍ୟ ମନର ଦୁଃଖକୁ ହୃଦୟଙ୍ଗମ କରୁଥିବା ଏହି ବ୍ୟକ୍ତିତ୍ୱକୁ କବି ବ୍ରାହ୍ମଣର ସମ୍ମାନ ପ୍ରଦାନ କରିଛନ୍ତି । ମାନସିଂହଙ୍କ ସମ୍ପର୍କରେ

---

(୧୧) ଶିକ୍ଷାବିତ୍ତର ଗାଥା—ମାନସିଂ—ପୃ. ୧୭, ୧୮

(୧୨) ଶିରି ପଛେ ତୀର କୋଟି ମସ୍ତକ ନୁଆଇଁ ଓଡ଼ିଆ ଜାତି
ସମ୍ମାନ କରି ତାରେ ଯେ କରିଲା ପୁଣ୍ୟ ତୋହର ମାଟି
ଗୋପପ୍ରୟାଣ —ଗ୍ରନ୍ଥାବଳୀ—ପୃ ୩୪୦

(୧୩) ବ୍ରାହ୍ମଣ ତମେ ଉପବୀତ ତବ ଅସ୍ପୃଶ୍ୟ ପ୍ରାଣର ଗହନ ବ୍ୟଥା
ପୁରୁଷୋତ୍ତମ ଜୀବନ ତମର ବିରାଟ ଜାତିର ମରମ କଥା ।
ବାପୁ ତର୍ପଣ—ପୃ ୨୬୧

ଡଃ ସଚ୍ଚିଦାନନ୍ଦ ରାଉତରାୟ କହନ୍ତି "ପଦ୍ମଚରଣଙ୍କ ପରି ସେ ଅତୀତକୁ ବାହୁନି ଗୁଡ଼ାଏ କାନ୍ଦି ନାହାନ୍ତି ସତ ; କିନ୍ତୁ ଏ ଦେଶର ମହାନ୍ ଐତିହ୍ୟକୁ ସେ ଯେପରି ଭାବମୂର୍ତ୍ତି ମଧ୍ୟରେ ଫୁଟାଇ ପାରିଛନ୍ତି, ସେପରି ଅନ୍ୟକେହି କହିପାରି ନାହାନ୍ତି । × × ଆମ ସମସ୍ତଙ୍କ ଅପେକ୍ଷା ମାନସିଂହ ଥିଲେ ଅତି ଅଧିକ ମାତ୍ରାରେ ଓଡ଼ିଶାର ସ୍ଥାୟୀ ବାସିନ୍ଦା । ତାଙ୍କୁ ମନେହୁଏ ସେ ଯେପରି ଏଠାରେ ପ୍ରାଚୀନତମ ଅଧିବାସୀ ଆଉ ଆମେ ସମସ୍ତେ କେଉଁ ପରବର୍ତ୍ତୀ ପର୍ଯ୍ୟାୟର ଲୋକ ଏଠିକି ଆସି ଆସ୍ଥାନ ଜମାଇଛୁ । ପୈତୃକ ଭିଟାଭୂମିକୁ ଶେଷ ପର୍ଯ୍ୟନ୍ତ ଏପରି ଜାବୁଡ଼ି ଧରି ପଡ଼ି ରହିଥିବାର ଧୈର୍ଯ୍ୟ ଓ ପ୍ରବୃତ୍ତିରେ ସେ ଥିଲେ ସତରେ ଅଟଳ ଓ ଅପରିବର୍ତ୍ତନୀୟ ।" (୧୪)

ଯେଉଁମାନେ ମାନସିଂହଙ୍କ ସମ୍ପର୍କରେ ଆସିଥିଲେ ସେମାନେ ଏହିପରି ଭାବରେ ମାନସିଂହଙ୍କୁ ଚିତ୍ରଣ କରିଛନ୍ତି, "ଆପଣ ମଧୁ ବାରିଷ୍ଟର ଓ ଉତ୍କଳମଣି ଗୋପବନ୍ଧୁଙ୍କ ମାର୍ଗରେ ଥିଲେ ଓଡ଼ିଆ । ଗାନ୍ଧୀ ଓ ରବୀନ୍ଦ୍ରଙ୍କ ମାର୍ଗରେ ଥିଲେ ଭାରତୀୟ । ଟଲଷ୍ଟୟ, ରସେଲ୍ ଓ ସୋପେନ୍‌ହାଭେନ୍ ଆଦିଙ୍କ ଧାରାରେ ଥିଲେ ଆନ୍ତର୍ଜାତିକ ମାନବବାଦୀ ଏବଂ ଶେଷରେ ଶ୍ରୀ ଅରବିନ୍ଦ ଶ୍ରୀମାଙ୍କ ମାର୍ଗରେ ଥିଲେ ମହାଜାଗତିକ ଓ ଅତି ମାନବବାଦୀ ।" (୧୫)

କବି ମାନସିଂହ ଓଡ଼ିଶାର ଗୌରବମୟ ପରମ୍ପରା ଏବଂ ଐତିହ୍ୟ ପ୍ରତି ଆକୃଷ୍ଟ ହୋଇଛନ୍ତି ଏଥିରେ ସନ୍ଦେହ ନାହିଁ । 'ଜେମା' କାବ୍ୟ ପ୍ରେମମୂଳକ ହେଲେହେଁ ତାହାର ଅନ୍ତରାଳରେ ଆମ୍ଭର ଜାତୀୟ ଜୀବନର ଅଧୋଗତିର ସ୍ୱର ଝଙ୍କୃତ ହୋଇଛି । 'କମଳାୟନ'ରେ ସେହିପରି ମାନସିଂହ ମହାଭାରତୀୟ ଜାତୀୟ ଚେତନା ସହିତ ବସୁଧୈବ କୁଟୁମ୍ବକମ୍‌ର ସ୍ୱପ୍ନ ଦେଖିଛନ୍ତି । ମାନସିଂହ ଉତ୍କଳୀୟ ଚେତନାରେ ସୀମାବଦ୍ଧ ନ ଥିଲେ । ତାଙ୍କ ସାହିତ୍ୟରେ ମହାଭାରତୀୟ ଚେତନା ସହିତ ଉତ୍କଳୀୟ ଚେତନାର ଅପୂର୍ବ ସମନ୍ୱୟ ଘଟିଥିଲା । ମାନସିଂହଙ୍କ ଉତ୍କଳୀୟ ଜାତୀୟ ଚେତନାର ପ୍ରେରଣା, ଉତ୍କଳ ସମ୍ମିଳନୀ, ସତ୍ୟବାଦୀ ଗୋଷ୍ଠୀ ଓ କବିବର ରାଧାନାଥ, ଫକୀରମୋହନ, ମଧୁସୂଦନଙ୍କ ଲେଖାରୁ ପାଇଥିଲେ । ତତ୍କାଳୀନ ସ୍ୱାଧୀନତା ସଂଗ୍ରାମ, ବିଭିନ୍ନ ସ୍ଥାନ ଭ୍ରମଣ ଓ ଅଧ୍ୟୟନରୁ ତାଙ୍କ ଚେତନାରେ ମହାଭାରତୀୟ ଜାତୀୟ ଚେତନା ଉଦ୍ଭାସିତ ହୋଇଥିଲା । କାବ୍ୟ, କବିତା, ନାଟକ

(୧୪) କବି ମାୟାଧର ମାନସିଂହ ; ଏକ ସ୍ୱପ୍ନପ୍ରୟାଣ—ମାନସିଂହ ପରିକ୍ରମା, ଡଃ ସଚ୍ଚିଦାନନ୍ଦ ରାଉତରାୟ—ପୃ ୧୪୭

(୧୫) 'ଗୁଣ ସୁମରି ହୁଅନ୍ତି ବିକଳ'—ମହାପାତ୍ର ନୀଳମଣି ସାହୁ, ମାନସିଂହ ପରିକ୍ରମା—ପୃ ୧୪୧

ନାଟିକା, ପ୍ରବନ୍ଧ ଓ ସନ୍ଦର୍ଭ, ଭ୍ରମଣ କାହାଣୀ, ଜୀବନୀ, ଉପନ୍ୟାସ ତଥା ସମାଲୋଚନା ; ବିଭିନ୍ନ କ୍ଷେତ୍ରରେ ମାନସିଂହ ଲେଖନୀ ଚାଳନା କରିଯାଇଛନ୍ତି । ଇଂରାଜୀରେ ମଧ୍ୟ ତାଙ୍କ ରଚନାର କୃତିତ୍ୱ କମ୍ ନୁହେଁ । Kalidas and Shakespear, Saga of the Land of Jagannath ଏବଂ History of Oriya Literatureରୁ ତାଙ୍କ ଜାତୀୟତାବୋଧ ପ୍ରତିପାଦିତ ହେବ ।

ମାନସିଂହ ଥରେ ମଧୁସୂଦନଙ୍କ ସମ୍ପର୍କରେ ଲେଖିଥିଲେ, "ମଧୁସୂଦନଙ୍କ କର୍ମ ଓ ବ୍ୟକ୍ତିତ୍ୱର ମୂଲ୍ୟ ଓଡ଼ିଆମାନେ ଏପର୍ଯ୍ୟନ୍ତ ଉତ୍ତମରୂପେ ହୃଦୟଙ୍ଗମ କରିଛନ୍ତି ବୋଲି କୁହାଯାଇପାରିବ ନାହିଁ ।" ମାନସିଂହଙ୍କ ନିଜ ଉକ୍ତି ତାଙ୍କରି ପ୍ରତି ପ୍ରଯୁଜ୍ୟ । ମାନସିଂହଙ୍କ କର୍ମ, ବ୍ୟକ୍ତିତ୍ୱ ଓ ଜାତୀୟ ଚେତନାର ମୂଲ୍ୟ ଓଡ଼ିଆମାନେ ଏପର୍ଯ୍ୟନ୍ତ ହୃଦୟଙ୍ଗମ କରିଛନ୍ତି ବୋଲି କୁହାଯାଇ ପାରିବ ନାହିଁ । ବୋଧହୁଏ ଏହିପରି ଏକ ଅବଶୋଷ ଜୀବନର ଶେଷ ପର୍ଯ୍ୟନ୍ତ ତାଙ୍କ ମନରେ ରହିଥିଲା ।

**ପ୍ରଣୟଚେତନା—**

ଜାତୀୟଚେତନା ମାନସିଂହଙ୍କ କବିତାରେ ଶେଷ କଥା ନୁହେଁ । କାରଣ ସମଗ୍ର ମାନସିଂହ କାବ୍ୟ କବିତା ରୋମାଣ୍ଟିକ ଭାବବିଳାସ ଓ ପ୍ରଣୟସୁଲଭ ଅନୁଚିନ୍ତା ଅଧିକାର କରି ବସିଛି । ଏହା କ୍ରମଶଃ ଇନ୍ଦ୍ରିୟରୁ ଅତୀନ୍ଦ୍ରିୟ ରାଜ୍ୟକୁ ଆଗେଇ ନେଇଛି । "ମାନସିଂହ କାବ୍ୟସାଧନାର ଏକ ମୁଖ୍ୟ ଅଂଶ ପରକୀୟା ପ୍ରେମ ଭାବନାରେ ଅତ୍ୟନ୍ତ ଉଚ୍ଛ୍ୱସିତ ଓ ଆସକ୍ତ । ବୋଧହୁଏ ତାହାହିଁ ମାନସିଂହ କବିତାର ସର୍ବଶ୍ରେଷ୍ଠ ପରିଚୟ ମଧ୍ୟ × × × ପରକୀୟାରୁ ସ୍ୱକୀୟା ବାଟ ଦେଇ କ୍ରମେ ଏକ ଇନ୍ଦ୍ରିୟାତୀତ ଅନୁଚିନ୍ତାରେ ଏହା ଯେତିକି ଦୈହିକ ସେତିକି ଊର୍ଦ୍ଧ୍ୱଗ ।" (୧୬) ସେଥିପାଇଁ ବୋଧହୁଏ ମହାପାତ୍ର ନୀଳମଣି ସାହୁ କହନ୍ତି—"ଆପଣଙ୍କ ବ୍ୟକ୍ତିତ୍ୱ କି ଅଦ୍ଭୁତ × × କେତେ ସୁମଧୁର, କେତେ ଉଚାଟକ, ଆଉ କେତେ ଆକର୍ଷକ । ଆପଣ ପ୍ରଥମ ଯୌବନରେ ଅନ୍ୟର ବିବାହିତା ଯୁବତୀ ପତ୍ନୀ ସଙ୍ଗେ ସହକାର ତଳେ ଗୁପ୍ତ ପରକୀୟା ପ୍ରଣୟରେ ମାତିଥିଲେ ବୋଲି ଶୁଣାଯାଏ । ସେ ପ୍ରଣୟ ଶେଷ ପର୍ଯ୍ୟନ୍ତ ଆପଣଙ୍କ ଅନ୍ତରକୁ ଉଦ୍‌ବେଳିତ ଓ ଉଦ୍ଭାସିତ କରି ରଖିଥିଲା ମୁଁ ଜାଣେ । ଆପଣଙ୍କର ସେହି ରସବତୀ ପ୍ରେମମୟୀ ପ୍ରଣୟିନୀଙ୍କ ପ୍ରତି ଏବେ ସୁଦ୍ଧା ଆପଣଙ୍କର ଅନ୍ତର କି ଗଭୀର ସମ୍ମାନ ଜନକ ଭାବାବେଶରେ ପୂର୍ଣ୍ଣ ଥିଲା ; ତାହା ମୋତେ ଜ୍ଞାତବ୍ୟ ଅଛି । (୧୭)

---

(୧୬) ସବୁଜରୁ ସାମ୍ପ୍ରତିକ—ଡଃ ନିତ୍ୟାନନ୍ଦ ଶତପଥୀ—ପୃ. ୧୩୦

(୧୭) ମାନସିଂହ ସ୍ମରଣିକା—ମହାପାତ୍ର ନୀଳମଣି ସାହୁ—(ଗୁଣ ସୁମରି ହୃଦ ଅନ୍ତ ବିକଳ) ପୃ. ୬୪

ମାନସିଂହ ଆଗ ପ୍ରେମିକ, ତାପରେ କବି । ପ୍ରେମ ହିଁ ତାଙ୍କ କବିତାର ଉତ୍ସ । ସେ ନାରୀଠାରେ ପ୍ରେମସାଧନା ଆରମ୍ଭ କରିଛନ୍ତି । ଭଲ ପାଇଛନ୍ତି ରୂପବତୀ ଓ ରସବତୀ ନାରୀର ସାକାର ରୂପ ଓ ରସମାଧୁର୍ଯ୍ୟକୁ । ସାହିତ୍ୟରେ ପ୍ରେମ ଏକ ପୁରାତନ ଉପଜୀବ୍ୟ ବିଷୟ । ମାନସିଂହଙ୍କ କଥାରେ ପୁଣି "ଆମ ସାହିତ୍ୟରେ ପ୍ରେମ କବିତାର ଅରଣ୍ୟ ରହିଛି ।" (୧୮) ତେଣୁ ନିଜ କାବ୍ୟରେ ଏହାକୁ ନୂତନ ଭାବରେ ପରିସ୍ଫୁଟ କରିବା ପାଇଁ ସେ ଚାହିଁଥିଲେ । ଗତାନୁଗତିକ ସ୍ଥୂଳ ବର୍ଣ୍ଣନା ପରିବର୍ତ୍ତେ "ବ୍ୟକ୍ତିଗତ ବିଭିନ୍ନ ଅଭିଜ୍ଞତାରେ ଶବଳିତ × ×" ବିଚିତ୍ରତା ଥିଲି ତାଙ୍କ ପ୍ରେମ କବିତାର ବୈଶିଷ୍ଟ୍ୟ । (୧୯) ତାଙ୍କ ଦୃଷ୍ଟିରେ ପ୍ରେମର ସଂଜ୍ଞା; ନାରୀ ଓ ପୁରୁଷ ମଧ୍ୟରେ ପରସ୍ପର ସହିତ ମିଳନାକାଂକ୍ଷା ଏକ ସାର୍ବଭୌତିକ ପ୍ରବୃତ୍ତି । କିନ୍ତୁ ଇତର ପ୍ରାଣୀ ନିକଟରେ ଯାହା ଯୌନକ୍ଷୁଧା; କେବଳ ପ୍ରଜନନର ଉପାୟ ମାତ୍ର ମାନବ ସମାଜର ତାହା ପ୍ରେମ; ତାହାହିଁ ହେଉଛି ସଙ୍ଗୀତ, ସାହିତ୍ୟ, କଳାଶିଳ୍ପ ନୃତ୍ୟର ଜନନୀ ।" (୨୦) ଏଥିରୁ ଦୁଇଟି କଥା ସ୍ପଷ୍ଟ ହୋଇଥାଏ—ପ୍ରେମ ଯୌନ ତୃପ୍ତିର ଏକ ସୂକ୍ଷ୍ମ ଉପଲବ୍ଧି । ଏହି ଉପଲବ୍ଧି ହିଁ କଳାତ୍ମକ ସୃଜନଶୀଳତାର ଅନୁପ୍ରେରକ । ଅନ୍ୟ କଥାରେ ପ୍ରେମର ଭିତ୍ତି ହୋଇପାରେ ଦେହ; ମାତ୍ର ଏହାର ପରିସୀମା ଦେହାତୀତ । ଏହାର ପ୍ରକୃତି ସ୍ଥୂଳ; ମାତ୍ର ପ୍ରତିକ୍ରିୟା ସୂକ୍ଷ୍ମ । ଏଭଳି ଏକ ଆଦର୍ଶାନ୍ୱିତ ଦୈହିକ ପ୍ରେମ ସମ୍ପର୍କରେ ତାଙ୍କର ବକ୍ତବ୍ୟ "ମାନବିକ ପ୍ରେମ ଅପେକ୍ଷା ଜୀବନରେ ମହତ୍ତର ସୁନ୍ଦରତର ଅନୁଭୂତି ଅଛି । କିନ୍ତୁ ଏ ଅନୁଭୂତି ନିନ୍ଦନୀୟ ବା ଲଜ୍ଜାକର ହେବାର କୌଣସି କାରଣ ନାହିଁ ।" (୨୧) ମାନସିଂହଙ୍କ ଅସଂଖ୍ୟ କବିତାରେ ପ୍ରେମର ବିକାଶ ବିଚିତ୍ର ଭାବରେ ହୋଇଛି । 'ଧୂପ' (୧୯୩୧) କବିତା ଗ୍ରନ୍ଥରେ ତାଙ୍କର ଦୈହିକ ଅନୁଭୂତି ଅତି ଚମତ୍କାର ଭାବରେ କଳାତ୍ମକ ରୂପ ଲାଭ କରିଛି । ଏତେ ବିଚିତ୍ରବର୍ଣ୍ଣର, ହୃଦୟ ଏବଂ ମନକୁ ମୋହାବିଷ୍ଟ କରୁଥିବା ବିଭିନ୍ନ ପ୍ରୀତି-ପୁରବୀର ପଲ୍ଲବିତ 'ଧୂପ' କବିତା ପରି ଅନ୍ୟ କୌଣସି କବିତା ଗ୍ରନ୍ଥ ପାଠକ ମନକୁ ଆନ୍ଦୋଳିତ କରି ନ ଥିଲା । କବି ମାନସିଂହଙ୍କ ପୂର୍ବରୁ ପ୍ରୀତି ସାହିତ୍ୟର ପରମ୍ପରା ଓଡ଼ିଆ ସାହିତ୍ୟରେ ବିରଳ ନୁହେଁ; କିନ୍ତୁ ମାନସିଂହ କବିତାର ଯେଉଁ ନିବିଡ଼ ଆତ୍ମିକତା, ଅନ୍ତରଙ୍ଗ ଅନୁଭବ, ପ୍ରାଣପ୍ରାଚୁର୍ଯ୍ୟର

---

(୧୮ ଓ ୧୯) ଧୂପର ଭୂମିକା—ମାନସିଂହ ଗ୍ରନ୍ଥାବଳୀ—ପୃ. ୯

(୨୦) ମୁଁ କାହିଁକି ଲେଖେ—ଡଗର ୧୪/୧ ସଂଖ୍ୟା, ଉଦ୍ଧୃତ ମାୟାଧର ମାନସିଂହ

(୨୧) ଧୂପର ମୁଖବନ୍ଧ —ଗ୍ରନ୍ଥାବଳୀ—ପୃ. ୯

ସ୍ତୋମଗନ୍ଧ ଦେଖାଯାଏ; ତାହା ଅନ୍ୟତ୍ର ନାହିଁ। ରୀତି ଯୁଗର କବିତା ଥିଲା ଶୃଙ୍ଗାରିକତାରେ ଭରପୂର । ପ୍ରାଣହୀନତାରେ ତାହା ପରିପୂର୍ଣ୍ଣ ଥିଲା। ରାଧାନାଥ ଯୁଗରେ ପ୍ରେମର ଦୃଷ୍ଟିଭଙ୍ଗୀ ବଦଳିଯାଇଛି । ଏହା କେତେବେଳେ ମାନବୀୟ ମହିମାରେ ମହିମାନ୍ୱିତ ତ କେତେବେଳେ ଅତିମାନୁଷିକତାରେ ଭୟଙ୍କର । କିନ୍ତୁ ମାନବିକ ପ୍ରେମର ସଫଳ ରୂପାୟନ ଘଟିଛି ମାନସିଂହଙ୍କ କବିତାରେ ।

ଓଡ଼ିଆ କାବ୍ୟ କବିତାର ଇତିହାସରେ ମାନସିଂହ ଥିଲେ ରୋମାଣ୍ଟିକ୍ ଭାବଶୈଳୀର ଅଭ୍ୟୁତ୍ଥାନପନ୍ଥୀ । ଓଡ଼ିଆ ପ୍ରେମ କବିତାର ଅରଣ୍ୟରେ ଉଦ୍ଦୀପିତ ପ୍ରେମ ବର୍ଣ୍ଣନାର ଅଭାବ ନ ଥିଲେହେଁ ମାନସିଂହଙ୍କ କାବ୍ୟରେ ଏହାର ବିଶେଷତ୍ୱ ହେଲା ଲୌକିକ ଏବଂ ବୈୟକ୍ତିକ ପ୍ରେମାନୁଭୂତିର ସ୍ପଷ୍ଟ ଅଭିବ୍ୟଞ୍ଜନା । ଧୂପର ପ୍ରଣୟିନୀ ଅନ୍ୟର ଗୃହିଣୀ। (୨୨) ତେଣୁ ଏହି ପରକୀୟା ହିଁ ଧୂପ କବିତାର ପ୍ରେରଣାର ଉତ୍ସ । ରୂପ ଓ ଅରୂପ, ଇନ୍ଦ୍ରିୟ ଓ ଅତୀନ୍ଦ୍ରିୟର ସୀମା ମଧ୍ୟରେ ମାନସିଂହ ଯେପରି ଅଦ୍ଭୁତ ସାମଞ୍ଜସ୍ୟ ରକ୍ଷା କରିପାରିଛନ୍ତି ତାହା ତାଙ୍କର ସମସାମୟିକ କବିମାନଙ୍କ ସୃଷ୍ଟିରେ ବିରଳ । ଏହି ଇନ୍ଦ୍ରିୟଧର୍ମୀ ପ୍ରେମ ବହୁ ଦୁଃଖ ଯନ୍ତ୍ରଣାର ନିଗଡ଼ ଅତିକ୍ରମ କରି ଏପରି ଏକ ଦେବଲୋକରେ ପହଞ୍ଚିଛି ଦେଖିଲେ ବିସ୍ମିତ ନ ହୋଇ ରହି ହୁଏନାହିଁ । ଇଟାଲୀୟ କବି ଦାନ୍ତେଙ୍କ ନିକଟରେ ତାଙ୍କ ପ୍ରଣୟିନୀ ସ୍ୱର୍ଗୀୟ ସୌନ୍ଦର୍ଯ୍ୟ ଦର୍ପଣ ବୋଲି ପ୍ରତିଭାତ ହେବାପରି ମାନସିଂହଙ୍କ ପ୍ରଣୟିନୀ ମଧ୍ୟ ତାଙ୍କ ନିକଟରେ ସମସ୍ତ ପାର୍ଥିବ ଓ ଅପାର୍ଥିବ ସୌନ୍ଦର୍ଯ୍ୟର ମୂଳାଧାର । କବି ଓ୍ୱାର୍ଡ଼ସ୍ ଓ୍ୱାର୍ଥଙ୍କ ବେଦନାନୁଭୂତିର ଦର୍ଶନ —suffering is permanent, obscure and dark and has the nature of infinity ବା ଭାରତୀୟ ରହସ୍ୟବାଦୀ ପ୍ରେମିକ କବି କବୀର ଓ ଦାଦୁ ବା "ପ୍ରୀତି ନ ଉପୁଜୈ ବିରହ ବିନ୍ ପ୍ରେମ ଭଗତି କୈଁୟା ହୋଇ" ପ୍ରଭୃତି ପଂକ୍ତିଗୁଡ଼ିକର ବିରହ ଦର୍ଶନ ଓ ବେଦନା ମାନସିଂହଙ୍କ ଶିଳ୍ପ ସୃଷ୍ଟିରେ ସ୍ୱୀକୃତି ଲାଭ କରିଛି । "ପ୍ରେମର ଇନ୍ଦ୍ରିୟ ଓ ଅତୀନ୍ଦ୍ରିୟ ସ୍ୱରୂପର ଉପଲବ୍ଧି ଏବଂ ତାର ଶିଳ୍ପସଙ୍ଗତ ଅଭିବ୍ୟକ୍ତିରେ ହସ୍ତ ନିପୁଣତା ଅର୍ଜନ କରିବାରେ, ମୋର ମନେହୁଏ ବୈଷ୍ଣବ ଯୁଗର କବି ଅଭିମନ୍ୟୁ ଓ ଗୋପାଳକୃଷ୍ଣଙ୍କୁ ବାଦଦେଲେ କବି ମାନସିଂହ ହିଁ ଅଦ୍ୱିତୀୟ ଶିଳ୍ପୀ ଯେ କି ରୂପ ଅରୂପର ମିଳନରେ ମନ୍ତ୍ରଙ୍କ ପୁରୋହିତ ଭଳି ଉଭୟ ହସ୍ତରେ ମଙ୍ଗଳସୂତ୍ର ଯଥାଯଥ ଭାବରେ ବାନ୍ଧି ନିଜ ସିଦ୍ଧହସ୍ତତାର

(୨୨) ଗୃହିଣୀ ସେ ; ତାର କଣ୍ଠାଳ ଶତଶତ
ମାନିବାକୁ ହୁଏ ବହୁଜନ ମନୋରଥ" —ଧୂପ, ପୃ-୧୧୪

ପରିଚୟ ପ୍ରଦାନ କରିଛନ୍ତି ।"(୧୩) ମାନସିଂହ ନିଜେ ସ୍ୱୀକାର କରିଛନ୍ତି ଜୀବନରେ ସେ ଅନେକ ପ୍ରକାର ବ୍ୟକ୍ତିଙ୍କର ସଂସ୍ପର୍ଶରେ ଆସିଛନ୍ତି । ଏହି ଭେଟାଭେଟି ଏବଂ ଚାହାଁଚାହିଁ ହୁଏତ କବି ଜୀବନର ଅନୁଭୂତିପ୍ରବଣ ମନକୁ ଅଧିକ ସ୍ପର୍ଶଶୀଳ କରିଦେଇଛି । ତାଙ୍କ ଜୀବନର ସେହି ଆଲୋକ ଅନ୍ଧାର, ହସଲୁହର ମୁହୂର୍ତ୍ତି ହିଁ ଧୂପ କବିତାର ଅନ୍ତଃସ୍ୱର । ମାନସିଂହଙ୍କ କାବ୍ୟନାୟିକା 'ଧୂପ'ର ପରିକଳ୍ପନା ପ୍ରଣୟିନୀ ହୁଅନ୍ତୁ କିମ୍ବା ହେମଶସ୍ୟର ପରିଣୀତା ହୁଅନ୍ତୁ ଅଥବା ଇରାଣୀ କିଶୋରୀ ପରି କବିମାନସୀ ହୁଅନ୍ତୁ ; ସେମାନେ ଏକ ଏକ ଜୀବନ୍ତ ରୂପବତୀ ତରୁଣୀ । 'ଧୂପ' କବିତାର ପରିକଳ୍ପନା ପ୍ରୀତି ଭାବନାରୁ ମନେହୁଏ ଓଡ଼ିଆ ମଧ୍ୟଯୁଗୀୟ ସାହିତ୍ୟ ପ୍ରତି କବି ଅଧିକ ଅନୁରାଗୀ ଥିଲେ । ମଧ୍ୟଯୁଗୀୟ ବୈଷ୍ଣବ ପ୍ରେମ କବିତା ପରି ତାଙ୍କ ପ୍ରେମ କବିତା ବିରହ ମିଳନରେ, ଅଶ୍ରୁ ଏବଂ ଉଚ୍ଛ୍ୱାସରେ, କାମନା ଓ ଆସକ୍ତିରେ ରସାଣିତ ।

ସବୁଜ କବିଙ୍କ ପରି ପଳାୟନବାଦରେ ତାଙ୍କ କବିତା ଉଜ୍ଜ୍ୱଳ ନୁହେଁ । ଜୀବନକୁ ସେ ବାରମ୍ବାର ଖୋଜିଛନ୍ତି । "ମନୁଷ୍ୟ ବରାବର ଚେଷ୍ଟାକରି ଆସୁଛି ତାର ଚିର ପଳାୟମାନ ଆନନ୍ଦ ମୁହୂର୍ତ୍ତିଗୁଡ଼ିକୁ ସେ ସାହିତ୍ୟ କଳାରେ କିପରି ବାନ୍ଧି ରଖିପାରିବ ।" (୧୪) ମାନସିଂହ କହିଛନ୍ତି "ପ୍ରଥମ ଯୌବନରେ ବାପ, ମା'ଆ, ଭାଇ, ଭଉଣୀଙ୍କ ଉପସ୍ଥିତି ସତ୍ତ୍ୱେ ଏକ ନିଃସଙ୍ଗତା ପ୍ରତ୍ୟେକ ଜୀବନରେ ଆସେ । ଏହା ପ୍ରାୟ ସାର୍ବଜନୀନ, ତେବେ ପିତୃଭ୍ରାତୃହୀନ ଏକ ନିଃସଙ୍ଗ ତରୁଣକୁ ଯେଉଁମାନେ ସଖ୍ୟଦାନ କରି ତାକୁ ଅନୁଗୃହୀତ କଲେ; ତାଙ୍କର ମହିମ୍ନାସ୍ତବ ଗାଇବା ତା ପକ୍ଷରେ କି ବିଚିତ୍ର ବ୍ୟାପାର ?" (୧୫) ସେଥିପାଇଁ ବୋଧହୁଏ ମାନସିଂହ 'ପାପ ଓ ପ୍ରେମ'ରେ କହିଛନ୍ତି—"ନୟନୁ ଯାହାର ଲୋତକ ମୋପାଇଁ ବୋହିଲା/ ମୋ ନୟନେ ସେ ତ ପରମ ପୂଜ୍ୟା ମହିଳା" କିମ୍ବା "ସ୍ନେହ ଯେ ଜୀବନେ କରିଦିଏ ପାପ ମାଜଣା/ନାହିଁ ଜାଣେ ସଖୀ ମୂର୍ଖ ଜନତା ; ପାପ ବୋଲି କହେ ପ୍ରଣୟ ମମତା, ଅଶ୍ରୁ ଧଉତ ପୀରତି କି ପାପ ଘଟଣା ; ମୂର୍ଖ ଜନତା ବୁଝେ ନାହିଁ ପ୍ରୀତି ରଚନା ।" (୧୬)

(୧୩) ମାନସିଂହ ପ୍ରତିଭାର ଇନ୍ଦ୍ରଧନୁ—ମାନସିଂହ ସୃଷ୍ଟି ସମୀକ୍ଷା, ଅଧ୍ୟାପକ ଚନ୍ତାମଣି ବେହେରା—ପୃ ୭୦

(୧୪) ଧୂପର ମୁଖବନ୍ଧ

(୧୫) ତତ୍ରୈବ

(୧୬) ପାପ ଓ ପ୍ରେମ—ଗ୍ରନ୍ଥାବଳୀ ପୃ-୭୦

ଧୂପର ନାୟିକାର ସୌନ୍ଦର୍ଯ୍ୟ ଇନ୍ଦ୍ରିୟାନୁଭୂତରେ ଆସ୍ୱାଦ୍ୟ । ତାଙ୍କର ବାହୁ ସୁଗୋଲ, କେଶ ଚକ୍‌କଣ, ନିଃଶ୍ୱାସ ସୁବାସିତ । ସହକାର ତଳେ ନିକୁଞ୍ଜ ସନ୍ଧିରେ ଦୃଢ଼ ଆଲିଙ୍ଗନରେ ଆଲିଙ୍ଗିତ । ସୁରଭି ନିଃଶ୍ୱାସ ଢାଳି ସେ ଖାଲି ଅର୍ଥହୀନ ଭାବରେ ପ୍ରଶ୍ନ କରନ୍ତି—"ତମେ ସତେ ଭଲପାଅ" ? ମାନସିଂହ ଏହି କେତୋଟି କଥା ବାରମ୍ବାର ଉଲ୍ଲେଖ କରି ଏକ ପ୍ରଣୟୁଦ୍ବେଗର ପ୍ରାଣର କଥା ପ୍ରକାଶ କରିଛନ୍ତି । (୨୭) ବିରହିଣୀ ରାଧା ମରଣ ପରେ କଦମ୍ବ ତଳେ ତାଙ୍କ ଶବକୁ ଶ୍ୟାମ ଯିବା ପଥରେ ରଖିଦେବା ପାଇଁ ସଖୀମାନଙ୍କୁ କହୁଛନ୍ତି । ମାନସିଂହ ତାଙ୍କ ଭସ୍ମ ଉପରେ ପଦ୍ମପାଦ ଚାଲିବା ପାଇଁ କାମନା କରିଛନ୍ତି । "ପାରିବ ଯଦି ଭସ୍ମପରେ ପଦ୍ମପାଦ ଚାଲିବ ଧୀରେ, ଜୀବନ ପୁଣି ଲଭିବି ସଖୀ ନିଶ୍ଚୟ ମୁଁ ମରଣ ତୀରେ ।" (୨୮)

ଯେତେବେଳେ କବିଙ୍କର ପ୍ରେୟସୀ ପରକୀୟା ନ ହୋଇ ସ୍ୱକୀୟା ହୋଇଛନ୍ତି ; ସେତେବେଳେ କବିଙ୍କର କାବ୍ୟଚିନ୍ତା ଭିନ୍ନମୁଖୀ ହୋଇଛି । 'ଧୂପରୁ ହେମଶସ୍ୟ' (୧୯୩୩)କୁ ଯାତ୍ରାକାଳରେ ଏକ ସ୍ୱାଭାବିକ କାବ୍ୟ ଆନ୍ଦୋଳନ ତାଙ୍କ କବିତାରେ ପ୍ରତିଫଳିତ । ଧୂପର ଉଦ୍ଦାମ ରୂପତୃଷ୍ଣା କ୍ରମଶଃ ଏକ ଗଭୀରତର ବ୍ୟାପକ ଅନ୍ତର୍ଦର୍ଶନ ରୂପତୃଷ୍ଣାରେ ପରିଣତ ହୋଇଛି । ଯାହାଫଳରେ ଦେହଠାରୁ ସ୍ନେହର, ରୂପଠାରୁ ଆତ୍ମାର ସୌନ୍ଦର୍ଯ୍ୟ ଶ୍ରେଷ୍ଠ ବୋଲି ତାଙ୍କର ଉପଲବ୍ଧି ହୋଇଛି । ଶାରୀରିକ ସୌନ୍ଦର୍ଯ୍ୟ ତୁଳନାରେ ଚାରିତ୍ରିକ ସୌନ୍ଦର୍ଯ୍ୟର ମହତ୍ତ୍ୱ ପ୍ରତିପାଦିତ ହୋଇଛି । (୨୯) ପତ୍ନୀର ସ୍ନେହ ସ୍ପର୍ଶରେ ତାଙ୍କର ଦେହ ଚେତନାର ଅବସାନ ଘଟିଛି । ସେ କେବଳ ଅନୁଭବ କରିଛନ୍ତି ଦେହ ମନ୍ଦିରରେ ପ୍ରଜ୍ୱଳିତ ପ୍ରେମଶିଖାର ଉଷ୍ଣତା । ମାନସିଂହଙ୍କର ଏହି ସୌନ୍ଦର୍ଯ୍ୟ ଦର୍ଶନ ତାଙ୍କର ବିବାହୋତ୍ତରକାଳୀନ ଜୀବନ ଜିଜ୍ଞାସାର ଏକ ଅନିବାର୍ଯ୍ୟ ଉପଲବ୍ଧି । ତାଙ୍କର ଅନେକ କବିତାରେ ତେଣୁ ପରିଣୀତା ବଧୂଙ୍କ ପ୍ରତି ଗଭୀର କୃତଜ୍ଞତା ଓ

---

(୨୭) "ମନେହୁଏ ଧୂପସମ ଦଗ୍‌ଧ ହୋଇ ବାଷ୍ପ ଯିବି ହୋଇ
ପ୍ରଣୟର ଅଗ୍ନି ଶେଷେ ପ୍ରଣୟର ଭସ୍ମ ଯିବଥୋଇ"

ପ୍ରଣୟ ବ୍ୟଥା—ଗ୍ରନ୍ଥାବଳୀ ପୃ-୩୪

(୨୮) ପ୍ରେମ ଓ ମୃତ୍ୟୁ—ଧୂପ, ଗ୍ରନ୍ଥାବଳୀ ପୃ-୧୨୮

(୨୯) "ରୂପ ବା କି ଘୃଣ୍ୟ କଥା ନର ସୌନ୍ଦର୍ଯ୍ୟରେ
ଭକ୍ତିସମ ଅଛି ଗୁହି ମୁଗ୍‌ଧ ନୟନରେ ।"

ଆତ୍ମାର ସୌନ୍ଦର୍ଯ୍ୟ—ହେମଶସ୍ୟ — ଗ୍ରନ୍ଥାବଳୀ, ପୃ-୧୯୯

ସମ୍ମାନବୋଧ ପ୍ରକାଶ ପାଇଛି । ପ୍ରଦୀପର ଆଲୋକରେ ନୁହେଁ ; ଘନ ଅନ୍ଧକାରରେ ପ୍ରେୟସୀର ଜ୍ୱଳନ୍ତ ରୂପଶିଖା ସେ ଦେଖିଛନ୍ତି । ଦେହର ସୌନ୍ଦର୍ଯ୍ୟଠାରୁ ଆତ୍ମାର ସୌନ୍ଦର୍ଯ୍ୟକୁ ସେ ବଡ଼କରି ଦେଖିଛନ୍ତି । ପ୍ରତ୍ୟେକ ଦିନର ଉଷା ପରି ପ୍ରୀତି ନିତ୍ୟ ନୂତନ । ତାର ଆରମ୍ଭ ଅଛି କିନ୍ତୁ ଶେଷ ନାହିଁ । ବନ୍ଧନରେ କେବଳ ସ୍ୱର୍ଗସୁଖ ମିଳିଥାଏ । (୩୦)

କବିମାନେ ନିଜର ବ୍ୟକ୍ତିଗତ ପ୍ରଣୟାନୁଚିନ୍ତାକୁ ସନେଟ ମାଧ୍ୟମରେ ପ୍ରକାଶ କରିଛନ୍ତି । ଓ୍ୱାର୍ଡ଼ସଓ୍ୱାର୍ଥ, ପେଟ୍ରାର୍କ ଏବଂ ସାର୍ ଫିଲପ୍ ସିଡ଼ନୀ ଯେପରି ନିଜର ପ୍ରଣୟ ଚେତନା ସନେଟ୍ ମାଧ୍ୟମରେ ପ୍ରକାଶ କରିଛନ୍ତି ଓଡ଼ିଆ କବିତାରେ ମାନସିଂହ ସେହିପରି ତାହା ଅକ୍ଷୁଣ୍ଣ ରଖିଛନ୍ତି । ସନେଟ୍‌ର ଆଙ୍ଗିକ ମାଧ୍ୟମରେ ପ୍ରଣୟର ସ୍ନିଗ୍ଧତା ପରିସ୍ଫୁଟ ହୋଇଉଠିଛି । ରବୀନ୍ଦ୍ରନାଥ ଯେପରି ତାଙ୍କର ପ୍ରେମ କବିତାରେ ନିଖିଳର ସ୍ପନ୍ଦନ ଅନୁଭବ କରିଛନ୍ତି, ମାନସିଂହଙ୍କ ପ୍ରେମାନୁଭବ ସେହିପରି ନିଖିଳର ବେଦନାରେ କାଳଜୟୀ ହୋଇଛି । ମୃତ୍ୟୁରେ ଏ ପ୍ରେମର ଅବସାନ ହୁଏ ନାହିଁ । ତାହା ଅମର ଓ ଅବିନଶ୍ୱର । କବି ମାନସିଂହଙ୍କ ପ୍ରେମଚିନ୍ତା ଓଡ଼ିଆ ମଧ୍ୟଯୁଗୀୟ ସାହିତ୍ୟ, ଇଂରାଜୀ ରୋମାଣ୍ଟିକ ସାହିତ୍ୟ ଏବଂ ରବୀନ୍ଦ୍ରନାଥଙ୍କ ଚିନ୍ତା ଦ୍ୱାରା ପ୍ରଭାବିତ ହୋଇଥିବାର ଜଣାଯାଏ । ମାନସିଂହଙ୍କ ସୌନ୍ଦର୍ଯ୍ୟ ଚେତନାରେ ଗୁଲ୍‌ବଦନା ଇରାନୀ କିଶୋରୀ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ତାର ଅଧର ଦ୍ରାକ୍ଷା ସୁକୋମଳ । ତାର ବିହାରଭୂମି ବୁଲ୍‌ବୁଲ୍ ମୁଖରିତ ଗୁଲ୍‌ଉପବନ । ଏଠାରେ ମାନସିଂହଙ୍କ ସୌନ୍ଦର୍ଯ୍ୟ ଚେତନା ଏକାନ୍ତ ଭାବେ ଦେହନିଷ୍ଠ । କେବଳ 'ଇରାନୀ କିଶୋରୀ' ନୁହେଁ, ବିଗତ ଯୌବନା କୋଣାର୍କର ନଷ୍ଟ ଲାବଣ୍ୟ ଦେଖି କବି ବ୍ୟଥିତ ହୋଇଛନ୍ତି । (୩୧)

ରୋମାଣ୍ଟିକ କବି ମାନସିଂହଙ୍କ ସ୍ପର୍ଶକାତର ମନରେ ନାରୀ ସୌନ୍ଦର୍ଯ୍ୟ ଚେତନା ଯେପରି ବ୍ୟାପକ ସେହିପରି ବିଚିତ୍ର । "ଇରାନୀ କିଶୋରୀର ଗୁଲ୍‌ବଦନଠାରୁ ପରକୀୟା ପ୍ରିୟାର କରକଙ୍କଣର ରୁଣୁଝୁଣୁ ଶବ୍ଦର ଇନ୍ଦ୍ରିୟାଚ୍ଛନ୍ନତା

---

(୩୦) ନିତ୍ୟ ସ୍ୱୟମ୍ବର—ହେମଶସ୍ୟ—ଗ୍ରନ୍ଥାବଳୀ, ପୃ-୨୧୮

(୩୧) ତୋର ଏହି ଜୀର୍ଣ୍ଣ ଦେହେ ଅଦ୍ୟାପି ଗୋ ବିମୁଗ୍ଧ ନୟନେ
ଚାହେଁ ବିଶ୍ୱ କରୁଣାରେ ତେଜି ଅଶ୍ରୁ ତୋ ଦୁଃଖ ଶୟନେ
ଜଗତର ଶିଳ୍ପୀ କବି ରୂପରାଗ ଦେଖି ତୋହଠାରେ
ଆଶ୍ଳେଷ ଇଚ୍ଛଇ ତୋର ବୃଦ୍ଧ ଦେହେ ଶୋଭା ପିପାସାରେ ।
କୋଣାର୍କ—ପୃ. ୨୩୭

ବାଟଦେଇ ସ୍ୱଳ୍ପାସ୍ୱାର ଧୀର ଗ୍ୱଲ ଓ ମଧୁର ଆଲାପ ପର୍ଯ୍ୟନ୍ତ ଏ କବିତାରେ ଇନ୍ଦ୍ରିୟାନୁଭୂତିର ଯେଉଁ ମଧୁର ଆସକ୍ତି ମାନସିଂହ ପ୍ରକାଶ କରିଛନ୍ତି; ତାହା ଯେ କିପରି କେଉଁ ପରିବେଶରେ ଏକ ମହାନ୍ ଆଧିଭୌତିକ ଅନୁଭୂତି ଆଡ଼କୁ ମୁହାଁଇଛି ତାହା ନିର୍ଣ୍ଣୟ କରିବାକୁ ଗଲେ ବିସ୍ମିତ ହେବାକୁ ହୁଏ ।" (୩୨)

## ପ୍ରେମ ଓ ସୌନ୍ଦର୍ଯ୍ୟ—

ରାଧାନାଥ ଯୁଗଠୁଁ ଆରମ୍ଭ କରି ରୋମାଣ୍ଟିସିଜମ୍‌ର ଯେଉଁ ପ୍ରବାହ ଓଡ଼ିଆ କାବ୍ୟ ସାହିତ୍ୟରେ ପ୍ରବାହିତ ହୋଇ ଗ୍ୱଲିଥିଲା ଓ ସବୁଜଗୋଷ୍ଠୀ ପର୍ଯ୍ୟନ୍ତ ତାର ଶାଖା ପ୍ରଶାଖା ଯେପରି ବିସ୍ତୃତ ହୋଇ ଉଠିଥିଲା ଏବଂ ରୋମାଣ୍ଟି-ସିଜମ୍‌ର ବିଭିନ୍ନ ବିଭାଗ ବିଭିନ୍ନ କବିଙ୍କ କୃତିରେ ଯେପରି ଆତ୍ମପ୍ରକାଶ ଲଭିଥିଲା ସେ ସମସ୍ତ ଶାଖାପ୍ରଶାଖାଗୁଡ଼ିକର ସମ୍ମେଳନ, ବିଭିନ୍ନ ବିଭାଗଗୁଡ଼ିକର ସମନ୍ୱୟ କବି ମାନସିଂହଙ୍କ ଶିଳ୍ପସାଗର ମଧ୍ୟରେ ଘଟିଛି ଏବଂ ମାନସିଂହଙ୍କ ସୃଷ୍ଟି ସମ୍ଭାର ହିଁ ଓଡ଼ିଆ ରୋମାଣ୍ଟିକ କାବ୍ୟ କବିତାର ସାଫଲ୍ୟର ଶେଷ ସ୍ୱର୍ଣ୍ଣଯୁଗ କହିଲେ ଅତ୍ୟୁକ୍ତି ହେବନାହିଁ । ଜାତୀୟ ଭାବନା ପରି ପ୍ରେମ ଓ ସୌନ୍ଦର୍ଯ୍ୟ ଚେତନା ରୋମାଣ୍ଟିକ କବିମାନଙ୍କର ଏକ ବିଶେଷ ନିଦର୍ଶନ । ମାନସିଂହ ନାରୀର ରୂପ ଏବଂ ପ୍ରକୃତିର ଶୋଭାସମ୍ଭାର ଉଭୟରେ ଆକୃଷ୍ଟ ହୋଇଛନ୍ତି । ତାଙ୍କ ମତରେ ସୌନ୍ଦର୍ଯ୍ୟ ହିଁ ସତ୍ୟ । ତାହା ଅବିନଶ୍ୱର । ରୂପ ଓ ସୌନ୍ଦର୍ଯ୍ୟର ଶତ୍ରୁ ହିଁ ତାଙ୍କର ଶତ୍ରୁ । ସୌନ୍ଦର୍ଯ୍ୟ ମୋହ ତାଙ୍କୁ କରିଛି କୁତ୍ସିତତା ପ୍ରତି ବିଦ୍ୱିଷ୍ଟ ଏବଂ ସୌନ୍ଦର୍ଯ୍ୟର ସନ୍ଧାନ ହିଁ ତାଙ୍କର କବିତାରେ କରିଛି ମହତ୍ତ୍ୱ କଳ୍ପନା ଓ ରୋମାଣ୍ଟିକ ସ୍ୱପ୍ନର ସଞ୍ଚାର । ତାଙ୍କ ସୌନ୍ଦର୍ଯ୍ୟବୋଧ କିନ୍ତୁ ସର୍ବଦା ସତ୍ୟ ଆନନ୍ଦ ଓ ମଙ୍ଗଳର ନିୟନ୍ତ୍ରଣାଧୀନ । ସୌନ୍ଦର୍ଯ୍ୟ ଜରାଗ୍ରସ୍ତ ହୋଇ ମଉଳିଯାଏ । ସେଥିପାଇଁ ମାନସିଂହ ତାଙ୍କ ମାନସୀ ପ୍ରତିମାକୁ ଜରାଗ୍ରସ୍ତ ରୂପଯୌବନା ଭାବରେ ଦେଖିବାକୁ ଚାହାନ୍ତି ନାହିଁ । (୩୩) ଯେଉଁ କବି ରୂପଜ ସୌନ୍ଦର୍ଯ୍ୟ ନିମନ୍ତେ ପାଗଳ ହୋଇଥିଲେ, ସେ କ୍ରମଶଃ ଆତ୍ମାର ସୌନ୍ଦର୍ଯ୍ୟ ସନ୍ଧାନ କରିଛନ୍ତି । ବାର୍ଦ୍ଧକ୍ୟକୁ

(୩୨) ନିସର୍ଗର ଉଦ୍‌ଗାତା ମାନସିଂହ—ଶ୍ରୀ ଦାଶରଥି ଦାସ
ମାନସିଂହ ସୃଷ୍ଟି ସମୀକ୍ଷା—ପୃ. ୩୮

(୩୩) "...ଜରାରେ ପ୍ରାଣ ତାର ଜୁହାରେ ନତ ଦୂରୁ
ତେଣୁ ଗୋ ବିଦେଶିନୀ ଘନନୀଳ କେଶିନୀ
ଧବଳ କେଶେ ଦେଖା ପାଇଁ ଗୋ
ତିଳେହେଁ ଅଭିଳାଷ ନାହିଁ ଗୋ—ଇରାନୀ କିଶୋରୀ—ଗ୍ରନ୍ଥାବଳୀ ପୃ.୧୩୬

ଅସ୍ୱୀକାର କରିଥିବା କବିର ଚେତନା ପୁଣି ଦେହାତୀତ ଆଡ଼କୁ ଗତିକରିଛି । ମୃତ୍ୟୁପରେ ମଧ୍ୟ ପ୍ରଣୟିନୀର ପଦ୍ମପାଦ ସ୍ପର୍ଶରେ ବାସନା କବିଙ୍କ ମନରେ ଜାଗ୍ରତ ହୋଇଛି ଏବଂ ପୁନର୍ଜୀବନ ପାଇବାର ବିଶ୍ୱାସ ମଧ୍ୟ ପୋଷଣ କରିଛନ୍ତି । ମାନସିଂହଙ୍କର ଏହି କବିତା ସହିତ ଟେନିସନ୍‌ଙ୍କର କବିତାର ଅପୂର୍ବ ସାମଞ୍ଜସ୍ୟ ଲକ୍ଷ୍ୟ କରିଯାଏ । "ଶୁଣିବ ଯେବେ ପ୍ରିୟା ଗୋ ମୋର ପ୍ରଣୟୀ ତବ ଜଗତେ ନାହିଁ/ଆସିବ ମୋର ଭସ୍ମ ପାଶେ ଦେବ ଗୋ ବାରେ ଦେହର ଛାଇ । ପାରିବ ଯଦି ଭସ୍ମପରେ ପଦ୍ମପାଦ ଚାଳିବ ଧୀରେ/ଜୀବନ ତେବେ ଲଭିବ ସଖୀ ନିଶ୍ଚୟ ମୁଁ ମରଣପାରେ ।"

> "She is coming my own, my sweet
> Were it even so airy a tread
> My heart would hear her and beat
> Were it earth in an earthly bed
> My dust would hear her and beat
> Had I Lain for a century dead
> Would start and tremble under her feet
> And blossom in purple red."
>
> (Moud Part-I by A. Tennyson)

ରୂପ ଓ ସୌନ୍ଦର୍ଯ୍ୟ ଚେତନା ସହିତ ଆଉ ଗୋଟାଏ ରୋମାଣ୍ଟିକ୍ ବିଭବ ସ୍ୱପ୍ନ ପ୍ରବଣତା ଅବିଚ୍ଛେଦ୍ୟଭାବେ ଜଡ଼ିତ । ବାସ୍ତବ ପରିବେଶ କବିର ଆଶା ପୂରଣ କରିପାରେ ନାହିଁ । ସ୍ୱପ୍ନପ୍ରବଣ ମନର ରୋମାଣ୍ଟିକ୍ ଚିନ୍ତା ବାସ୍ତବତାର ନିଷ୍ଠୁର ସଙ୍ଘାତରେ ମଉଳି ଯାଏ । "ଭାବିଥିଲି ଅବା ବକୁଳ ତଳେ/ସୁରଭି କୁସୁମ ଶୟନ ପରେ/ଯାପିବି ଜୀବନ ପ୍ରେୟସୀ ଧରି/ସ୍ୱପନ ପରି ।" (ତରୁଣ କବିର ଆଶା)—ଧୂପ । ତାଙ୍କର ସ୍ୱପ୍ନପ୍ରୟାସୀ କଳ୍ପନା-ପ୍ରବଣ, ପ୍ରେମମୟ ଅନ୍ତର ସର୍ବଦା ଦୂରର ଆକର୍ଷଣ ପ୍ରତି ଉନ୍ମୁଖତା ପ୍ରଦର୍ଶନ କରିଛି । ଅପରିଚିତ ପାଇଁ ନାରୀର ହୃଦୟାବେଗ ଏବଂ ଅଚିହ୍ନା ପ୍ରତି ସମ୍ମୋହିତ ଭାବନା ମୂର୍ତ୍ତି ହୋଇଉଠିଛି । ସାଧବଝିଅ ବିଦେଶୀ, ଅପରିଚିତ ଯୁବକକୁ ହୃଦୟ ଅର୍ପଣ କରିଛି । ଏହି ସମର୍ପଣ ପ୍ରେମିକର ସ୍ୱୀକାରୋକ୍ତିକୁ ଅପେକ୍ଷା ରଖିନାହିଁ । ତେଣୁ ପ୍ରେମାବେଗରେ ହୃଦୟ ବିଳପି ଉଠିଛି । "ବିଦେଶୀ ଯୁବକ ଜାଣିବେ କିସ ବାହିଲେ ତରୀ/ନାହିଁଗଲେ ବେଳା ନାହିଁ ଗଳେରେ/ତୋ ବିନା କେସନେ ଜୀବନ ଧରି ।" (ବିଜନବେଳା—ସାଧବଝିଅ) ପୂଜକଷ୍ଟ ଏକ ଦୂର ରାଜ୍ୟକୁ ଯିବାପାଇଁ କିଶୋର-

ମାନସର ବ୍ୟଗ୍ରତା 'ସାଧବପୁଅ' କବିତାରେ ସ୍ପଷ୍ଟ । ସମୁଦ୍ର ଭିତରେ ମାଣିକ୍ୟର ପଙ୍କଜ, ରୂପାର ନଈ ଦେଖିବା ପାଇଁ ଗୋଟାଏ କିଶୋରୀ ପ୍ରାଣର ବ୍ୟାକୁଳତା ଏଥିରୁ ପ୍ରତୀତ ହୁଏ । ରୂପ ଓ ସୌନ୍ଦର୍ଯ୍ୟର ଆକର୍ଷଣରେ ପରିଚୟର ଗୌରଚନ୍ଦ୍ରିକା ଅନାବଶ୍ୟକ ; ଏକଥା କବି ମାନସିଂହ ସ୍ୱୀକାର କରିଛନ୍ତି—"ଅଜଣା ଦୂରେ ତୁମେ, ମୁହିଁ ଅପରିଚିତ/ପୂଜାରୀସମ ବସି ରଚିବା ସ୍ତୁତିଗୀତ × × ପୂଜାରୀ ମାଗେ ନାହିଁ ଦେବତା ପରିଚୟ/କେବଳ ଆରାଧନେ ତା ସୁଖ ହୃଦୟ/ତେଣୁ ଅପରିଚିତ ବିଦେଶୀ ଗାଏ ଗୀତ/ତୋ ଲାଗି ବିଦେଶିନୀ କିଶୋରୀ/ସେ ରୂପ ନାକ ହୁଏ ପାଶୋରି ।" (ଇଉରୀ କିଶୋରୀ)

ପ୍ରଣୟିନୀ ନିକଟକୁ ମଳୟ ହୋଇ ଉଡ଼ିଯିବା, କୋଣାର୍କର ସୁନ୍ଦରୀ ପ୍ରସ୍ତର ମୂର୍ତ୍ତିଗୁଡ଼ିକୁ ଦେଖି କଳ୍ପନାରେ ସେମାନଙ୍କୁ ଜୀବନ୍ୟାସ ଦେବା ଏବଂ ଜ୍ୟୋତ୍ସ୍ନାମୟୀ ରଜନୀରେ ମହାନଦୀରେ ନୌବିହାର କରୁ କରୁ କଳ୍ପନା ଚକ୍ଷୁରେ ଅତୀତର ଗୌରବୋଜ୍ଜ୍ୱଳ ଐତିହ୍ୟକୁ ମନେପକାଇବା ଇତ୍ୟାଦି ବର୍ଣ୍ଣନା ମାନସିଂହଙ୍କ ଅପୂର୍ବ କଳ୍ପନାବିଳାସର ପରିଚୟ ବହନ କରେ । କୋଣାର୍କର ସୁନ୍ଦରୀ ପ୍ରସ୍ତର ମୂର୍ତ୍ତିଗୁଡ଼ିକୁ ଦେଖି କବି କଳ୍ପନାରେ ସେମାନଙ୍କୁ ଜୀବନ୍ୟାସ ଦେଇଛନ୍ତି । କବିଙ୍କ କଳ୍ପନାଶକ୍ତି ପ୍ରସ୍ତର ବିଗ୍ରହ ମୁଖରେ ଭାଷା ଫୁଟାଇବାକୁ ସମର୍ଥ ହୋଇଛି । "ନାଟ ମନ୍ଦିରେ ମନ୍ଦ୍ର ମୁରଜ ଧ୍ୱନିଇ/ଶତ ଶତ ଶିଳା ପଦ୍ମଥରେ, ନାଚ ପ୍ରଣୟୀ ।" (କୋଣାର୍କର ଲାସ୍ୟଲୀଳା)

ଜ୍ୟୋତ୍ସ୍ନାଚକିତ ରଜନୀରେ ମହାନଦୀ ବକ୍ଷରେ ବିହାର କରୁ କରୁ କବି କଳ୍ପନା ଚକ୍ଷୁରେ ଅତୀତ ଉତ୍କଳର ଗର୍ବ ଗାରିମା ଦର୍ଶନ କରିଛନ୍ତି । ମହାନଦୀ ଥିଲା ଅତୀତ ରାଜାମାନଙ୍କର ନୌବିହାରସ୍ଥଳୀ । ରାଜକୁମାରୀମାନଙ୍କର ଅଲକ୍ତକ-ରଞ୍ଜିତ ଚରଣର ମଞ୍ଜୁଳ ସୌନ୍ଦର୍ଯ୍ୟ କବି କଳ୍ପନାରେ ଅନବଦ୍ୟ ହୋଇଉଠିଛି । "ସେଦିନ ଏ ଶିଳାପରେ ଅବଗାହେ ଆସି/ସୁକୁମାରୀ ରାଜବାଳା ଆଙ୍କିଥିବ ତାର ଲାକ୍ଷାରକ୍ତ ପଦଛବି, କରି ମଉକାଶୀ କଠିଣ ପାଷାଣ ଦେହେ ଆନନ୍ଦ ସଞ୍ଚାର ।" (ମହାନଦୀରେ ଜ୍ୟୋତ୍ସ୍ନାବିହାର)

ରୋମାଣ୍ଟିକ୍ କବି ମାନସିଂହଙ୍କ ପ୍ରେମ ଓ ସୌନ୍ଦର୍ଯ୍ୟ ଚେତନା ସହ ପ୍ରକୃତିପ୍ରୀତିକୁ ଉଚ୍ଚସ୍ଥାନ ଦେଇଛନ୍ତି । ପ୍ରେମର ପ୍ରକାଶ ପାଇଁ କେତେବେଳେ ପ୍ରକୃତି ତାଙ୍କୁ ସୌନ୍ଦର୍ଯ୍ୟମଣ୍ଡିତ ମନେହୋଇଛି ତ କେତେବେଳେ ପ୍ରକୃତିରେ ସେ ପ୍ରାଣ ପ୍ରତିଷ୍ଠା କରିଛନ୍ତି । 'ପ୍ରାବୃଟ ସମ୍ଭାଷଣ', 'ବସନ୍ତୋତ୍ସବ' 'ଦକ୍ଷିଣା ପ୍ରତି' ଏବଂ 'ମହାନଦୀରେ ଜ୍ୟୋତ୍ସ୍ନାବିହାର'ରୁ କବିଙ୍କର ପ୍ରକୃତି ପ୍ରତି ଅନୁରାଗ ସହଜରେ

*

ଅନୁମିତ ହୋଇଥାଏ । ପ୍ରକୃତି ସମ୍ପର୍କରେ ସ୍ୱତନ୍ତ୍ର ଅଭିରୁଚି ପ୍ରାଚୀନ ଓଡ଼ିଆ କବି ପୋଷଣ କରିଥିବା ଜଣାଯାଏ ନାହିଁ । ତେଣୁ ପ୍ରାଚୀନ ଓ ମଧ୍ୟଯୁଗରେ ଓଡ଼ିଆ ସାହିତ୍ୟରେ ପ୍ରକୃତି ନାୟକ ନାୟିକାଙ୍କ ଚରିତ୍ରରେ ଉଦ୍ଦୀପନ ବିଭାବରୂପେ କାର୍ଯ୍ୟ କରିବା ବ୍ୟତୀତ ଅନ୍ୟକିଛି ଭୂମିକା ଲାଭ କରିପାରି ନ ଥିଲା । ଆଧୁନିକ କବିମାନେ ପ୍ରକୃତିଠାରେ ବ୍ୟକ୍ତିତ୍ୱ ଆରୋପ କଲେ । ପ୍ରକୃତିରେ ଜୀବନର ସନ୍ଧାନ ନେଲେ । କିନ୍ତୁ ମାନସିଂ ତାଙ୍କର 'ଓଡ଼ିଆ ସମାଜ ଓ ସାହିତ୍ୟ' (ପୃ-୬୨୦)ରେ ପ୍ରକାଶ କରିଛନ୍ତି, "ସଂସ୍କୃତ ସାହିତ୍ୟରେ ପ୍ରକୃତିର ଯେପରି ମନୋଜ୍ଞ ଚିତ୍ର ଏବଂ ପ୍ରକୃତି ଓ ମନୁଷ୍ୟ ଭିତରେ ପାରସ୍ପରିକ ମଧୁର ପ୍ରତିକ୍ରିୟା ଦେଖିବାକୁ ମିଳେ ; ପୃଥିବୀର କୌଣସି ପ୍ରାଚୀନ ସାହିତ୍ୟରେ ତାହା ଦେଖିବାକୁ ମିଳେନା । ବେଦର ସ୍ତୋତ୍ରସବୁ ପ୍ରକୃତିକୁ ଆଶ୍ରୟ କରି ଲିଖିତ । ଉପନିଷଦର ଅଧିଷ୍ଠାନ ହେଲା ପ୍ରକୃତି କୋଳରେ । ବାଲ୍ମୀକି, ବ୍ୟାସ, ଭାସ, କାଳିଦାସ ଓ ଭବଭୂତିଙ୍କ କାବ୍ୟ କବିତାରେ ପ୍ରକୃତି ଓତଃପ୍ରୋତ ଭାବରେ ମିଶି ରହିଛି । ଜଗତରେ କେତେ କବି କେତେ କାବ୍ୟ ଲେଖି ଗଲେଣି କିନ୍ତୁ ମୌସୁମୀ ମେଘ ଓ ହିମାଳୟ କାହା କାବ୍ୟର ନାୟକ ହୋଇଛି , ଯେପରି ହୋଇଛି, ଭାରତର କାଳିଦାସଙ୍କ କାବ୍ୟରେ ?"

ଇଂରେଜ କବି ସ୍କଟ୍ ଓ ବାଇରନ୍ଙ୍କ ପରି ରାଧାନାଥ ଥିଲେ ପ୍ରକୃତିର ବାହ୍ୟରୂପ ଓ ବୈଚିତ୍ର୍ୟମୟ ସୁଷମାର ଅନ୍ତରଙ୍ଗ ଉପାସକ । ପ୍ରକୃତିର ବୈଚିତ୍ର୍ୟ ମଧ୍ୟରେ କବିଚିତ୍ତ ଆନନ୍ଦ ଓ ବିସ୍ମୟରେ ଅଭିଭୂତ ଓ ରହସ୍ୟବୋଧରେ ବିମୂଢ଼ ହୋଇପଡ଼ୁଥିଲା । ତେଣୁ ପ୍ରକୃତି ଥିଲା ଆନନ୍ଦ, ବିସ୍ମୟ ଓ ରହସ୍ୟର ସ୍ମାରକୀ । ଓ୍ୱାର୍ଡସ ଓ୍ୱାର୍ଥଙ୍କ ପରି ପ୍ରକୃତି ଦର୍ଶନରେ ମଧୁସୂଦନ 'ହିମାଚଳେ ଉଦୟ ଉତ୍ସବ' ଦେଖି ତାଙ୍କର 'ରଶ୍ମିପ୍ରାଣେ ଦେବାବତରଣ'ର ଅନୁଭୂତି ଆସିଛି । ଏକ ରହସ୍ୟମୟ ମହାସତ୍ତ୍ୱର ଉପଲବ୍ଧି ସେ ବରାବର କରିଆସିଛନ୍ତି । ରାଧାନାଥ, ମଧୁସୂଦନ, ନନ୍ଦକିଶୋର, ଗଙ୍ଗାଧର, ଗୋପବନ୍ଧୁ ଓ ଗୋଦାବରୀଶଙ୍କ ଅଭିବ୍ୟକ୍ତିରେ ଆନନ୍ଦବୋଧ ଭିତରେ ରହସ୍ୟ ଓ ବିସ୍ମୟଭାବ ଅନ୍ତର୍ଲୀନ । କୁନ୍ତଳାକୁମାରୀଙ୍କ କବିଚିତ୍ତରେ ଏହି ଉପଲବ୍ଧି ପ୍ରକୃତିର ସ୍ତବ୍ଧତା ଭିତରେ ପ୍ରକାଶିତ । ରାଧାନାଥଙ୍କ କାବ୍ୟରେ ଉତ୍କଳର ଭୌଗୋଳିକ ପ୍ରକୃତି ଏବଂ ତା'ର ଆଞ୍ଚଳିକ ମାହାତ୍ମ୍ୟ ପ୍ରକାଶ ପାଇଥିଲା । ନୀଳକଣ୍ଠ, ଗୋପବନ୍ଧୁ ପ୍ରଭୃତି ଉତ୍କଳ ସାଧକମାନେ ଏହି ଚେତନାର ଅନୁବ୍ରତୀ ହୋଇଥିଲେ । ଏ ପ୍ରକାର ପ୍ରକୃତି ଉପାସନା ମୁଖ୍ୟତଃ ଏକ ସ୍ୱଦେଶ ପ୍ରେମର ଉଚ୍ଚାରଣ ଥିଲା । ସ୍କଟ କିମ୍ବା ମୁର୍ ପ୍ରଭୃତି ରୋମାଣ୍ଟିକ କବିମାନେ ଏହି ଶୈଳୀର ପ୍ରେରଣାଦାତା ଥିଲେ ।

ଓଡ଼ିଆ ସାହିତ୍ୟରେ ଉତ୍କଳୀୟ ପ୍ରକୃତି ରାଧାନାଥଙ୍କ ସୃଷ୍ଟିରେ ସ୍ୱତନ୍ତ୍ର ସତ୍ତା ଲାଭ କରିଛି । ଚିଲିକାର ପ୍ରକୃତି ପରିବେଷ୍ଟିତ 'ମାଳୁଦ'ର ଏକ ଶ୍ରେଷ୍ଠ ଦ୍ୱୀପରେ କବି ମାନସିଂହଙ୍କ ଜନ୍ମ । ସେ ରାଧାନାଥଙ୍କ ପରି ଆଞ୍ଚଳିକ ଉତ୍କଳୀ ପ୍ରକୃତିର ପୂଜା କରିବାକୁ ଯାଇନାହାନ୍ତି । ତାଙ୍କର 'ଦକ୍ଷିଣା ପ୍ରତି' କିମ୍ବା 'ପ୍ରାବୃଟ ସମ୍ଭାଷଣ' କୌଣସି ବିଶେଷ ଭୌଗୋଳିକ ସୀମାରେ ଆବଦ୍ଧ ନୁହେଁ । ସେଗୁଡ଼ିକ ଦେଶ କାଳ ସଙ୍କୀର୍ଣ୍ଣତାର ଗଣ୍ଡିରୁ ମୁକ୍ତିଲାଭ କରିଛି । ମାନସିଂହଙ୍କର 'ମହାନଦୀରେ ଜ୍ୟୋତ୍ସ୍ନାବିହାର' ଏକ ଅନବଦ୍ୟ ସୃଷ୍ଟି । ମାନସିଂହଙ୍କ ପୂର୍ବରୁ ଓଡ଼ିଆ କବିତାରେ ଜହ୍ନରାତି ସମ୍ପର୍କରେ ଅସଂଖ୍ୟ କବିତା ଥିଲା । କିନ୍ତୁ ଜ୍ୟୋତ୍ସ୍ନାଧୌତ ମହାନଦୀରେ କବିପ୍ରାଣର ମୁଗ୍ଧ ମଧୁର ଅନୁଭବ ଏତେ ଚମତ୍କାର ଭାବରେ ମାନସିଂହଙ୍କ ପୂର୍ବରୁ ଥିବାର ଦେଖାଯାଏ ନାହିଁ । ଗମ୍ଭୀର ରାତିର ମୌନ ପ୍ରକୃତି ସହିତ ଉତ୍କଳର ଇତିହାସ, ଜ୍ୟୋତ୍ସ୍ନାର ଯାଦୁସ୍ପର୍ଶରେ ଯୁଗ ଯୁଗର ଅଭିମାନ ତ୍ୟାଗକରି ମୁଖର ହୋଇଉଠିଛି । ପ୍ରକୃତିଠାରୁ ନିବିଡ଼ ବନ୍ଧନ ତୁଟାଇ ଅନ୍ଧକାରକୁ ଫେରିବାର ଆଶଙ୍କାରେ କବି ଦୁଃଖାଭିଭୂତ ହୋଇପଡ଼ିଛନ୍ତି । "ଫେରିବା କହୁଛି ବନ୍ଧୁ ପୁଣି ଅନ୍ଧକାରେ/ଫେରିବାକୁ ହେବ ସତେ ? ହାଏ ଏ ଜୀବନ ! / ଅବସର ନାହିଁ ମିଳେ କ୍ଷଣେ ଭୁଲିବାରେ/ଜୀବନର ହାହାକାର, ପ୍ରାଣର ଦହନ ।" (ମହାନଦୀରେ ଜ୍ୟୋତ୍ସ୍ନାବିହାର—ପୃ ୩୬)

ରାଧାନାଥଙ୍କ ପ୍ରକୃତି ଥିଲା ତାଙ୍କ ଆଞ୍ଚଳିକ କାବ୍ୟକାହାଣୀର ପଛଭୂମି । କିନ୍ତୁ ମାନସିଂ ପ୍ରକୃତି ପାଇଁ ପ୍ରକୃତିର ଅବତାରଣା କରିଛନ୍ତି । ଜହ୍ନ ସହିତ ଦକ୍ଷିଣା ପବନ ସହିତ ଉନ୍ମାଦିତ ହୋଇ ଉଠିଛନ୍ତି । 'ଶ୍ରାବଣ ଅଭିସାର' କବିତାରେ ବର୍ଷା ରାତିର ବର୍ଣ୍ଣନା ଅତ୍ୟନ୍ତ ହୃଦ୍ୟ ।

"ପ୍ରଲୟିତ ଘନଘୋର ଶିରାବଣ ନିଶୀଥ
ଅସର ଆଶାରେ ପୁର, ବିଲବନ ବ୍ୟଥିତ
ଅଣରୁଣ୍ଡ ବହେ ଘୋର ବତାସି
ଆକାଶରେ ନାହିଁ ତାରା, କାଳିମା ବିକଟ ଧରା
ଝଡ଼େ ଜୀବ ହୋଇଉଠେ ହତାଶୀ
କଳକଳ ଛଳଛଳ ବରଷାର ସଲିଳ
ବହିଯାଏ ଧାରେ ଧାରେ ଖାଇ ପଥ ଗଭୀର
ତାଳଗଛ ଦୋଳେ ଝଡ଼ ପବନେ
ଗୃହଆଡ଼େ ସାଇଁ ସାଇଁ, ଜନପ୍ରାଣୀ କେହି ନାହିଁ
ଦୁଆର ଆଉଜା ପ୍ରତି ଭବନେ ।"

ଶ୍ରାବଣ ଅଭିସାର—(ହେମଶସ୍ୟ) ଗ୍ରନ୍ଥାବଳୀ ପୃ ୨୧୪

ମାନସିଂହଙ୍କ କବିତାରେ ସନ୍ଧ୍ୟା ଏବଂ ସକାଳର ବର୍ଣ୍ଣନା ଅଧିକ ସ୍ୱାଦ୍ୟ ଏବଂ ମନ୍ଦନୀୟ । ରାଧାନାଥଙ୍କ ପରେ ଚିଲିକାର ସୌନ୍ଦର୍ଯ୍ୟ ଚିତ୍ରଣ କରି ଯଶସ୍ୱୀ ହେବା କୌଣସି କବିଙ୍କ ପକ୍ଷରେ ସମ୍ଭବ ହୋଇନାହିଁ । କିନ୍ତୁ ମାନସିଂହ ତାଙ୍କ ମନର ସମସ୍ତ ଉତ୍ତାପ ଦେଇ ଚିଲିକାର ସାମ୍ପ୍ରତିକ ଛବି ଆଙ୍କିଛନ୍ତି । ସନ୍ଧ୍ୟା ଓ ପ୍ରଭାତର ନିସର୍ଗ ଶୋଭା ସମ୍ଭାର ଭିତରେ କବି 'ଅବିରରଞ୍ଜିତ' ରକ୍ତ ମାଳନଭ, ସୁବର୍ଣ୍ଣ ବିଭାସେ, କନକିତ ନଭେ, କନକରଞ୍ଜିତ, ସ୍ୱର୍ଣ୍ଣକର, ସ୍ୱର୍ଣ୍ଣହେମନ୍ତର ଚିଲିକାର ଶୋଭା ବର୍ଣ୍ଣନାରେ 'ନୀଳଚକ୍ରବାଳ', ନୀଳଜଳରାଶି ଆଦି ଶବ୍ଦ ପ୍ରତି ଅଧିକ ଅନୁରକ୍ତ ପ୍ରକାଶ କରିଛନ୍ତି । "ରହିରେ ଆଗ୍ନେୟ ରଥ, ଦେଖିବ ସୁନ୍ଦରୀ/ ତା ନୀଳ ଲୋଚନେ ନୀଳ ଚକ୍ରବାଳ ଧରି/ନୀଳ ଜଳରାଶି କେତେ୍ରେ ଉନ୍ମୁକ୍ତ ଶୋଭାରେ ଉତ୍ତାନେ ରହିଛି ଶୋଇ ।" (ଚିଲିକା—ହେମଶସ୍ୟ ପୃ-୧୭୨)

ଦକ୍ଷିଣା ପ୍ରତି, ପ୍ରାବୃଟ ସମ୍ଭାଷଣ ଆଦି କବିତାରେ ସାର୍ବଭୌମ ପ୍ରକୃତି ରାଣୀର ଆରାଧନା ଅତି ଚମତ୍କାର ଭାବରେ ପ୍ରକାଶିତ ହୋଇଛି । ଦକ୍ଷିଣା ପବନକୁ କବି ବସନ୍ତର ଅଭିସାରିକା ଭାବରେ ଚିତ୍ରଣ କରିଛନ୍ତି । "ଦକ୍ଷିଣରେ ବାସ ତବ ? କାହା କନ୍ୟା ? କାହା ଗୃହବଧୂ ?/ବସନ୍ତ ପ୍ରେୟସୀ କିଗୋ—ସଙ୍ଗେ ତା'ର ଭ୍ରମ ଯେ ସର୍ବଦା/ଦକ୍ଷିଣ କବାଟ ଫେଇ ସୁକୁମାରି, ଶୈଳଆସ ଲଘୁ ସାଗର ପର୍ବତ ଡେଇଁ ଅଭିସାରେ ତାପାଇଁ ପ୍ରମଦା ।" ମାନସିଂହଙ୍କର ଏହି ଚିନ୍ତାଧାରା ସହିତ କବି ଶେଲିଙ୍କର 'Ode to the West Wind' ମନୋଭାବ ସାମ୍ୟ ପ୍ରତିଷ୍ଠା କରିପାରେ । (୩୪)

ଚିଲିକାର ଜଳାବର୍ତ୍ତି ମଧ୍ୟରେ ଅବସ୍ଥିତ ଦ୍ୱୀପପୁଞ୍ଜରେ କବିଙ୍କର ବାଲ୍ୟ, କୈଶୋର ଓ ଯୌବନର ବହୁଅଂଶ ଅତିବାହିତ ହୋଇଥିଲା । ସେଥିପାଇଁ ପଲ୍ଲୀ ଜୀବନର କେତେ ଗୋକୁଳ ନାୟକ, ଦୀନା ପଧାନଙ୍କ କାତର ଆଖି କବିଙ୍କୁ ବ୍ୟଥିତ କରିଛି । ସେହି ଗାଁର କେତେ କୁମାର ପୂର୍ଣ୍ଣିମାର ଉତ୍ସବମୁଖର ସନ୍ଧ୍ୟା, ପ୍ରକୃତିର କରାଳ କବଳରେ ବାତ୍ୟା ବିଧ୍ୱସ୍ତ ଶ୍ମଶାନରେ ପରିଣତ ହୋଇଛି । ପଲ୍ଲୀର ନିରୀହ ମଣିଷ ପ୍ରକୃତିର ବିପର୍ଯ୍ୟୟରେ ଈଶ୍ୱରଙ୍କୁ କେବଳ ସ୍ମରଣ କରେ । (୩୫) ପୁଣି କୈଶୋରର ସ୍ମୃତିରେ ଅମଳିନ ହୋଇ ରହିଥିବା

(୩୪) "ବକ୍ଷପାତି ନିଅ ମୋତେ ହେ ଚଞ୍ଚଳା ! ହେ ଶୀତଳ ଦେହି
ତୁମର ସେ ଦୂରଦେଶେ ।" (ଦକ୍ଷିଣାପ୍ରତି, ପୃ-୩୨୫)
"Oh lift me a wave, a leaf, a cloud"
( Ode to the West Wind : P. B. Shelly)

(୩୫) 'ନଷ୍ଟପଲ୍ଲୀ'—୧୯୪୩ର ବାତ୍ୟା ପରେ ଲିଖିତ, ଗ୍ରନ୍ଥାବଳୀ ପୃ-୩୫୫

'କାଞ୍ଚନ ଅପା' ଜୀବନର କରୁଣ ପରିଣତି ଓ ସ୍ନେହମୟୀ ଅପାର 'କଣ୍ଟକାଚ' ସମ୍ବୃଦ୍ଧନ ପାଇଁ ଦୁଇଟି ଅମଳିନ ସୃଷ୍ଟିର ସ୍ୱାକ୍ଷର ଅଙ୍କନ କରିଛି ।

"ପ୍ରାକୃତିକ ସୁଷମା ସହ ଦୁର୍ଲ୍ଲଭ ମିଳନ ଘଟିଛି ଏକ ତରୁଣ ସରସ ରୂପ-ବୁଭୁକ୍ଷୁ, ସୂକ୍ଷ୍ମ ଦୃଷ୍ଟିବନ୍ତ ପ୍ରତିଭାର—ଯେପରିକି ଶହେବର୍ଷ ତଳେ ଘଟିଥିଲା ଚନ୍ଦ୍ରିକା ଓ ରାଧାନାଥଙ୍କ ଭିତରେ ।" (୩୬) 'ଜୀବନ' କାବ୍ୟରେ କବି ମାନସିଂହ ରୂପରୁ ଦୃଷ୍ଟି ଫେରାଇ ପ୍ରକୃତିର ରୂପୋତ୍ତର ଜଗତ ପ୍ରତି ଆକୃଷ୍ଟ ହୋଇଛନ୍ତି । 'କବି ଓ ପ୍ରକୃତି' ଶୀର୍ଷକ ପାଞ୍ଚଟି ସନେଟ୍‌ରେ ସେ ପୌଷ ସନ୍ଧ୍ୟା, ଫାଲ୍‌ଗୁନ ପ୍ରଭାତ, ବୈଶାଖ ତାପଦଗ୍ଧ ଦିବା, ପ୍ରାବୃଟ ଦୁର୍ଦ୍ଦିନ ଓ ଶରତ ପୂର୍ଣ୍ଣିମା—ପ୍ରକୃତିର ଏହି ପାଞ୍ଚୋଟି ବିଭବ ମଧ୍ୟରେ ସେ ଭୂମାଙ୍କୁ ଭେଟିଛନ୍ତି । ପ୍ରକୃତି ମଧ୍ୟରୁ ଈଶ୍ୱରଙ୍କ ସତ୍ତା ଉପଲବ୍‌ଧି କରିହୁଏ । ତାଙ୍କର ଏହି ପ୍ରକୃତି ପ୍ରୀତି ମଧ୍ୟରେ ଉପନିଷଦୀୟ ଚିନ୍ତାଧାରାର ବହିଃପ୍ରକାଶ ହୋଇଛି । 'ସେଦିନର କବିତା'ଠାରୁ 'ସିନ୍ଧୁ ଓ ବିନ୍ଦୁ' ପର୍ଯ୍ୟନ୍ତ କବି ମାନସିଂହଙ୍କ ପ୍ରକୃତି ପ୍ରେମର ପରାକାଷ୍ଠା ପ୍ରତିପାଦିତ ହୋଇଛି ।

**ସ୍ୱଦେଶ ପ୍ରେମ**—ସ୍ୱଦେଶ ପ୍ରେମର ରୋମାଣ୍ଟିକ୍ ଚେତନାଠାରୁ ପଲ୍ଲୀ ଜୀବନର ଅସଂଖ୍ୟ ଭାବାନୁଭୂତି ଏବଂ ଆଧିଭୌତିକ ଅନୁଭବ ମଧ୍ୟରେ ତାଙ୍କ କବିତା ଦୀର୍ଘ ଚାଳିଶ ବର୍ଷ ଧରି ନୂତନତ୍ୱର ପରିଚୟ ଦେଇପାରିଛି । ସମସାମୟିକ ସବୁଜ କବିମାନେ ସତ୍ୟବାଦୀ ଯୁଗର କାବ୍ୟାଦର୍ଶକୁ ଉପେକ୍ଷା କରିଥିବାବେଳେ ମାନସିଂହଙ୍କ ସୃଷ୍ଟି ସମ୍ଭାରରେ ଏହା କୋଣାର୍କ (୩୭)ରେ ଜନ୍ମନେଇ କ୍ରମେ ବାରବାଟୀ (୧୯୨୬), ସାଧବଝିଅ (୧୯୨୯) ଉତ୍କଳ ବନ୍ଦନା (୧୯୩୭) ମଧ୍ୟଦେଇ 'କମଳାୟନ'ରେ (୧୯୪୭) ସମ୍ପୂର୍ଣ୍ଣ ବିକଶିତ ହୋଇଅଛି । ଏସବୁ କବିତାରେ ରୋମାଣ୍ଟିକ୍ ଭାବନା ଓ ଜାତୀୟବାଦୀ ଚେତନାର ଚମତ୍କାର ସମନ୍ୱୟ ଘଟିଛି । ମା ଓଡ଼ିଶା, ଉତ୍ତିଷ୍ଠ ଉତ୍କଳ, ବନ୍ଦେ ଉତ୍କଳ ଜନନୀ, ବୋଇତ ବନ୍ଦାଣ, ତଅପୋଇ ବିଳାପ, ବିଜୟ ଲକ୍ଷ୍ମୀ ଆଦିରେ ସ୍ୱଦେଶବତ୍ସଳତାର ମୁଦ୍ରା ସୁସ୍ପଷ୍ଟ । 'କୋଣାର୍କର ଲାସ୍ୟଲୀଳା' (୧୯୩୫) (୩୮), ମୁମୂର୍ଷୁ କୋଣାର୍କ (୩୯), ବାରବାଟୀ

(୩୬) ନିସର୍ଗର ଉଦ୍‌ଗାତା ମାନସିଂହ— ଦାଶରଥି ଦାସ (ମାନସିଂହ ସୃଷ୍ଟି ସମୀକ୍ଷା) ପୃ-୩୧

(୩୭) କୋଣାର୍କ—ବାରୁଣୀ ଆଷାଢ଼ ୧୩୩୩ (ଜୁନ୍ ୧୯୨୬), ପ୍ରଥମେ ଲେଖକ 'ଶ୍ରୀ' ଛଦ୍ମନାମରେ ପ୍ରକାଶିତ ।

(୩୮) 'କୋଣାର୍କର ଲାସ୍ୟଲୀଳା'—ସହକାର, ୧୬ ଭାଗ, ଭାଦ୍ର/ଆଶ୍ୱିନ ୧୩୪୩ (ଅଗଷ୍ଟ-ସେପ୍‌ଟେମ୍ବର ୧୯୩୫)

(୩୯) ମୁମୂର୍ଷୁ କୋଣାର୍କ—ଗ୍ରନ୍ଥାବଳୀ ପୃ-୨୫୫

(୪୦), ମାଟିବାଣୀ (୪୧), ସାଧବ ଝିଅ (୪୨), ମହାନଦୀରେ ଜ୍ୟୋତ୍ସ୍ନାବିହାର, ଉତ୍କଳବନ୍ଦନା ଆଦି କବିତାରେ ରୋମାଣ୍ଟିକ୍ ଅନୁଭବ ସହିତ ଜାତୀୟ ଚେତନାର ଅପୂର୍ବ ସମନ୍ୱୟ ଘଟିଛି । 'ବାରବାଟୀ' ଓଡ଼ିଶାର ଲୁପ୍ତ ଗୌରବର ମୂକସାକ୍ଷୀ । ସେହି ବାରବାଟୀର ପତନରେ କବିଙ୍କର କାବ୍ୟସ୍ୱର ଅତ୍ୟନ୍ତ ବ୍ୟାହତ । ଏହି କାବ୍ୟ ପ୍ରତିକ୍ରିୟାର ସ୍ୱାଭାବିକ ପରିଣତି ଭାବେ ସେ ହୁଏତ ଅତୀତର ଗୌରବାବହି ନୌଯାତ୍ରା ପ୍ରସଙ୍ଗକୁ ବାଛି ନେଇଛନ୍ତି 'ସାଧବ ଝିଅ' ସୃଷ୍ଟି ଭିତରେ । ତେଣୁ ମାନସିଂହଙ୍କ କାବ୍ୟ ଦରବାରରେ ମଧ୍ୟଯୁଗୀୟ ଇତିହାସ ପୁଣି ଥରେ ପୁନରାବୃତ୍ତ ହୋଇଛି । ସୌନ୍ଦର୍ଯ୍ୟର କବି ମାନସିଂହ ରୋମାଣ୍ଟିକ୍ କଳ୍ପନାବିଳାସୀ ହୋଇ ମଧ୍ୟ ସବୁଜ କବିମାନଙ୍କ ପରି ଜାତୀୟ ଜୀବନର ସମସ୍ୟାକୁ ଉପେକ୍ଷା କରିନାହାନ୍ତି । କାବ୍ୟଗୁଡ଼ିକର ବାହ୍ୟରୂପ, ପ୍ରେମ ପ୍ରଣୟମୂଳକ ହେଲେହେଁ—ତାହାର ଅନ୍ତଃସ୍ୱର ଜାତୀୟ ପ୍ରୀତିରେ ଉଜ୍ଜ୍ୱଳ । (୪୩) ସେ ସବୁବେଳେ ଓଡ଼ିଶାର ଐତିହ୍ୟ ପ୍ରତି ସଚେତନ ହୋଇ ଉଠିଛନ୍ତି । ଏହି ଉତ୍କଳୀୟ ପ୍ରୀତିରୁ ଜନ୍ମ ନେଇଛି ସାଧବଝିଅ, ଜେମା ପରି କେତୋଟି ଚରିତ୍ର । ଓଡ଼ିଶା ମାଟିରେ ଏମାନଙ୍କର ସୃଷ୍ଟି । କାଳ୍ପନିକ ହେଲେ ମଧ୍ୟ ଏମାନେ ଯେପରି ଓଡ଼ିଶାର ପାଣି ପବନ ସହିତ ଓତଃପ୍ରୋତ ଭାବେ ଜଡ଼ିତ ରହିଛନ୍ତି । 'ସାଧବ ପୁଅ' ମାଲୁଣୀ, ମାଳା ଗ୍ରହଣ ଆଦି ଅଧ୍ୟାୟ ଗୁଡ଼ିକ କବିତାକାରରେ ଲିଖିତ ହୋଇ ମାନସିଂହଙ୍କ ରୋମାଣ୍ଟିକ ଚେତନାର ପ୍ରକାଶ ଘଟାଇଛି । 'ସାଧବଝିଅ' ମାନସିଂହଙ୍କର ଦେଶପ୍ରୀତିର କାବ୍ୟ । ଜୀବନାନୁଭୂତିର କାବ୍ୟ । ରୋମାଣ୍ଟିକ୍ ଚେତନାର କାବ୍ୟ । "କୋଣାର୍କଠାରୁ ସାଧବ ଝିଅ ପର୍ଯ୍ୟନ୍ତ ତାଙ୍କର ଏହି କାବ୍ୟମାନସରେ ରୋମାଣ୍ଟିକ୍ ଓ ଜାତୀୟବାଦୀ ଚେତନାର ଚମତ୍କାର ସହାବସ୍ଥାନ ଦେଖିବାକୁ ମିଳେ । ପ୍ରଥମ ତିନୋଟି ତାଙ୍କ

---

(୪୦) ବାରବାଟୀ—ଉତ୍କଳ ସାହିତ୍ୟ ୩୦/୮ ମାର୍ଗଶୀର ୧୩୩୪ (ନଭେମ୍ବର ୧୯୨୭ ପରେ)

(୪୧) ଗ୍ରନ୍ଥାବଳୀ—ପୃ ୩୧୬ରେ ସଂଯୋଜିତ

(୪୨) ସାଧବ ଝିଅ—ଉତ୍କଳ ସାହିତ୍ୟ ୩୩/୨ ଜ୍ୟେଷ୍ଠ ୧୩୩୬ (ମେ ୧୯୨୯) ସାଧବ ଝିଅ କାବ୍ୟର ପ୍ରଥମ କବିତା

(୪୩) କୋଣାର୍କର ସୈକତ ପ୍ରାଙ୍ଗଣରେ ଠିଆହୋଇ ବିସ୍ମୟ ଓ ବିନୟରେ ମଥାନତ କରି ମୁଁ ତେଣୁ ଓଡ଼ିଆକୁ ବାରମ୍ବାର ନମସ୍କାର କରିଛି । କାରଣ ଓଡ଼ିଆ ସ୍ରଷ୍ଟା ଏବଂ ସେହି ସୂତ୍ରରେ ଓଡ଼ିଆ ଜାତିକୁ ମୁଁ ଭଲ ପାଇଛି— 'ଓଡ଼ିଆ ସମାଜ ଓ ସାହିତ୍ୟ' ମାନସିଂହ ଗ୍ରନ୍ଥାବଳୀ ପୃ-୫୮୭

କାବ୍ୟର ଆଭିମୁଖ୍ୟ ହେଲେ ଅନ୍ୟଟି ଏହାର ପରିପ୍ରକାଶ ମାତ୍ର ।" (୪୪) ବେଳେବେଳେ ରୋମାଣ୍ଟିକ୍ କବି ମାନସିଂହ ଅତ୍ୟନ୍ତ ପ୍ରତି ଭାବପ୍ରବଣ ହୋଇପଡ଼ିଛନ୍ତି । 'ମହାନଦୀରେ ଜ୍ୟୋତ୍ସ୍ନାବିହାର'ରେ ଏହି ଭାବପ୍ରବଣତା ଅଧିକ ମାର୍ମିକ ହୋଇଉଠିଛି । "ହାୟରେ ଉତ୍କଳ ଭୂମି ପ୍ରକୃତି ସୁନ୍ଦର/ମହାନଦୀସମ ନଦୀ ଶିବସମ ଗିରି/କାନନେ କେଦାରେ ଲକ୍ଷ୍ୟ ଶୋଭାର ବହର/ଥାଉଁ ତୋର କହି କମା ଏତେ ହତଶିରି ।" (ଗ୍ରନ୍ଥାବଳୀ ପୃ-୩୧୬)

ତତ୍କାଳୀନ ଓଡ଼ିଶାରେ ବିଚ୍ଛିନ୍ନାଞ୍ଚଳର ମିଶ୍ରଣ ପାଇଁ ଜାଗରଣ ସୃଷ୍ଟି ହୋଇଥିଲା । କବି ନିଜେ ଏହି ଆନ୍ଦୋଳନର ପୁରୋଧାମାନଙ୍କ ଦ୍ୱାରା ପ୍ରଭାବିତ ହେବାକଥା ତାଙ୍କ 'ଶିକ୍ଷାବିତ୍ତର ଗାଥା'ରେ ପ୍ରକାଶ କରିଛନ୍ତି । "ସେଇଠି ପ୍ରଥମେ ମଧୁବାବୁଙ୍କୁ ଦେଖିଲି, ଦେଖିଲି ଗୋପବନ୍ଧୁଙ୍କୁ, ଦେଖିଲି ସତ୍ୟବାଦୀର ବରେଣ୍ୟ ଶିକ୍ଷକବୃନ୍ଦଙ୍କୁ, ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ ଓ କୃପାସିନ୍ଧୁଙ୍କୁ । ୧୧[୧୨ ବର୍ଷ ବାଳକର ଅନ୍ତରତମ ଗହନତଳେ ହୁଏତ ସ୍ୱପ୍ନ ଗଜୁରି ଉଠିଥିବ ଏଇମାନଙ୍କ ପରି ଜଣେ ହେବାକୁ × × × ଜାତୀୟ ଜୀବନର ପୁଣ୍ୟସ୍ରୋତରେ ପୂର୍ଣ୍ଣ ଅବଗାହନର ଆଶା ।" (୪୫)

ଜନ୍ମଭୂମି ପ୍ରତି କବିଙ୍କର ଅନ୍ତରଙ୍ଗ ଅନୁଭବ ତାଙ୍କୁ ପଲ୍ଲୀ ଜୀବନ ପ୍ରତି ଶ୍ରଦ୍ଧାଶୀଳ କରାଇଛି । ପଲ୍ଲୀର ଅଗଣିତ ସୁଖ ଦୁଃଖ, ହସ କାନ୍ଦ ତାଙ୍କ ଲେଖନୀରେ ମହନୀୟ ହୋଇଉଠିଛି । ରେଙ୍ଗୁନ ଚିଠି, ପଲ୍ଲୀ ସନ୍ଧ୍ୟା, ବର୍ଷା ସନ୍ଧ୍ୟା, ଘରପଣା, ବାଳଲକ୍ଷ୍ମୀ, ଜଣ୍ଡକାଚ, ନଷ୍ଟପଲ୍ଲୀ ଆଦି 'ମାଟିବାଣୀ'ରେ ପ୍ରକାଶିତ କବିତାଗୁଡ଼ିକରୁ ତାଙ୍କ ପଲ୍ଲୀ ପ୍ରୀତି ଭାସ୍ୱର ହୋଇଉଠେ । ମାଟିବାଣୀ କବିତା ସଂକଳନ କରି କବିଙ୍କର ଜନ୍ମମାଟି ପ୍ରତି ପ୍ରୀତି ପ୍ରକଟିତ ହୋଇପାରିଛି । ପଲ୍ଲୀ ସ୍ନାନଘାଟର ମୁଗ୍ଧମଧୁର ଜୀବନଚର୍ଯ୍ୟା, ସନ୍ଧ୍ୟାକାଳୀନ କୂଳବଧୂ, ଶିଶୁ ଓ କୃଷକ ଆଦିଙ୍କର ନିତ୍ୟ ନୈମିତ୍ତିକ ଜୀବନର କୋଳାହଳ ତାଙ୍କ ଲେଖନୀରେ ଚମତ୍କାର ଫୁଟି ଉଠିଛି । "ସନ୍ଧ୍ୟା ହେଲା ଏବେ ଆକାଶ ଅଗଣାରେ/ଲାଗିଲେ ଦେବବାଳା ପ୍ରଦୀପ ଜାଳିବାରେ × × ମଳିନ ଆଲୋକିତ ଭାବିତ ଘରୁ ଆସେ/ଭଣଇ ଜଗନ୍ନାଥ— ଶୋରିଣ ନାହିଁ ପାଶେ । ହଳଦୀ-ଲେପେ ତରି ଶିଶୁ ରୋଦଇ କାହିଁ/ବିଲୁଆ ଡାକ ଦେଲା ରଜନୀ ହେଲା ଭାଇ ।" (ପଲ୍ଲୀସନ୍ଧ୍ୟା—ପୃ ୩୨୩)

ଉତ୍କଳୀୟ କୃଷକ ପରିବାରର କରୁଣ ଜୀବନ ଚିତ୍ର ଦେବାରେ କବି ମାନସିଂହ ସଫଳ ହୋଇପାରିଛନ୍ତି । ପଲ୍ଲୀର ଗ୍ରୀଷ୍ମାଗ୍ନିଦଗ୍ଧ ଅଗଣାର ମଣିଷଟି

(୪୪) ସବୁଜରୁ ସାଂପ୍ରତିକ—ଡଃ ନିତ୍ୟାନନ୍ଦ ଶତପଥୀ, ପୃ-୧୨୪

(୪୫) 'ଶିକ୍ଷାବିତ୍ତର ଗାଥା'—ଡଃ ମାୟାଧର ମାନସିଂହ, ପୃ ୧୭-୧୮

ଯନ୍ତ୍ର ସହିତ, ଯନ୍ତ୍ର ପାଲଟିଯିବାର ବେଦନାଦ୍ର କାହାଣୀ ରେଙ୍ଗୁନ୍ ଚିଠିରେ ପ୍ରକାଶିତ ହୋଇଛି ।

ବ୍ୟକ୍ତିପୂଜା ତାଙ୍କ ସ୍ୱଦେଶପ୍ରୀତିର ଅନ୍ୟ ଏକ ଦିଗ । ସ୍ୱଭାବ କବି ଗୋପାଳକୃଷ୍ଣ, ଭଗବତୀଚରଣ ପାଣିଗ୍ରାହୀ, ରାଜକୁମାର ଶୁଭେନ୍ଦ୍ର ଏବଂ ରାଧାନାଥ ପ୍ରଭୃତି ବ୍ୟକ୍ତିତ୍ୱ ପ୍ରତି ତାଙ୍କର ସମ୍ମାନବୋଧ ସ୍ୱଦେଶପ୍ରୀତିର ଅନ୍ୟତମ ନିଦର୍ଶନ । ଉତ୍କଳମଣି ଗୋପବନ୍ଧୁ, ମହାତ୍ମା ଗାନ୍ଧୀ ପ୍ରଭୃତି ବ୍ୟକ୍ତିତ୍ୱ ପ୍ରତି କବିଙ୍କର ସମ୍ମାନବୋଧ ବିପୁଳ । ସ୍ୱର୍ଗାଦପି ଗରୀୟସୀ ତାଙ୍କର ଜନ୍ମଭୂମି । ଯୁଗେ ଯୁଗେ ଏ ଜାତି ବୀର ଏବଂ ସାଧକମାନଙ୍କର ପୂଜା କରିଆସିଛି । (୪୬) ବାପୁ ତର୍ପଣ କବିତାରୁ କବିଙ୍କର ମହାଭାରତୀୟ ଜାତୀୟତା ଅଧିକ ସ୍ପଷ୍ଟ ହୋଇଉଠେ । (୪୭) ଅସ୍ପୃଶ୍ୟ ମନର ଦୁଃଖକୁ ହୃଦୟଙ୍ଗମ କରୁଥିବା ଏହି ବ୍ୟକ୍ତିତ୍ୱକୁ କବି ବ୍ରାହ୍ମଣର ସମ୍ମାନ-ପ୍ରଦାନ କରିଛନ୍ତି । ମାନସିଂହଙ୍କ ସମ୍ପର୍କରେ ଡଃ ସଚ୍ଚିଦାନନ୍ଦ ରାଉତରାୟ କହନ୍ତି "ପଦ୍ମଚରଣଙ୍କ ପରି ସେ ଅତୀତକୁ ବାହୁନି ଗୁଡ଼ାଏ କାନ୍ଦି ନାହାନ୍ତି ସତ ; କିନ୍ତୁ ଏ ଦେଶର ମହାନ୍ ଐତିହ୍ୟକୁ ସେ ଯେପରି ଭାବମୂର୍ତ୍ତି ମଧ୍ୟରେ ଫୁଟାଇ ପାରିଛନ୍ତି ; ସେପରି ଅନ୍ୟ କେହି କରିପାରି ନାହାନ୍ତି । × × × ଆମ ସମସ୍ତଙ୍କ ଅପେକ୍ଷା ମାନସିଂହ ହିଁ ଥିଲେ ଅତି ଅଧିକ ମାତ୍ରାରେ ଓଡ଼ିଶାର ସ୍ଥାୟୀ ବାସିନ୍ଦା । ତାଙ୍କୁ ମନେହୁଏ ସେ ଯେପରି ଏଠାରେ ପ୍ରାଚୀନତମ ଆଦିବାସୀ ଆଉ ଆମେ ସମସ୍ତେ କେଉଁ ପରବର୍ତ୍ତୀ ପର୍ଯ୍ୟାୟର ଲୋକ ଏଠିକି ଆସି ଆସ୍ଥାନ ଜମାଇଛୁ । ପୈତୃକ ଭିଟାଭୂମିକୁ ଶେଷ ପର୍ଯ୍ୟନ୍ତ ଏପରି ଜାବୁଡ଼ି ଧରି ପଡ଼ି ରହିଥିବାର ଧୈର୍ଯ୍ୟ ଓ ପ୍ରବୃତ୍ତିରେ ସେ ଥିଲେ ସତରେ ଅଟଳ ଓ ଅପରିବର୍ତ୍ତନୀୟ ।" (୪୮)

ଯେଉଁମାନେ ମାନସିଂହଙ୍କ ସମ୍ପର୍କରେ ଆସିଥିଲେ ସେମାନେ ଏହିପରି ଭାବରେ ମାନସିଂହଙ୍କୁ ଚିହ୍ନଣ କରିଛନ୍ତି—"ଆପଣ ମଧୁ ବାରିଷ୍ଟର ଓ ଉତ୍କଳମଣି

---

(୪୬) "ଶିର ପଛେ ତାର କୋଟି ମସ୍ତକ ନୁଆଁଇ ଓଡ଼ିଆ ଜାତି
ସମ୍ମାନ କର ତାରେ ଯେ କରିଲା ପୁଣ୍ୟ ତୋହର ମାଟି ।"
ଗୋପ ପ୍ରୟାଣ—ଗ୍ରନ୍ଥାବଳୀ ପୃ-୩୪୦

(୪୭) "ବ୍ରାହ୍ମଣ ତମେ ଉପବୀତ ତବ ଅସ୍ପୃଶ୍ୟ ପ୍ରାଣର ଗହନ ବ୍ୟଥା
ପୁରୁଷୋତ୍ତମ ଜୀବନ ତମର ବିରାଟ ଜାତିର ମରମ କଥା ।"
ବାପୁ ତର୍ପଣ—ଗ୍ରନ୍ଥାବଳୀ ପୃ ୨୬୧

(୪୮) କବି ମାୟାଧର ମାନସିଂହ ; ଏକ ସ୍ୱପ୍ନ ପ୍ରୟାଣ—ମାନସିଂହ ପରିକ୍ରମା, ଡଃ ସଚ୍ଚିଦାନନ୍ଦ ରାଉତରାୟ—ପୃ ୧୪୭

ଗୋପବନ୍ଧୁଙ୍କ ମାର୍ଗରେ ଥିଲେ ଓଡ଼ିଆ । ଗାନ୍ଧୀ ଓ ରବୀନ୍ଦ୍ରଙ୍କ ମାର୍ଗରେ ଥିଲେ ଭାରତୀୟ । ଟଲଷ୍ଟୟ, ରସେଲ୍ ଓ ସୋଲ୍ଜେନିତ୍ସିନ୍ ଆଦିଙ୍କ ଧାରାରେ ଥିଲେ ଆନ୍ତର୍ଜାତିକ ମାନବବାଦୀ ଏବଂ ଶେଷରେ ଶ୍ରୀ ଅରବିନ୍ଦ ଶ୍ରୀମାଙ୍କ ମାର୍ଗରେ ଥିଲେ ମହାଜାଗତିକ ଓ ଅତିମାନବବାଦୀ । (୪୯)

କବି ମାନସିଂହ ଓଡ଼ିଶାର ଗୌରବମୟ ପରମ୍ପରା ଏବଂ ଐତିହ୍ୟ ପ୍ରତି ଆକୃଷ୍ଟ ହୋଇଛନ୍ତି ଏଥିରେ ସନ୍ଦେହ ନାହିଁ । 'ଜେମା' କାବ୍ୟ ପ୍ରେମମୂଳକ ହେଲେହେଁ ତାହାର ଅନ୍ତରାଳରେ ଆମର ଜାତୀୟ ଜୀବନର ଅଧୋଗତିର ସ୍ୱର ଝଙ୍କୃତ ହୋଇଛି । 'କମଳାୟନ'ରେ ସେହିପରି ମାନସିଂହ ମହାଭାରତୀୟ ଜାତୀୟ ଚେତନା ସହିତ ବସୁଧୈବ କୁଟୁମ୍ବକମ୍‌ର ସ୍ୱପ୍ନ ଦେଖିଛନ୍ତି । ମାନସିଂହ ଉତ୍କଳୀୟ ଚେତନାରେ ସୀମାବଦ୍ଧ ନ ଥିଲେ । ତାଙ୍କ ସାହିତ୍ୟରେ ମହାଭାରତୀୟ ଚେତନା ସହିତ ଉତ୍କଳୀୟ ଚେତନାର ଅପୂର୍ବ ସମନ୍ୱୟ ଘଟିଥିଲା । ମାନସିଂହଙ୍କ ଉତ୍କଳୀୟ ଜାତୀୟ ଚେତନାର ପ୍ରେରଣା ଉତ୍କଳ ସମ୍ମିଳନୀ, ସତ୍ୟବାଦୀ ଗୋଷ୍ଠୀ ଓ କବିବର ରାଧାନାଥ, ଫକୀରମୋହନ, ମଧୁସୂଦନଙ୍କ ଲେଖାରୁ ପାଇଥିଲେ । ତତ୍କାଳୀନ ସ୍ୱାଧୀନତା ସଂଗ୍ରାମ, ବିଭିନ୍ନ ସ୍ଥାନ ଭ୍ରମଣ ଓ ଅଧ୍ୟୟନରୁ ତାଙ୍କ ଚେତନାରେ ମହାଭାରତୀୟ ଜାତୀୟ ଚେତନା ଉଦ୍ଭାସିତ ହୋଇଥିଲା । କାବ୍ୟ କବିତା, ନାଟକ ନାଟିକା, ପ୍ରବନ୍ଧ ଓ ସନ୍ଦର୍ଭ, ଭ୍ରମଣ କାହାଣୀ, ଜୀବନୀ, ଉପନ୍ୟାସ ତଥା ସମାଲୋଚନା, ବିଭିନ୍ନ କ୍ଷେତ୍ରରେ ମାନସିଂହ ଲେଖନୀ ଚାଳନା କରିଯାଇଛନ୍ତି । ରାଧାନାଥଙ୍କ ପ୍ରଗାଢ଼ ଉତ୍କଳପ୍ରୀତି କବିଙ୍କୁ ମୁଗ୍ଧ କରିଛି । ରାଧାନାଥଙ୍କ ପ୍ରତି ତାଙ୍କ ହୃଦୟର ଭକ୍ତି ନିବେଦନ କରିଛନ୍ତି, "ଉତ୍କଳର ନଈ, ବଣେ, ହ୍ରଦେ, ଗିରିମାଳେ/ଯେ ରୂପ ନ ଫୁଟି କାହା ଲେଖନୀର ଗାରେ/ଥିଲା ରହି ଯୁଗ ଯୁଗ ମୌନ ଅଭିମାନେ, ପୂଜା ସେ ପାଇଲା ; ରାଧାନାଥ, ତବ ଗାନେ" (ପୃ-୬୭୭) । ମାନସିଂହ ପରେ ମଧୁସୂଦନଙ୍କ ସମ୍ପର୍କରେ ଲେଖିଥିଲେ ମଧୁସୂଦନଙ୍କ କର୍ମ ଓ ବ୍ୟକ୍ତିତ୍ୱର ମୂଲ୍ୟ ଓଡ଼ିଆମାନେ ଏପର୍ଯ୍ୟନ୍ତ ଉତ୍ତମରୂପେ ହୃଦୟଙ୍ଗମ କରିଛନ୍ତି ବୋଲି କୁହାଯାଇ ପାରିବ ନାହିଁ । ମାନସିଂହଙ୍କ ନିଜ ଉକ୍ତି ତାଙ୍କର ପ୍ରତି ପ୍ରଯୁଜ୍ୟ । ମାନସିଂହଙ୍କ କର୍ମ ବ୍ୟକ୍ତିତ୍ୱ ଓ ଜାତୀୟ ଚେତନାର ମୂଲ୍ୟ ଓଡ଼ିଆମାନେ ଏପର୍ଯ୍ୟନ୍ତ ହୃଦୟଙ୍ଗମ କରିଛନ୍ତି ବୋଲି କୁହାଯାଇପାରିବ ନାହିଁ । ବୋଧହୁଏ ଏହିପରି ଗୋଟାଏ ଅବଶୋଷ ଜୀବନର ଶେଷ ପର୍ଯ୍ୟନ୍ତ ତାଙ୍କ ମନରେ ରହିଥିଲା ।

(୪୯) ଗୁଣ ସୁମରି ହୁଏନ୍ତି ବିକଳ—ମହାପାତ୍ର ନୀଳମଣି ସାହୁ, ମାନସିଂହ ପରିକ୍ରମା—ପୃ ୧୪୯

**ବିଷାଦବାଦ—**

ରୋମାଣ୍ଟିକ୍ ବିଷାଦବାଦ କବିଙ୍କ ଚେତନାକୁ ବହୁସ୍ଥଳରେ ଆକ୍ରାନ୍ତ କରିଥିବାର ଜଣାଯାଏ । ଏ ସମ୍ପର୍କରେ କବିଙ୍କର ସ୍ପଷ୍ଟୋକ୍ତିରୁ ଜଣାଯାଏ, "ପ୍ରତ୍ୟେକଟି ସନେଟ୍ ସ୍ୱୟଂସମ୍ପୂର୍ଣ୍ଣ ହେଲେହେଁ ସେ ସବୁଗୁଡ଼ିକୁ ସମ୍ପର୍କିତ କରି ଏକ ଶୋକବିକ୍ଷୁବ୍ଧ ଅଶ୍ରୁଦଗ୍ଧ ପ୍ରାଣର କାତରବାଣୀ ଓ ତତ୍ତ୍ୱ ଜିଜ୍ଞାସା ଓତଃପ୍ରୋତ ଭାବରେ ସୂତ୍ରରୂପେ କାର୍ଯ୍ୟ କରୁଥିବାର ସହୃଦୟ ପାଠକ ଅନୁଭବ କରିପାରିବେ ବୋଲି ମୋର ବିଶ୍ୱାସ । ହୁଏତ କେହି କେହି କ୍ଲାନ୍ତ, କ୍ଷତପଦ, ନିର୍ଦ୍ଧନ ପଥିକ ଏଥିରୁ ସାମାନ୍ୟ ଆଶା ଓ ଆଶ୍ୱାସନା ବି ପାଇପାରନ୍ତି । (୫୦)

ଏହି କବିତାମାନଙ୍କରେ କେତେକ ସ୍ଥଳରେ ବେଦନା ଏବଂ ଆନନ୍ଦର ମଧୁର ସମନ୍ୱୟ ଘଟିଛି । ବିଷାଦଭାବର ନେପଥ୍ୟରେ କବିଙ୍କ ଜୀବନର ବହୁ ଘଟଣା ବିଦ୍ୟମାନ । ବାଲ୍ୟକାଳରୁ ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ ତାଙ୍କ ଜୀବନ ବହୁଭାବରେ କ୍ଷତବିକ୍ଷତ । "ଯେତେ ଜୁଆରିଆ ଦିଶିଲେ ବି ତାଙ୍କ ହାସ୍ୟ ମଧ୍ୟରେ ସାରାଜୀବନ ସେ କାରୁଣ୍ୟର ଦାଗ ଲିଭିପାରି ନ ଥିଲା ।" (୫୧) ପିଲାଦିନରୁ ସେ ପିତୃମାତୃ ସ୍ନେହରୁ ବଞ୍ଚିତ ଥିଲେ । ତାଙ୍କ ବଡ଼ଭଉଣୀ ସୁନାଅପା ; ମାନସିଂହ କଟକରେ ପଢ଼ିଲାବେଳେ ସୁନାକାଚ କିଣି ଆଣିବା ଲାଗି କହି ଦେଇଥିଲା । ଦାରିଦ୍ର୍ୟର ସଙ୍ଘାତରେ ସେ ଅପାକୁ ତୁଷ୍ଟ କରିପାରି ନ ଥିଲେ । ଭଗବାନ ମଧ୍ୟ ଅବିଗ୍ଭର କଲେ । ବିବାହର ଦଶଦିନ ପରେ ତାଙ୍କ ସ୍ୱାମୀ ଫେରାର୍ ହୋଇଥିଲେ ; ପାରିକୁଦ ରଜାଙ୍କର ଅର୍ଥ ତୋଷରପ ଅଭିଯୋଗରେ । ତାଙ୍କ ସ୍ୱାମୀ ପାରିକୁଦ ରଜାଙ୍କର ହିସାବ ସମୀକ୍ଷକ ଥିଲେ । ସ୍ୱାମୀ ବିରହିତା ଅପାର କାଚ ପିନ୍ଧିବାର ଇଚ୍ଛା ସବୁଦିନ ପାଇଁ ହଜି ଯାଇଥିଲା । ଏହି ଘଟଣା ମାନସିଂହଙ୍କୁ ଗଭୀର ଭାବେ ଆଲୋଡ଼ିତ କରିଥିଲା । 'କଣ୍ଢକାଚ' ଏହି ଘଟଣାର ସୃଷ୍ଟି ।

ମାନସିଂହଙ୍କର ଏହି ବିଷାଦବାଦ ବିଭିନ୍ନ ପର୍ଯ୍ୟାୟର (କ) ଜୀବନ ସଂଗ୍ରାମର ସଙ୍କଟରୁ ଜାତ ଦୁଃଖ ଓ ବିଷାଦ, (ଖ) ସନ୍ତାନ ମୃତ୍ୟୁଜନିତ ବିଷାଦ, (ଗ) ପ୍ରେମ ବିଚ୍ଛେଦରୁ ଉଦ୍ଭୂତ ବିଷାଦ, (ଘ) ଈଶ୍ୱର ପ୍ରାପ୍ତି ନିମନ୍ତେ ଅଭିଳାଷର ଅପୂର୍ଣ୍ଣତାରୁ ବିଷାଦ, (ଙ) ପ୍ରକୃତିର ଉତ୍ସଙ୍ଗରୁ ବିଚ୍ଛେଦଜନିତ ବିଷାଦ । ତାଙ୍କର

---

(୫୦) କୃଷି କାବ୍ୟ ମୁଖବନ୍ଧ—ଡ଼ଃ ମାୟାଧର ମାନସିଂହ, ପୃ-୪୩୭

(୫୧) ମାନସିଂହଙ୍କ ଜୀବନୀ ଓ ଜୀବନ—ଡ଼ଃ କୁଞ୍ଜବିହାରୀ ଦାଶ, ମାନସିଂହ ପରିକ୍ରମା, ପୃ-୨୪୨

'ମୋ ଧନରେ, ଯାଇଛ ସେ, ଶିଶୁର ଦାନ, ରୂପାନ୍ତର' ଆଦି କବିତାରୁ ପିତୃହୃଦୟର ଶୋକୋଚ୍ଛ୍ୱାସ ସ୍ପଷ୍ଟ ହୋଇଥାଏ । "ଝିଅର ମୃତ୍ୟୁ ପରେ କନ୍ୟାଶୋକକାତର କବି ଯେତେବେଳେ ମୋ ଧନରେ କବିତାଟି ଲେଖିଲେ ସେତେବେଳେ ମୁଁ ତାଙ୍କ ପିତୃହୃଦୟର ଗଭୀର ମମତା ଉପଲବ୍ଧି କଲି । ଶୋକାକୁଳ ହୋଇ ସେ ଝିଅର ପାଦୁକା ଦୁଇଟିକୁ ବନ୍ଧୁବନ ଧରି ପୂଜା କରିଛନ୍ତି ।" (୬୨)

ଗଭୀର ପ୍ରେମାନୁଭୂତିରେ ରଞ୍ଜିତ କବିଙ୍କର କବିତାଗୁଡ଼ିକରେ ସମ୍ବେଦନହୀନ ସମାଜ ବିରୁଦ୍ଧରେ ହତାଶାଭାବ ପ୍ରକାଶ ପାଇଛି । "ଜନତା କି କେବେ ସୁଖଦୁଃଖ ମୋର ଜାଣିବ/ନୟନୁ ଲୋତକ ପୋଛିବାକୁ କର ଆଣିବ ?" (ଧୂପ) ଜୀବନ ଯନ୍ତ୍ରଣାରେ କବି ବ୍ୟଥିତ । ଜୀବନର ଜିଦ୍‌ଖୋର ପଣରେ କବି ବିମୁଖ ହୋଇପଡ଼ିଛନ୍ତି । ଜୀବନ ପ୍ରତି କବିଙ୍କର ଏହି କୁଣ୍ଠିତ ମନୋଭାବ 'ସମର ବିମୁଖ' କବିତାରେ ସ୍ପଷ୍ଟ ହୋଇଉଠିଛି । "ଯାଏ ଗୃହ ସେହି ସ୍ଥାନେ ପାଇବି ନିସ୍ତାର/ନ ଥିବ ଯେଉଁଠି ଜୀବନର ଅତ୍ୟାଚାର" । କବିପ୍ରାଣର ଆଶା ଅଭିଳାଷର ଅପୂର୍ଣ୍ଣତାରୁ ବିଷାଦ ଜାତ ହୋଇଛି ଏବଂ ଏହା 'ଆକାଂକ୍ଷିତ ଶୂନ୍ୟତା', ଏକାନ୍ତ ଏକାକୀ, ଉଦ୍‌ଗମନ ଆଦି କବିତାରେ ପ୍ରକାଶ ପାଇଛି । ଏହି ଅଭୀପ୍ସା କେତେବେଳେ ଈଶ୍ୱରପ୍ରାପ୍ତି ଦିଗକୁ ପ୍ରଧାବିତ ତ କେତେବେଳେ ଦେଶର ଅଧୋପତନରେ ମର୍ମାହତ । ତେଣୁ ପରିପୂର୍ଣ୍ଣ ସଂସାର ମଧ୍ୟରେ ଥାଇ ମଧ୍ୟ ସେ ନିଃସଙ୍ଗ । (୬୩) 'ନୂଣ' ଏବଂ 'ହେମଶସ୍ୟ'ରେ ଈଶ୍ୱର ଅନ୍ୱେଷଣଜନିତ ବ୍ୟାକୁଳତା ଏକାଧିକ କବିତାରେ ପ୍ରକଟିତ ହୋଇଛି । 'ଅଗ୍ନି ଜାଳି ରଖ ପ୍ରଭୁ ପ୍ରାଣ ଅଭ୍ୟନ୍ତରେ' (ହୋମାଗ୍ନି) କିମ୍ବା ଭ୍ରମି ଭ୍ରମି କ୍ଳାନ୍ତ ମୁହିଁ ଆନନ୍ଦ ସନ୍ଧାନେ (କସ୍ତୁରୀ ମୃଗ) ନୂଣ ଇତ୍ୟାଦିରୁ ସ୍ପଷ୍ଟ ହୋଇଥାଏ ।

---

(୬୨) ପ୍ରିୟ ପରମ—ଶ୍ରୀମତୀ ହେମଲତା ମାନସିଂହ, ମାନସିଂହ ପରିକ୍ରମା, ପୃ-୧୬୬

(୬୩) "ନିଖିଳ ସଂସାର ମଧ୍ୟେ କୁଟୁମ୍ବ ସଙ୍ଗତେ
ଏକାନ୍ତ ଏକାକୀ ମୁହିଁ ସଙ୍ଗହୀନ ପ୍ରାଣୀ,
କାହାର ପରମ ସଖ୍ୟ ଖୋଜେ ଅନ୍ତର୍ଗତେ
ଚିର ବିରହିତ ମୁହିଁ କେମନ୍ତ କେଜାଣି ।
ମନେହୁଏ କାହାରେ ମୁଁ ଖୋଜୁଛି ଅନ୍ତରେ
ବହୁଜନ୍ମେ, ବହୁଲୋକେ ଅନାଦି କାଳରୁ
ଉତ୍କଣ୍ଠେ ଧାଉଁଛି ତେଣୁ ସହସ୍ର ସଂଖ୍ୟାରେ
କେ କିନ୍ତୁ ଶ୍ୟାମଳ ନାହିଁ କଳ୍ପ ଚିର ମରୁ ।"

ପ୍ରକୃତ ଉପଭୋଗରୁ ବଞ୍ଚିତ ନିମନ୍ତେ କବି ବିଷାଦଗ୍ରସ୍ତ ହୋଇପଡ଼ିଛନ୍ତି । ଜ୍ୟୋତ୍ସ୍ନାମୟୀ ରଜନୀରେ ମହାନଦୀରେ ନୌବିହାରରୁ ବିରତ ହୋଇ କବି ଅନ୍ଧକାର ଗୃହାଙ୍ଗନକୁ ଫେରିବାକୁ ଚାହାନ୍ତି ନାହିଁ । "ଫେରିବା କହୁଛ ବନ୍ଧୁ ପୁଣି ଅନ୍ଧକାରେ/ଫେରିବାକୁ ହେବ ସତେ ? ହାୟ ଏ ଜୀବନ ! /ଅବସର ନାହିଁ ମିଳେ କ୍ଷଣେ ଭୁଲିବାରେ/ଜୀବନର ହାହାକାର ପ୍ରାଣର ଦହନ ।" (ମହାନଦୀରେ ଜ୍ୟୋତ୍ସ୍ନାବିହାର)

ମାନସିଂହଙ୍କର 'ସମରବିମୁଖ' କବିତାରୁ କବିଙ୍କର ପଳାୟନବାଦ ପ୍ରକାଶିତ ହୋଇଛି । ମାନସିଂହଙ୍କ ଜୀବନ ପ୍ରେମ-ଧୂପରେ ସୁଗନ୍ଧାନ୍ୱିତ ହୋଇ ଉଠିଥିଲା । ବାସ୍ତବତାର ନିର୍ମମ କଷାଘାତରେ ସେ ଆହତ ସୈନିକ ପରି ପଳାୟନପନ୍ଥୀ ହେବା ଅସମ୍ଭବ ନୁହେଁ ।

ରାଧାନାଥ ସାହିତ୍ୟ ଓ ସତ୍ୟବାଦୀ ସାହିତ୍ୟ ମଧ୍ୟଦେଇ ସବୁଜଚେତନା ସମ୍ବଳିତ ସାହିତ୍ୟ ପର୍ଯ୍ୟନ୍ତ ପରିବ୍ୟାପ୍ତ ରୋମାଣ୍ଟିକ୍ ଚିନ୍ତାଧାରାର ପ୍ରବାହରେ କାବ୍ୟ କବିତା କ୍ଷେତ୍ରରେ ଯେଉଁ ବିଭିନ୍ନ ବିଭାବ ଆତ୍ମପ୍ରକାଶ କରିଥିଲା ; କବି ମାନସିଂହଙ୍କ କବିତାରେ ସେଗୁଡ଼ିକ ଏକତ୍ର ସମନ୍ୱିତ ହୋଇଅଛି । ରାଧାନାଥଙ୍କ ପ୍ରକୃତ ପ୍ରୀତି, ରାଧାନାଥୀ ଓ ସତ୍ୟବାଦୀ ଜାତୀୟତା, ରୋମାଣ୍ଟିକ୍ ପ୍ରେମ ଓ ସୌନ୍ଦର୍ଯ୍ୟ ଚେତନା, ସର୍ବୋପରି ସବୁଜଚେତନା ସମ୍ପର୍କିତ 'ସମରବିମୁଖ' ପଳାୟନ ମନୋଭାବ ଏକତ୍ରିତ ହୋଇ ତାଙ୍କ ସୃଷ୍ଟି ସମ୍ଭାରକୁ ରୋମାଣ୍ଟିକ୍ କାବ୍ୟ କବିତାର ସଫଳତା ପ୍ରଦାନ କରିଅଛି ।

## ଇନ୍ଦ୍ରିୟୋତ୍ତର ଭାବନା, ରବୀନ୍ଦ୍ର ପ୍ରଭାବ ଏବଂ ମର୍ତ୍ତ୍ୟାନୁଭୂତି—

ବିଶ୍ୱକବି ରବୀନ୍ଦ୍ରନାଥ ଥିଲେ ଜୀବନ ଶିଳ୍ପୀ । ସେ ମଧ୍ୟ ଥିଲେ ବିଶ୍ୱଯାତ୍ରୀ । ପୂର୍ବ ପଶ୍ଚିମ, ଉତ୍ତର ମଧ୍ୟ ଭୂଭାଗର ପ୍ରତ୍ୟେକ ଦେଶ ସହିତ ତାଙ୍କର ଯୋଗ ଥିଲା ନିବିଡ଼ । ମନୁଷ୍ୟର ଆତ୍ମା କେଉଁଠି ମାଟିପରି ଅଚଳ, ପାଣିପରି ଗତିଶୀଳ ଓ ଆକାଶ ଭଳି ଶକ୍ତିମାନ ତାହା ଉପନିଷଦ ଯୁଗର ଭାରତ ଓ ଯନ୍ତ୍ରବିପ୍ଳବ ଯୁଗର ୟୁରୋପ ସବିଶେଷ ସେ ଲକ୍ଷ୍ୟ କରିଥିଲେ । ରବୀନ୍ଦ୍ରନାଥଙ୍କର ବିପୁଳ ଆତ୍ମାର ପ୍ରକାଶ ସାହିତ୍ୟର ଅଜସ୍ର ଧାରାରେ ଘଟିଛି ।

ଦୀର୍ଘ ଷାଠିଏ ବର୍ଷ ଧରି ତାଙ୍କର ନିରବଚ୍ଛିନ୍ନ ସାଧନା ଭିତରେ 'ବିଶ୍ୱଭାରତୀ'ର ବୀଣା ଅଜସ୍ର ଛନ୍ଦରେ ବାଜି ଉଠିଛି । ବିଶ୍ୱମନା ରବୀନ୍ଦ୍ରନାଥ ଉଭୟଚାରୀ ଥିଲେ । ଏକ ଦିଗରେ ପୃଥିବୀ, ଅନ୍ୟ ଦିଗରେ ଆକାଶ । ଏକ ଦିଗରେ ସ୍ୱଦେଶ ଗ୍ରାମର ଚଣ୍ଡୀ ମଣ୍ଡପ, ଅନ୍ୟ ଦିଗରେ ବିଶ୍ୱ ଜ୍ଞାନବିଜ୍ଞାନର ଶ୍ରେଷ୍ଠ ଚର୍ଚ୍ଚାସ୍ଥଳ

ବିଶ୍ୱଭାରତୀ—ସର୍ବଶେଷ ଥିଲା ତାଙ୍କର ସ୍ନେହଶ୍ରଦ୍ଧାର ନିଳୟ । ତାଙ୍କର ଜୀବନକାଳରେ ପରମ୍ପରାପୀଡ଼ିତ ପୁରାତନ ଭାରତକୁ ଆଧୁନିକ ରୂପରେ ରୂପାନ୍ତରିତ କରିବାକୁ ସେ ସାଧନା କରିଥିଲେ । ମନୁଷ୍ୟର ଅନନ୍ତ ବିକାଶ ଲାଗି ସେ ଚାହିଁଥିଲେ ବନ୍ଧନମୁକ୍ତି । ବନ୍ଧନ ଦ୍ୱିବିଧ । ଗୋଟିଏ ବହିର୍ଜଗତର ଅନ୍ୟଟି ଆତ୍ମଲୋକର । ଭୟ ଓ ଅବୁଦ୍ଧିର କବଳରୁ ମୁକ୍ତ ହୋଇ ମନୁଷ୍ୟର ସମୃଦ୍ଧ ଆତ୍ମା ଯେପରି ଦୁଃସାହସିକ ପଥର ଯାତ୍ରୀ ହୁଏ, ତାହା ଥିଲା କବିଙ୍କର ନିରନ୍ତର ସ୍ୱପ୍ନ । ଏହି ସ୍ୱପ୍ନର ସାର୍ଥକ ପ୍ରକାଶ ଦେଖିବା ଲାଗି ରବୀନ୍ଦ୍ରନାଥ ପ୍ରାଚ୍ୟ ଓ ପାଶ୍ଚାତ୍ୟ, ପ୍ରାଚୀନ ଓ ଆଧୁନିକ ୟୁରୋପ ଉଭୟ ଭିତରେ ଏକ ସାମଞ୍ଜସ୍ୟ ଓ ସମନ୍ୱୟ ସାଧନାର ସୂତ୍ର ଆବିଷ୍କାର କରିଥିଲେ । ସେ ବୁଝିଥିଲେ ପ୍ରାଚୀନ ଭାରତ ଓ ଆଧୁନିକ ୟୁରୋପର ମର୍ମବାଣୀ ଏକ । ଯଥା— "ଯଥାତଥ୍ୟ ତୋ ଽର୍ଥାନ୍ ବ୍ୟଦଧାତ୍ ଶାଶ୍ୱତୀଭ୍ୟଃ ସମାଭ୍ୟଃ ।" ଅର୍ଥାତ୍ ସେ ବିଧିର ବିଧାନ ଶାଶ୍ୱତ । ତାହା ବିପର୍ଯ୍ୟସ୍ତ ନୁହେଁ । ଉପନିଷଦର ଏହି ବାଣୀ, ପାଶ୍ଚାତ୍ୟ ବିଜ୍ଞାନ ମୁଖରେ ଶୁଣିଥିଲେ ।

ରବୀନ୍ଦ୍ରନାଥ ଭାରତୀୟ ଋଷିଙ୍କ ଦୃଷ୍ଟିରେ ଜୀବନକୁ ଦେଖିଥିଲେ । ଭାରତର ପୁଣ୍ୟ ମହାମାନବ ତୀର୍ଥଭୂମିରେ ଉଭାହୋଇ ସେ ନରଦେବତାଙ୍କୁ ପ୍ରଣାମ ଜଣାଇଛନ୍ତି ।

"ହେ ମୋର ଚିତ୍ତ ପୁଣ୍ୟତୀର୍ଥେ ଜାଗୋରେ ଧୀରେ
ଏଇ ଭାରତେର ମହାମାନବେର ସାଗର ତୀରେ
ହେଥାୟ ଦାଁଡାୟେ ଦୁବାହୁ ବାଡ଼ାୟେ ନମି ନରଦେବତାରେ
ଉଦାର ଛନ୍ଦେ ପରମାନନ୍ଦେ ବନ୍ଦନ କରି ତାରେ ।"

ବ୍ୟକ୍ତିଗତ ଜୀବନ ସହିତ ବିଶ୍ୱଜନୀନ ଜୀବନର ମାନବାତ୍ମାଙ୍କ ସହିତ ଅନନ୍ତଭୂମାଙ୍କ ସମ୍ପର୍କ ରବୀନ୍ଦ୍ରନାଥଙ୍କ କାବ୍ୟରେ ନିରୂପିତ ହୋଇଅଛି । 'ଗୀତାଞ୍ଜଳି' ମଧ୍ୟରେ ଏହି ମଣିଷ ସହିତ ଭଗବାନଙ୍କର ଏହି ଅପରୂପ ସମ୍ପର୍କ ବିଭିନ୍ନ ଭାବରେ କବି ଉଦ୍‌ଘାଟନ କରିଛନ୍ତି । ରୂପ ମଧ୍ୟରେ ଅରୂପ, ସୀମା ମଧ୍ୟରେ ଅସୀମ, ଶବ୍ଦ ମଧ୍ୟରେ ନିଃଶବ୍ଦ, ମୃତ୍ୟୁ ମଧ୍ୟରେ ଅମୃତର ଉପଲବ୍ଧି ରବୀନ୍ଦ୍ର କାବ୍ୟାଦର୍ଶର ଅନ୍ୟତମ ବୈଶିଷ୍ଟ୍ୟ । ଏହି ଚିନ୍ତାଧାରା ବହୁ ସାମୟିକ ତରୁଣ ଓଡ଼ିଆ କବିଙ୍କୁ ପ୍ରଭାବିତ କରିଥିବାର ଦେଖାଯାଏ । ମାନସିଂହଙ୍କର ପ୍ରାୟ ଅଧିକାଂଶ କବିତାରେ ଏହି ଭାବଧାରାର ଚମତ୍କାର ରୂପାୟନ ଘଟିଛି । ତେଣୁ "ଦେହର ଜଡ଼ ଅନୁଭୂତିରୁ ଆତ୍ମାର ଚେତନାଲୋକକୁ, ରୂପର ପୁଷ୍ପିତ ପ୍ରାଙ୍ଗଣରୁ ଅରୂପର ଅଳକାପୁରୀକୁ ଏବଂ ସୀମାର ସଙ୍କୀର୍ଣ୍ଣ ନିଗଡ଼ରୁ ବୃହତ୍ତର ଭୂମା ପରିସରକୁ ଅନ୍ତରର କବିମନୁଷ୍ୟଟି କ୍ରମଶଃ ଗତିଶୀଳ ହୋଇଛି ଓ ପ୍ରଣୟିନୀର ରୂପାଲୋକରେ ମଧ୍ୟ ଅରୂପର ସନ୍ଧାନ

କରିଛି । କବି ପ୍ରାଣର ପ୍ରଣୟାଭିସାର ଦେହ କାରାଗାରର ଇନ୍ଦ୍ରିୟ ବନ୍ଦିନୀ ମଧ୍ୟରେ ଆରମ୍ଭ ହୋଇଥିଲେ ହେଁ ପରିଣତିରେ ଏକ ସିଦ୍ଧଧାମରେ ଆସି ପହଞ୍ଚିଛି ; ଯେଉଁ ଧାମ କି ମୁକ୍ତି, ସୌନ୍ଦର୍ଯ୍ୟ ଓ ନିତ୍ୟ ଆନନ୍ଦର ଗୋଲକ ।'' (୫୪)

ଜୀବନର ଅପାର୍ଥିବ କାମ ନିମନ୍ତେ କବି ଅଶ୍ରୁବର୍ଷଣ କରିଛନ୍ତି ଏବଂ ଈଶ୍ୱରଙ୍କ ନିକଟରେ ଆତ୍ମସମର୍ପଣ କରିଛନ୍ତି । (୫୫)

କବି ମାନସିଂହଙ୍କ ପରିଣତ କାବ୍ୟସ୍ୱରରେ ଈଶ୍ୱରାନୁଭୂତି ଓ ଇନ୍ଦ୍ରିୟୋତ୍ତର ଚେତନା ମୂର୍ତ୍ତି ହୋଇଉଠିଛି । ଦେହଜ ପ୍ରଣୟରୁ ଅତୀନ୍ଦ୍ରିୟ ଅନୁଚିନ୍ତା ଆଡ଼କୁ ତାଙ୍କର ଉତ୍ତରଣ ହୋଇଛି । ଏହି ଚେତନା ତାଙ୍କର ଅକ୍ଷତ, ଜୀବନଚିତା (୧୯୪୭) ଓ ନୂଣ (୧୯୪୪-୧୯୫୭) ପ୍ରଭୃତି କାବ୍ୟରେ ପ୍ରତିଧ୍ୱନିତ ହୋଇଛି । ଏହିସବୁ କାବ୍ୟରେ ରବୀନ୍ଦ୍ର ପ୍ରଭାବ ସ୍ପଷ୍ଟ । ଜୀବନର ଉତ୍ସବମୁଖରତା ନୂତି ବିଚ୍ୟୁତି ହସଅଶ୍ରୁ ମଧ୍ୟରେ କବି ମାନସିଂହ ବଞ୍ଚିବାକୁ ଚାହିଁଛନ୍ତି ଏବଂ ଈଶ୍ୱରଙ୍କ ସତ୍ତା ଉପଲବ୍ଧି କରିବାକୁ କାମନା କରିଛନ୍ତି ।

ରବୀନ୍ଦ୍ରନାଥଙ୍କ ବହୁ କବିତାରେ ମର୍ତ୍ତ୍ୟପ୍ରୀତି ଯେପରି ମୂର୍ତ୍ତିମନ୍ତ ହୋଇ ଉଠିଛି ; ମାନସିଂହଙ୍କର ସେହିପରି ବହୁ କବିତାରେ ସେହି ଭାବଧାରା ପ୍ରାଧାନ୍ୟ ଲାଭ କରିଛି, "ରବୀନ୍ଦ୍ରନାଥଙ୍କ ମର୍ତ୍ତ୍ୟପ୍ରୀତି ନିଚ୍ଛିଦ୍ର । ମାନସିଂହଙ୍କ ମର୍ତ୍ତ୍ୟପ୍ରୀତି ବଡ଼ ଦ୍ୱିବିଷ୍ଟ × × ଯେଉଁ ଭାବପୁଷ୍ପଟି ସେ ରବୀନ୍ଦ୍ର କାବ୍ୟରୁ ସଂଗ୍ରହ କରି ଆଣିଲେ ତାହାକୁ ସଙ୍ଗୀକରଣରେ ପ୍ରାଣରେ ଗ୍ରହଣ କରିପାରିଲେ ନାହିଁ ।'' (କାବ୍ୟ-ସମ୍ବାଦ—ଦାଶରଥି ପ୍ରସାଦ ଦାସ, ପୃ-୩୩୪)

କାରଣ ମାନସିଂହଙ୍କ କାବ୍ୟଜଗତ ବାହାରେ ମର୍ତ୍ତ୍ୟର ଅନୁଭବ ତାଙ୍କପାଇଁ ସବୁବେଳେ ଶୁଭଙ୍କର ନ ଥିଲା । ମଣିଷର ବିଶ୍ୱାସଘାତକତାରେ ସେ ବ୍ୟଥିତ ହୋଇ ଉଦ୍ଭିଦ ଓ ପଶୁଠାରୁ ମଣିଷକୁ ହୀନଦୃଷ୍ଟିରେ ଦେଖିଛନ୍ତି । ମାନସିଂହ ଦେବଶିଶୁର ଅଧୋଗତି କେବଳ ଅନୁଭବ କରିନାହାନ୍ତି । ଏ ପୃଥିବୀରୁ ପରିତ୍ରାଣ ନିମନ୍ତେ ସେ ବ୍ୟାକୁଳ ହୋଇଛନ୍ତି । ରବୀନ୍ଦ୍ରନାଥଙ୍କ ମର୍ତ୍ତ୍ୟଭୂମି ସ୍ୱର୍ଗ ନୁହେଁ । ତାହା ତାଙ୍କର ଜନ୍ମଭୂମି । ଅନ୍ଧାର ଆଲୋକ ସୁଖଦୁଃଖ ଭିତରେ

---

(୫୪) ମାନସିଂହ ସୃଷ୍ଟି ସମୀକ୍ଷା—ଶ୍ରୀ ଚନ୍ଦ୍ରାମଣି ବେହେରା, ପୃ-୫୭

(୫୫) ଆଜି ଦେହ ଖୋଜେ ଏକ ଦୁର୍ଲ୍ଲଭ ବିଦେହୀ
ଚକ୍ଷୁ ଖୋଜେ ଏକ ତେଜ ବିରାଟ ନିଖିଳେ
ଖୋଜେ ଅରୂପରେ ରୂପକ୍ଳାନ୍ତ ନେତ୍ର ଦୁଇ
ସ୍ନାତ ହୋଇଉଠେ ଗଣ୍ଡ ଅନାସକ୍ତ ନୀରେ ।''

ନୂତନ ପ୍ରଣୟ—ନୂଣ, ପୃ-୩

ମଧ୍ୟ ରବୀନ୍ଦ୍ରନାଥ ଏ ପୃଥିବୀକୁ ଶ୍ରଦ୍ଧା କରିଛନ୍ତି । ସେଥିପାଇଁ ସେ ହୃଏତ କହିଛନ୍ତି "ଏ ଦ୍ୟୁଲୋକ ମଧୁମୟ । ମଧୁମୟ ପୃଥିବୀର ଧୂଳି କମ୍ବା "ଆମି ପୃଥିବୀର କବି" 'ମରିତେ ଚାହିନା ଆମି ସୁନ୍ଦର ଭୁବନେ' ।

ମଣିଷର ସୁକୁମାର ଗୁଣକୁ ମାନସିଂହ ଶ୍ରଦ୍ଧା କରିଛନ୍ତି; ସ୍ନେହ, ପ୍ରେମକୁ ସେ ଅସ୍ୱୀକାର କରିନାହାନ୍ତି । (୫୬) ରବୀନ୍ଦ୍ର ସାହିତ୍ୟରେ ମଣିଷକୁ ସମ୍ମାନ ଦିଆଯାଇଛି ।

ସାଧାରଣ, ଅସାଧାରଣ ସମସ୍ତଙ୍କ ପାଇଁ ତାଙ୍କର ଦରଦ ଅସ୍ୱୀକାର କରିହେବ ନାହିଁ । ମାନସିଂହ ଲୋକତ୍ତର ପୂଜା କରିଛନ୍ତି ଯଥେଷ୍ଟ । ବୁଦ୍ଧଦେବ, ମହାତ୍ମାଗାନ୍ଧୀ, ଶେଲୀ, ରବୀନ୍ଦ୍ରନାଥ, ଗୋପବନ୍ଧୁ, ଚନ୍ଦ୍ରଶେଖର, ଗୋପାଳକୃଷ୍ଣ ପ୍ରଭୃତିଙ୍କ ମହିମା ଗାନ କରିଛନ୍ତି । ତଥାପି ଅସହାୟ, ଅସ୍ପୃଶ୍ୟ, ନିଗୃହୀତ, ଦୁଷ୍ଟମାନଙ୍କ ଜୟଗାନରୁ ତାଙ୍କ ଲେଖନୀ ନିବୃତ୍ତ ହୋଇନାହିଁ । (୫୭) କବି ମାନସିଂହଙ୍କ ମାନବପ୍ରେମ ମଧ୍ୟ ଧର୍ମଚେତନା ସହିତ ସଂଯୁକ୍ତ । 'ଶେଷକଥା', 'ବିଶୃଙ୍ଖଳ ସୃଷ୍ଟି' ଓ 'ସୁଖ ଦୁଃଖ' ଏହି ତିନୋଟି କବିତାରେ ସେ ବିଶ୍ୱର ବେଦନା ଦୂର କରିବାକୁ ବଦ୍ଧପରିକର । ସେଥିପାଇଁ ନିନ୍ଦିତ ଭଗବାନଙ୍କ ପ୍ରତି ଭର୍ତ୍ସନାର ତାଙ୍କର ସୀମା ନାହିଁ । ମାନସିଂହଙ୍କର ଏହି ମର୍ତ୍ତ୍ୟପ୍ରୀତି ଏବଂ ମଣିଷ ପ୍ରତି ସମ୍ବେଦନଶୀଳ ମନୋଭାବ ଓଡ଼ିଆ କବିତାରେ ମାନବିକବାଦକୁ ପ୍ରତିଷ୍ଠା କରିଛି ।

ରବୀନ୍ଦ୍ରନାଥଙ୍କ ପରି କବି ମାନସିଂହ ମର୍ତ୍ତ୍ୟର ସବଂଶ ସେହି ସାର୍ବଭୌମ, ଅତିକ୍ରମ୍ୟ ପୁରୁଷର ସ୍ପର୍ଶ ଓ ବିରହର ଆକର୍ଷଣ ଅନୁଭବ କରିଛନ୍ତି । ପୂର୍ଣ୍ଣତା ପାଇଁ ଆକାଂକ୍ଷିତ ହୋଇଛନ୍ତି । "ଅପୂର୍ଣ୍ଣ ମୁଁ ଖୋଜେ ମୋର ମଧୁର ପୂର୍ଣ୍ଣତା/ ତୁମପାଇଁ ତେଣୁ ପ୍ରାଣେ ଏ ତୀବ୍ର ମମତା" [(ବିଶ୍ୱ ଆକର୍ଷଣ) କୃଷି—ଗ୍ରନ୍ଥାବଳୀ ପୃ-୪୩୭ ।]

---

(୫୬) ଅବଶେଷେ ଅନ୍ତରୀକ୍ଷେ ହସନ୍ତେକି ମାଗେ ପରିତ୍ରାଣ
ହେ ଧରଣୀ କହି କମ୍ପା ସ୍ପର୍ଶ ତୋର ଏଡ଼େ ଅକଲ୍ୟାଣ ।
ଜୀବନ ଚିତା—ଧରଣୀ ବାସ, ଗ୍ରନ୍ଥାବଳୀ—ପୃ ୩୮୯

(୫୭) "ପିତାମାତା ବନ୍ଧୁଜନ ଭଗିନୀର ସେନେହ ବନ୍ଧନେ
ସେ ଲଭେ ପରମ ମୁକ୍ତି ପରାଜୟେ ଜୟ ଲଭେ ରଣେ
ରୋଗେ ଶୋକେ ପ୍ରତିବେଶୀ ନେତ୍ରୁ ଢାଳେ ଅଶ୍ରୁ ତାହାପାଇଁ
ମାଗିଲେ କରୁଣା ତାକୁ କେହି କେବେ ନାହିଁ କରେ ନାହିଁ
ଅନନ୍ତ ବ୍ୟର୍ଥତା ମଧ୍ୟେ ହେ ଧରଣୀ, ଏ ଦାନ ପରମ
ମାନବେ ମାନବେ ପ୍ରୀତି ଏ ବିଶ୍ୱାସ ଏ ସ୍ନେହ ଧରମ ।"
ଧରଣୀ ବାସ—ଗ୍ରନ୍ଥାବଳୀ, ପୃ ୩୮୯

'ଜୀବନ ଦେବତା' କବିତାର ଏକ ଅଚନ୍ତ୍ୟଣୀୟ ଲୀଳାକୁ ଅନ୍ତର ମଧ୍ୟରେ ଉପଲବ୍ଧି କରି କବି ହତବାକ୍ ହୋଇ ଉଠିଛନ୍ତି । ଉପନିଷଦୀୟ ଚନ୍ତାଧାରାରେ ଏହା ଉଦ୍‌ବୁଦ୍ଧ । ଜୀବାତ୍ମା ଏବଂ ପରମାତ୍ମାର କଥାରେ ଏହା ରହସ୍ୟାଚ୍ଛନ୍ନ । ରବୀନ୍ଦ୍ରନାଥ ଇନ୍ଦ୍ରିୟାତୀତକୁ ଅନ୍ତର ମଧ୍ୟରେ ଉପଲବ୍ଧି କରି ଅସୀମତାରେ ହୃଦୟ ତାଙ୍କର ଏକାକାର ହୋଇଯାଇଛି । "ସୀମାର ମାଝେ, ଅସୀମ ତୁମି ବାଜାଓ ଆପନ ସୁର/ଆମାର ମଧ୍ୟେ ତୋମାର ପ୍ରକାଶ ତାଇ ଏତ ସୁମଧୁର/କତ ବର୍ଣ୍ଣେ, କତ ଗନ୍ଧେ, କତ ଗାନେ, କତ ଛନ୍ଦେ/ଅରୂପ ତୋମାର ରୂପେର୍ ଲୀଳାୟ ଜାଗେ ହୃଦୟ ପୁର ।" (ସୀମାୟ ପ୍ରକାଶ)

ଆର୍ଯ୍ୟଋଷିର ଅନ୍ତର ପରି କବିପୁରୁଷର ହୃଦୟ ପରି ଭାରତକୁ ଏକ ସର୍ବଧର୍ମ ଓ ସର୍ବମତବାଦର ମିଳନ ପୀଠରୂପେ ଚିତ୍ର କରିବାରେ ରବୀନ୍ଦ୍ରନାଥଙ୍କ କବିତାର ସ୍ୱର ଅତି ପ୍ରଭାବଶାଳୀ—"ଏସୋ ହେ ଆର୍ଯ୍ୟ ଏସୋ ଅନାର୍ଯ୍ୟ ହିନ୍ଦୁ ମୁସଲମାନ୍/ ଏସୋ ଏସୋ ଆଜ୍ ତୁମି ଇଂରାଜ, ଏସୋ ଏସୋ ଖ୍ରୀଷ୍ଟାନ୍" କିମ୍ବା "ସଦାର୍ ପରଣେ ପବିତ୍ରକରା ତୀର୍ଥ ନୀରେ/ଏଇ ଭାରତେର ମହାମାନବେର୍ ସାଗର ତୀରେ" [(ଭାରତ ତୀର୍ଥ) ଗୀତାଞ୍ଜଳି—ବିଶ୍ୱକବି ।]

ରବୀନ୍ଦ୍ରନାଥଙ୍କର 'ଭାରତ ତୀର୍ଥ' ଏବଂ ମାନସିଂହଙ୍କର 'ପାନ୍ଥଗାଥା' ମଧ୍ୟରେ ସାମଞ୍ଜସ୍ୟ ଯେ କୌଣସି ପାଠକ ଉପଲବ୍ଧି କରିପାରିବ ।

"ଆସ ଭାଇ ଶ୍ୱେତ କୃଷ୍ଣ ଲୋହିତ ପିଙ୍ଗଳ ହିନ୍ଦୁ
ବୌଦ୍ଧ ପାର୍ଶି ଖ୍ରୀଷ୍ଟ ମୁସଲମାନ୍
ବିଶୁଦ୍ଧ ଶଙ୍କର ଧରାପଥ ଯାତ୍ରୀଦଳ
ଭୁଲି ଶ୍ରେଷ୍ଠ ସ୍ୱାର୍ଥ କର ଦ୍ୱନ୍ଦ୍ୱ ଅବସାନ ।"
(ପାନ୍ଥଗାଥା—ଅକ୍ଷତ—ମାନସିଂହ ଗ୍ରନ୍ଥାବଳୀ, ପୃ-୨୧୪)

ଏହି ଇନ୍ଦ୍ରିୟୋତ୍ତର ଚେତନାରେ କବି ଯେ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ପାଖରେ ଅଧିକ ଋଣଗ୍ରସ୍ତ, ଏଥିରେ ସନ୍ଦେହ ନାହିଁ । ଉଭୟ କବିଙ୍କ ବହୁ କବିତାର ଭାବାବେଗ ଏକ ଓ ଅଭିନ୍ନ ଭାବେ ପ୍ରକଟିତ ହୋଇଛି । ବସ୍ତୁତଃ ରବୀନ୍ଦ୍ରନାଥଙ୍କ ପରି ଜଣେ ପ୍ରଚଣ୍ଡ ପ୍ରତିଭାସମ୍ପନ୍ନ କବିଙ୍କ ପ୍ରଭାବକୁ ଉପେକ୍ଷା କରିବା ସେତେବେଳେ ଓଡ଼ିଆ କବିମାନଙ୍କ ପକ୍ଷରେ ସମ୍ଭବ ହୋଇନାହିଁ । ମାନସିଂହଙ୍କ 'କୃଷି', 'ହେମଶସ୍ୟ' ଓ 'ଅକ୍ଷତ'ର ବହୁ କବିତାର ଭାବଧାରାରେ ରବୀନ୍ଦ୍ରନାଥଙ୍କ 'ଗୀତାଞ୍ଜଳି'ର ସ୍ୱରସାମ୍ୟ ଲକ୍ଷ୍ୟ କରାଯାଇପାରେ ।

●

# ଚତୁର୍ଥ ପରିଚ୍ଛେଦ

## କବି ମାନସିଂହଙ୍କର କାବ୍ୟନାଟିକା

ସମାଲୋଚକମାନଙ୍କ ମତରେ 'କାଞ୍ଚିକାବେରୀ' ଲେଖକ ରାମଶଙ୍କର ରାୟ ଓଡ଼ିଆ ନାଟ୍ୟ ସାହିତ୍ୟର ଜନକ । ସେ ଯଦିଓ ପ୍ରଥମ ନାଟ୍ୟକାର ନୁହଁନ୍ତି ; ତଥାପି ତାଙ୍କର କାଞ୍ଚିକାବେରୀ ଓଡ଼ିଆ ଭାଷାର ପ୍ରଥମ ନାଟକର ସମ୍ମାନ ଲାଭ କରିଛି । 'କାଞ୍ଚିକାବେରୀ' ନାଟକ ରଚନାର କୋଡ଼ିଏ ବର୍ଷ ପରେ ମଧ୍ୟ ଓଡ଼ିଆ ନାଟକରେ ବଙ୍ଗଳା ଗୀତ ସଂଯୋଜନା ହୋଇ ଅଭିନୀତ ହେଉଥିବାରୁ ବିଶିଷ୍ଟ ସାହିତ୍ୟିକ ଗୋପାଳଚନ୍ଦ୍ର ପ୍ରହରାଜ କ୍ଷୁବ୍ଧ ହୋଇ ଏକ ଲେଖା ପ୍ରକାଶ କରିଥିଲେ । (୧) ସେ ଲେଖିଥିଲେ ଯେ ଦୀର୍ଘ ପନ୍ଦର ବର୍ଷ ଧରି କୋଠପଦାର ସ୍ଥାୟୀ ରଙ୍ଗମଞ୍ଚ ଓଡ଼ିଶାର ଏକମାତ୍ର ଓଡ଼ିଆ ଥିଏଟର ।

"ଓଡ଼ିଶାର ଆଦିକବି ସାରଳା ଦାସଙ୍କଠାରୁ (ପଞ୍ଚଦଶ ଶତାବ୍ଦୀ) ଆରମ୍ଭ କରି କବିସୂର୍ଯ୍ୟ ବଳଦେବ ରଥଙ୍କ (ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ) ପର୍ଯ୍ୟନ୍ତ ସମୟ ମଧ୍ୟରେ ଓଡ଼ିଆ ଭାଷାରେ ବିଭିନ୍ନ ପୁରାଣ, ଧର୍ମସମ୍ପର୍କୀୟ ପୁସ୍ତକ ଓ କାବ୍ୟ କବିତା ରଚିତ ହୋଇଥିଲେହେଁ, ୧୮୮୦ ସାଲ ପର୍ଯ୍ୟନ୍ତ ଗୋଟିଏ ଓଡ଼ିଆ ନାଟକ ଏ ଦେଶରେ ଆବିର୍ଭାବ ଲାଭ କରି ନ ଥିଲା × × × ନାଟକ ନାମରେ ବହୁବର୍ଷ ଧରି ଏ ଦେଶ ଭାଷାରେ ବହୁ ଲୀଳା ଓ ଯାତ୍ରା ମଧ୍ୟ ପ୍ରଦର୍ଶିତ ହୋଇ ଆସୁଅଛି । କିନ୍ତୁ ୧୮୭୦ ସାଲ ପୂର୍ବର ଏଇ ଲୀଳା ବା ଯାତ୍ରାର ସମ୍ବାଦ ଆମେ ଅତି କମ୍ ସ୍ଥଳରେ ଶୁଣିବାକୁ ପାଉଁ । ଓଡ଼ିଆ ସାହିତ୍ୟରେ ନାଟକ ରଚନା ସମ୍ପୂର୍ଣ୍ଣ ଏକ ନୂତନ ଉଦ୍ୟମ । ଏହା ତଦାନୀନ୍ତନ ଆଧୁନିକ ବଙ୍ଗଳା ଓ ଇଂରାଜୀ ନାଟ୍ୟ ସାହିତ୍ୟର ପ୍ରଭାବରେ ସୃଷ୍ଟ ଓ ପରିପୁଷ୍ଟ ।" (୨)

### ଓଡ଼ିଆ ନାଟକର ପୂର୍ବାବସ୍ଥା :

ଓଡ଼ିଆ ନାଟକର ସୃଷ୍ଟି ବେଶୀ ଦିନର ନୁହେଁ । ତେବେ ନାଟକର ଅଭାବରେ ଏ ଦେଶର ଜନସାଧାରଣ ସେମାନଙ୍କର ମନୋରଞ୍ଜନ ଉଦ୍ଦେଶ୍ୟରେ

(୧) ଓଡ଼ିଆ ନବସମ୍ବାଦ—୪-୧-୯୯

(୨) ଓଡ଼ିଆ ସାହିତ୍ୟର ଇତିହାସ—ଡଃ ନଟବର ସାମନ୍ତରାୟ, ପୃ ୪୦୯

ଅବଶ୍ୟ କୌଣସି ଉପାୟ ଆବିଷ୍କାର କରିଥିଲେ । ସେ ସମୟର ଜୀବନ ଥିଲା ସରଳ ଏବଂ ନିରାଡ଼ମ୍ବର । ଲୋକେ ଅବସର ସମୟରେ ନାନାପ୍ରକାର ସଙ୍ଗୀତାନୁଷ୍ଠାନ କରି ଆମୋଦିତ ହେଉଥିଲେ । ନାଟକ ରଚିତ ହେବା ପୂର୍ବରୁ ପୃଥିବୀର ପ୍ରତ୍ୟେକ ଜାତି ଏଭଳି ଉପାୟ ଉଦ୍ଭାବନ କରିଥିଲେ । ତେଣୁ ପ୍ରଥମ କାଳର ନାଟକଗୁଡ଼ିକ କେବଳ ସଙ୍ଗୀତମୟ ହେବା ସ୍ୱାଭାବିକ୍ । କେବଳ ଭାରତୀୟ ନୁହେଁ, ଇଂରାଜୀ ସାହିତ୍ୟର ପ୍ରାଚୀନ ନାଟକ ମଧ୍ୟ ପଦ୍ୟାତ୍ମିକା, "The conventional form of early drama was prevailing poetic" (୩) କେବଳ ସେତିକି ନୁହେଁ ; ସେକାଳରେ ସମାଜର ଆଧ୍ୟାତ୍ମିକତାର ପ୍ରଭାବ ଯଥେଷ୍ଟ ଅନୁଭୂତ ହେଉଥିଲା । ଧର୍ମ ମନ୍ଦିରରେ ନାନା ଉତ୍ସବ ଉଦ୍ଦେଶ୍ୟରେ ଅଭିନୟ ପ୍ରଦର୍ଶିତ ହେଉଥିଲା । ତେଣୁ ସେ କାଳର ନାଟକ ଧର୍ମାନୁଭାବ ଜାଗ୍ରତ କରିବା ସଙ୍ଗେ ସଙ୍ଗେ ଆନନ୍ଦ ମଧ୍ୟ ପ୍ରଦାନ କରୁଥିଲା ।

ଓଡ଼ିଶାରେ ମଧ୍ୟ ପ୍ରଥମାବସ୍ଥାରେ ଲୋକରଞ୍ଜନ ପାଇଁ ଯାତ୍ରା, ଲୀଳା, ଗୀତାଭିନୟ, ଗୀତିନାଟ୍ୟ ଏବଂ ସୁଆଙ୍ଗର ପ୍ରଚଳନ ଥିବା ଜଣାଯାଏ । ଏଗୁଡ଼ିକ ପ୍ରଧାନତଃ ପଦ୍ୟାତ୍ମିକା ଏବଂ ଦୈବୀ କଥାବସ୍ତୁରେ ପରିପୂର୍ଣ୍ଣ । ଜନସାଧାରଣଙ୍କ ଆରାଧ୍ୟ ରାଧାକୃଷ୍ଣ ଅଥବା ରାମସୀତାଙ୍କୁ କେନ୍ଦ୍ରକରି ବହୁ ଲୀଳା ଓ ଯାତ୍ରା ସୃଷ୍ଟି ହେଉଥିଲା । ସୁଆଙ୍ଗଗୁଡ଼ିକ ସଙ୍ଗୀତ ସର୍ବସ୍ୱ । ଏଥିରେ ଗଦ୍ୟର ସମାବେଶ ନ ଥାଏ । କିନ୍ତୁ ଗୀତାଭିନୟରେ ପ୍ରତ୍ୟେକ ଭୂମିକା ଲାଗି ଭିନ୍ନ ଭିନ୍ନ ପାତ୍ରପାତ୍ରୀ ଆବଶ୍ୟକ । ଗୀତିନାଟ୍ୟ ବା 'ଅପେରା'ରେ ସଙ୍ଗୀତ ଓ ଗଦ୍ୟ କଥୋପକଥନ ପ୍ରାୟ ସମାନ ଭାବରେ ଥାଏ । ଆଧୁନିକ ନାଟକ ଦ୍ୱାରା ଗୀତିନାଟ୍ୟ ବିଶେଷଭାବେ ପ୍ରଭାବିତ । ଯାତ୍ରାର ଅଭ୍ୟୁଦୟ ପୂର୍ବରୁ 'ଚମ୍ପୂ' ସାହିତ୍ୟ ଭଳି ପଦ୍ୟାକାରରେ କଥୋପକଥନ ରୀତି ନିଶ୍ଚୟ ପ୍ରଚଳିତ ଥିବ । ପଲ୍ଲୀ ଅଞ୍ଚଳରେ ଏବେ ମଧ୍ୟ ସାଙ୍ଗୀତିକ ସଂଳାପ ମାଧ୍ୟମରେ ବହୁ ନାଚଗୀତର ପରିଚୟ ମିଳୁଅଛି । ଉଦାହରଣ ସ୍ୱରୂପ ଦୋଳି-ଗୀତର ଉଦ୍ଧାର କରାଯାଇପାରେ—

ସ୍ତ୍ରୀ— 'ହାତୀ ଭାଙ୍ଗେ ବରଡାଳ
ଧନଟାରେ କର ମୋ ସଙ୍ଗେ ଗୋଳ
ମୋ ସଙ୍ଗେ ଗୋଳ ଗୋ ହସିବେ ସଙ୍ଗିଆ ଦଳ ।'

---

(୩) Dictionary of World Literature—Edited by Joseph. T. Shipley.

ପୁ—　'ବଣରେ ଫୁଟିଲ ମଲ୍ଲୀ
କାହାଠୁଁ ଶିଖିଛୁ ଏ ବାଙ୍କଗୃଲି
ଏ ବାଙ୍କଗୃଲି ଲୋ ଖେଳୁଛୁ ବାଙ୍କିଶିଆଳି ।' (୪)

ସେ କାଳରେ ପଲ୍ଲୀ ସଙ୍ଗୀତରେ ଯେଉଁ ସଂଳାପ ଥିଲା ତାହା ହୁଏତ 'ଗୀତନାଟ୍ୟ' ସଂଳାପର ପୂର୍ବାଭାସ ହୋଇପାରେ । କାରଣ ପଲ୍ଲୀଗୀତର ପରମ୍ପରା ଅତ୍ୟନ୍ତ ପ୍ରାଚୀନ । ଗଦ୍ୟ ସଂଳାପ ମାଧ୍ୟମରେ ଅଭିନୟ ବହୁ ପରେ ଆରମ୍ଭ ହୋଇଥିଲା । ସଙ୍ଗୀତ ସାହାଯ୍ୟରେ ରସାନୁଭୂତ ଥିଲା ସେ କାଳର ପ୍ରଧାନ ଉପାଦାନ । ପଲ୍ଲୀ ଜୀବନରେ ପ୍ରଚଳିତ ଦଣ୍ଡନାଟ, ଶବର ଶବରୀ ଗୀତ କମ୍ବା ଧାଙ୍ଗଡ଼ା ଧାଙ୍ଗଡ଼ୀ ଗୀତ ପ୍ରଭୃତିରେ ଏହି ସାଙ୍ଗୀତିକ ସଂଳାପ ସଂଯୋଜିତ ହୋଇଥିବା ଜଣାଯାଏ ।

**ଗୀତନାଟ୍ୟ ଓ ଯାତ୍ରା :**

ଓଡ଼ିଆ ନାଟକର ଅଭିବୃଦ୍ଧି ପରେ ମଧ୍ୟ ଏ ଦେଶରେ ଯାତ୍ରାର ସ୍ରୋତ ବନ୍ଦହୋଇ ନ ଥିଲା । ଯାତ୍ରାର ଉତ୍ପତ୍ତି ଓ ଯାତ୍ରା ସମ୍ପର୍କରେ ଅଜିତ୍ କୁମାର ଘୋଷ 'ବଙ୍ଗଳା ନାଟକର ଇତିହାସ' ପୁସ୍ତକରେ ବିସ୍ତୃତ ଆଲୋଚନା କରିଛନ୍ତି । ତାଙ୍କ ମତରେ ଏହା ବହୁ ପ୍ରାଚୀନ କାଳରୁ ରହି ଆସିଛି । ପ୍ରଥମେ ଗୋଟିଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନକୁ ଦେବତାମାନଙ୍କ ସହିତ ଯାତ୍ରା କଲାବେଳେ ଦେବତାଙ୍କ ମହାତ୍ମ୍ୟ ପ୍ରଖ୍ୟାପନ କରି ଯେଉଁ ନାଚଗୀତ ହୋଇଥାଏ ; ଏହାହିଁ 'ଯାତ୍ରା' । ତେଣୁ ପ୍ରଥମେ 'ଯାତ୍ରା' କହିଲେ ଉତ୍ସବ ଉପଲକ୍ଷେ ଗମନ ବୁଝାଉଥିଲା—ଯେପରି ଦୋଳଯାତ୍ରା, ଗୋଷ୍ଠଯାତ୍ରା ଅଥବା ରଥଯାତ୍ରା । କାଳକ୍ରମେ କେଉଁଆଡ଼େ ନ ଯାଇ ଗୋଟିଏ ସ୍ଥାନରେ ବସି ଅଭିନୟ କରିବା ହେଲା 'ଯାତ୍ରା' । ଏହା କେବଳ ଦେବଲୀଳାରେ ପର୍ଯ୍ୟବେଶିତ ହେଉଥିଲା । ଏହି ପ୍ରାଚୀନ ଦେବଭାବାତ୍ମକ ଯାତ୍ରାରୁ ଆଧୁନିକ ଯାତ୍ରା ଓ ଲୀଳାର ଉଦ୍ଭବ ହୋଇଅଛି । ଅବଶ୍ୟ ଯୁଗରୁଚି ଅନୁସାରେ ଏଥିରେ ନାନା ରଙ୍ଗ ଓ ତାମସା ଯୋଡ଼ିଦିଆଯାଇଛି । ତାଙ୍କ ମତରେ ଚୈତନ୍ୟଙ୍କ ବୈଷ୍ଣବ ଧର୍ମ ପ୍ରଚାର ସଙ୍ଗେ ସଙ୍ଗେ କୃଷ୍ଣଯାତ୍ରା ବିଶେଷ ଭାବରେ ଲୋକପ୍ରିୟ ହୋଇ ଉଠିଲା । ଭକ୍ତିରସର ଆଧିକ୍ୟ ସାଧାରଣତଃ ଯାତ୍ରା ମଧ୍ୟରେ ଅନୁଭୂତ ହୁଏ । ପ୍ରଥମେ ଶକ୍ତିପୂଜା ଯାତ୍ରା ଉପରେ ଯଥେଷ୍ଟ ପ୍ରଭାବ ପକାଇଥିଲେ ହେଁ କୃଷ୍ଣଲୀଳା ହିଁ ଯାତ୍ରାର ପ୍ରଧାନ ଉପାଦାନ । ଜୟଦେବଙ୍କ 'ଗୀତ ଗୋବିନ୍ଦ' ପ୍ରାଚୀନ ଭାରତୀୟ ନାଟ୍ୟଧାରାର ଏକ ଉଜ୍ଜ୍ୱଳ ଉଦାହରଣ ।

---

(୪) ପଲ୍ଲୀଗୀତ ସଞ୍ଚୟନ (୧୯୫୪)—ଅଧ୍ୟାପକ କୁଞ୍ଜବିହାରୀ ଦାସ, ପୃ ୨୦୧-୨

ଏହି ସମସ୍ତ ଆଲୋଚନାରୁ ଓଡ଼ିଆ ଯାତ୍ରା ଓ ଲୀଳାର ଅଭ୍ୟୁଦୟର ଇତିହାସ ମଧ୍ୟ ଅନୁଧ୍ୟାନ କରାଯାଇପାରେ । ଏ ଦେଶର ସମାଜରେ ଆଧ୍ୟାତ୍ମିକତାର ପ୍ରେରଣା ଯଥେଷ୍ଟ ବେଶୀ । ଆମ ସମାଜ ବହୁକାଳ ଧରି ପୁରାଣ ସାହିତ୍ୟର ପରମ୍ପରାରେ ପରିବର୍ଦ୍ଧିତ । ତେଣୁ ପ୍ରଥମେ ରାମାୟଣ ଓ ମହାଭାରତର କଥାବସ୍ତୁ ଲୀଳାକାରରେ ଓଡ଼ିଆ ଭାଷାରେ ବହୁକାଳରୁ ଅଭିନୀତ ହୋଇ ଆସୁଥିବା ସ୍ୱାଭାବିକ । ପ୍ରାୟ ଷୋଡ଼ଶ ବା ସପ୍ତଦଶ ଶତାବ୍ଦୀରେ ମୁସଲମାନ ଶାସନ କାଳରେ ଓଡ଼ିଆ ତଥା ବଙ୍ଗଳା ସାହିତ୍ୟରେ ଲୀଳା, ସୁଆଙ୍ଗ, ଗୀତାଭିନୟ ପ୍ରଭୃତିର ସୃଷ୍ଟି ହୋଇଥିବା ଅନୁମାନ କରାଯାଇପାରେ । କିନ୍ତୁ ଏହାର ବହୁ ପୂର୍ବରୁ ଓଡ଼ିଶାର ଦେବ ମନ୍ଦିରମାନଙ୍କରେ 'ଦେବଦାସୀ' ପ୍ରଥା ପ୍ରଚଳିତ ଥିବାର ବହୁ ପ୍ରମାଣ ମିଳେ । ଏପରିକି ବିଭିନ୍ନ ଶିଳାଲେଖ ଓ ପ୍ରାଚୀନ ଦେବଦେବୀ ମନ୍ଦିରମାନଙ୍କ ଗାତ୍ରରେ ଏହାର ପ୍ରମାଣ ଅଧିକ ସ୍ପଷ୍ଟ । କାଳକ୍ରମେ ଏହା ବିଭିନ୍ନ ପର୍ଯ୍ୟାୟ ମଧ୍ୟଦେଇ ଶେଷରେ ଗୀତିନାଟ୍ୟ ରୂପ ଗ୍ରହଣ କଲା ।

## ଯାତ୍ରା ଏବଂ ଗୀତିନାଟ୍ୟର ବୈଶିଷ୍ଟ୍ୟ :

ଆଧୁନିକ ଚଳଚ୍ଚିତ୍ର ଓ ନାଟକ ଯୁଗରେ ଧାରାବାହିକ ଭାବରେ ଯାତ୍ରା, ଗୀତିନାଟ୍ୟ ଓ ଲୀଳାର ପରମ୍ପରା ଗଢ଼ି ଆସିଛି । ଏ ଦେଶର ଅଧିକାଂଶ ଲୋକ ପଲ୍ଲୀ ଅଧିବାସୀ । ସହର ଜୀବନର ସୌଖୀନ କଳାବିଳାସ ଭୋଗ କରିବା ସେମାନଙ୍କ ପକ୍ଷେ ଅସମ୍ଭବ । ତେଣୁ କାଳ କାଳ ଧରି ଏହି ଯାତ୍ରା, ଲୀଳା ଓ ସୁଆଙ୍ଗ ସେମାନଙ୍କ କର୍ମକ୍ଳାନ୍ତ ଜୀବନକୁ ଆମୋଦିତ କରିଛି । ଯାତ୍ରାର କଥାବସ୍ତୁ ପୁରାଣରୁ ଗୃହୀତ । ତେଣୁ ତାହା ଜନସାଧାରଣଙ୍କର ଅତ୍ୟନ୍ତ ପରିଚିତ । 'ଉଷା ପରିଣୟ' 'ସୁଭଦ୍ରା ହରଣ', 'ରୁକ୍ମଣୀ ବିବାହ' ଇତ୍ୟାଦି ଲୋକପ୍ରିୟ କଥାବସ୍ତୁ ଗୁଡ଼ିକ ହିଁ ଯାତ୍ରା ମାଧ୍ୟମରେ ପରିବେଷିତ ହୋଇଥାଏ । ଯାତ୍ରା ଅଥବା ଲୀଳାରେ କୌଣସି ରଙ୍ଗମଞ୍ଚର ଆବଶ୍ୟକତା ପଡ଼େ ନାହିଁ । ଖୋଲା ସ୍ଥାନରେ ଏଗୁଡ଼ିକର ଅଭିନୟ ପ୍ରଦର୍ଶନ ହୋଇଥାଏ । ଓଡ଼ିଆ କାବ୍ୟମାନଙ୍କର କଥାବସ୍ତୁ ମଧ୍ୟ ଯାତ୍ରା ଗୁଡ଼ିକରେ ଆଦୃତ ହେଉଥିଲା । ବୈଷ୍ଣବ ପାଣିଙ୍କ 'ଲାବଣ୍ୟବତୀ' ବା 'ଚନ୍ଦ୍ରଭାନୁ ପରିଣୟ' ପ୍ରଭୃତି ଉଲ୍ଲେଖଯୋଗ୍ୟ ।

ରଙ୍ଗମଞ୍ଚର ଉନ୍ନତି ଓ ନାଟ୍ୟ ସାହିତ୍ୟର ବହୁଳ ପ୍ରଚାର ପରେ ଯାତ୍ରା ଓ ଗୀତିନାଟ୍ୟରେ ମଧ୍ୟ ପ୍ରଭୂତ ଉନ୍ନତି ସମ୍ଭବ ହୋଇଥିଲା । ଏ ସମ୍ପର୍କରେ କେବଳ ବୈଷ୍ଣବଚରଣ ପାଣିଙ୍କ ଗୀତିନାଟ୍ୟ ଗୁଡ଼ିକର ଆଲୋଚନା କଲେ ସ୍ତମ୍ଭିତ ହେବାକୁ ପଡ଼େ । ତାଙ୍କର ସଙ୍ଗୀତ ଯେପରି ଲୋକପ୍ରିୟ, ସଂଳାପ ସଂଯୋଜନା

ମଧ୍ୟ ସେହିପରି ମାର୍ଜିତ ଓ ଉନ୍ନତ ଧରଣର । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଭଦ୍ରକ ନିକଟସ୍ଥ ନଳାଙ୍ଗ ଗ୍ରାମର କବି ଜଗନ୍ନାଥ ପାଣିଙ୍କୁ (୧୮୩୬-୧୭) ଗ୍ରହଣ କରାଯାଇପାରେ । ପରବର୍ତ୍ତୀ କାଳରେ ଗୀତିନାଟ୍ୟ କବି ଭାବରେ କେନ୍ଦ୍ରାପଡ଼ାର ଗୋପାଳ ଦାଶ, ଭିକାରି ଚରଣ ନାୟକ ଓ ମାଗୁଣୀ ଦାଶ ପ୍ରଭୃତିଙ୍କୁ ଗ୍ରହଣ କରାଯାଇଥାଏ । କିନ୍ତୁ ଚଳିତ ଶତାବ୍ଦୀର ଚତୁର୍ଥ ଦଶକରେ ସୁଆଙ୍ଗ ଓ ଗୀତିନାଟ୍ୟାଦି ରଚନାରେ ପୂର୍ବସୂରିମାନଙ୍କୁ ଅତିକ୍ରମ କରି 'ଗୀତିନାଟ୍ୟ'କୁ ଆଧୁନିକ ନାଟକାଭିମୁଖୀ କରାଇ ପାରିଥିବା ଗଣକବି ବୈଷ୍ଣବ ପାଣିଙ୍କ (୧୮୮୨-୧୯୫୬) ନାମ ଉଲ୍ଲେଖଯୋଗ୍ୟ ।

ଓଡ଼ିଆ ସାହିତ୍ୟରେ ୧୭୮୯ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିବା କବିସୂର୍ଯ୍ୟ ବଳଦେବ ରଥଙ୍କୁ ଗୀତିନାଟ୍ୟ କବି ଭାବରେ ଗ୍ରହଣ କରି ତାଙ୍କ ରଚିତ 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ'କୁ ଆଧୁନିକ ଗୀତିନାଟ୍ୟର ମୂଳ ଉତ୍ସ ବୋଲି ମତବ୍ୟକ୍ତ କରିଥାଆନ୍ତି । ଏହାର ପରବର୍ତ୍ତୀ କାଳରେ ଓଡ଼ିଆ ସାହିତ୍ୟରେ ଲୀଳା ଓ ସୁଆଙ୍ଗକୁ ଭିତ୍ତି କରି ଗୀତିନାଟ୍ୟଧର୍ମୀ ନାଟକମାନ ରଚନା କରିବାରେ ନାଟ୍ୟକାର ରଘୁନାଥ ପରିଚ୍ଛା (୧୭୯୫) ରାମଶଙ୍କର ରାୟ (୧୮୫୭) ରାଧାମୋହନ ରାଜେନ୍ଦ୍ର ଦେବ । ରାଜା ଶ୍ରୀ କିଶୋର ଚନ୍ଦ୍ର ଜଗଦେବ, ହରିହର ନାଥ, କାମପାଳ ମିଶ୍ର (୧୮୫୭)ଙ୍କ ନାମ ସର୍ବାଗ୍ରେ ସ୍ମରଣୀୟ । କିନ୍ତୁ ପ୍ରତିଭାସମ୍ପନ୍ନ ଓ ବଳିଷ୍ଠତମ କବି ଭାବରେ ଜଗନ୍ନାଥ ପାଣିଙ୍କ ନାମ ଉଲ୍ଲେଖଯୋଗ୍ୟ । କିନ୍ତୁ ଚଳିତ ଶତାବ୍ଦୀର ପ୍ରଥମ, ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଦଶକରେ ସୁଆଙ୍ଗ ଓ ଗୀତିନାଟ୍ୟାଦି ରଚନାରେ କୁଶଳୀ ଶିଳ୍ପୀ ଭାବରେ ଗଣକବି ବୈଷ୍ଣବପାଣି ଓ ବାଳକୃଷ୍ଣ ମହାନ୍ତିଙ୍କ ନାମ ଅବିସ୍ମରଣୀୟ । ବାବାଜୀ ବୈଷ୍ଣବ ଚରଣ ଦାସ (୧୮୫୭), କୃଷ୍ଣପ୍ରସାଦ ବସୁ (୧୮୯୪), ରାମଚନ୍ଦ୍ର ସ୍ୱାଇଁ (୧୯୦୫), କାଳିଚରଣ ପଟ୍ଟନାୟକ ପ୍ରଭୃତି ଗୀତିନାଟ୍ୟକାରମାନେ ଓଡ଼ିଆ ସାହିତ୍ୟର ଏହି ବିଭାଗକୁ ସମୃଦ୍ଧିଶାଳୀ କରିଛନ୍ତି । ସାଂପ୍ରତିକ ଯୁଗରେ ଯେଉଁଠି ନାଟକ ବହୁ ପରୀକ୍ଷା ମଧ୍ୟ ଦେଇ ଏକ ଉନ୍ନତ ଶିଳ୍ପକଳାରେ ପରିଣତ ହେଲାଣି ସେତେବେଳେ ମଧ୍ୟ ଗୀତିନାଟ୍ୟ ରଚନାର ଧାରା ଅବ୍ୟାହତ ରହିଛି ।

ଓଡ଼ିଆ ସାହିତ୍ୟରେ ପ୍ରଥମ କାବ୍ୟନାଟିକା ସ୍ରଷ୍ଟା ଭାବରେ ଡକ୍ଟର ମାୟାଧର ମାନସିଂହଙ୍କୁ ଗ୍ରହଣ କରାଯାଇପାରେ । ମାନସିଂହଙ୍କର 'ରାଜ କବି ଉପେନ୍ଦ୍ର' (୧୯୨୮) ଏହି ଗୌରବର ଅଧିକାରୀ । ମାନସିଂହଙ୍କ ପଦାଙ୍କ ଅନୁସରଣ କରି କାଳନ୍ଦୀଚରଣ ପାଣିଗ୍ରାହୀଙ୍କର ସୌମ୍ୟା (୧୯୩୨), ପ୍ରିୟଦର୍ଶୀ (୧୯୩୩), ପଦ୍ମିନୀ (୧୯୩୩), ବୈକୁଣ୍ଠନାଥ ପଟ୍ଟନାୟକଙ୍କ 'ଉପେକ୍ଷିତା', ହରିଶ୍ଚନ୍ଦ୍ର ବଡ଼ାଲଙ୍କ 'ଦେଶର ଡାକ' (୧୯୩୨) ରାଧାମୋହନ ଗଡ଼ନାୟକଙ୍କ 'କାଳିଦାସ'

(୧୯୪୦) ପ୍ରାଣକୃଷ୍ଣ ସାମଲଙ୍କ କସ୍ତୁରୀକା (୧୯୪୬) ସଚି ରାଉତରାୟଙ୍କ 'ପୂର୍ଣ୍ଣିମା' (୧୯୩୨), ପୂର୍ବାପର (୧୯୬୪), କୁଞ୍ଜବିହାରୀ ଦାଶଙ୍କ ଗୃହିଣୀକା (୧୯୫୭) ପାଷାଣ ଚରଣେ ରକ୍ତ (୧୯୪୫), ଜ୍ଞାନୀନ୍ଦ୍ର ବର୍ମାଙ୍କର ସ୍ୱର୍ଣ୍ଣଯୁଗର ସନ୍ଧ୍ୟା (୧୯୫୭), କଳରେଇ ଫୁଲ (୧୯୬୦), ବୋଲେ ହୁଁ ଟି (୧୯୪୦), ବିନୋଦ ଚନ୍ଦ୍ର ନାୟକଙ୍କର ଚନ୍ଦ୍ର ଓ ତାରା (୧୯୫୦) ଅଧ୍ୟାପକ ପୀତାମ୍ବର ପ୍ରଧାନଙ୍କର 'କଳଙ୍ଗ କବି' (୧୯୬୭)ରେ ପ୍ରକାଶିତ ୧୯୫୬ରେ ରଚିତ କାବ୍ୟନାଟିକା ଗୁଡ଼ିକର ନାମ ଏ କ୍ଷେତ୍ରରେ ସ୍ମରଣୀୟ । "ଓଡ଼ିଆ ସାହିତ୍ୟରେ ନାଟକୀୟ ଦ୍ୱନ୍ଦ୍ୱ ସଂଘାତ ଓ କ୍ରମିକ ଗତିଶୀଳତାକୁ ରକ୍ଷାକରି ପୂର୍ବରୁ କାବ୍ୟନାଟିକା ରଚିତ ହୋଇ ନ ଥିଲେ ମଧ୍ୟ କଥୋପକଥନ ଛଳରେ ନାଟକୀୟ କାବ୍ୟ 'ନାବକେଳୀ', ନଟ୍ଟ ଗୈରି, ଭୁତକେଳୀ, ଚମ୍ପୂ ଆଦି ରଚିତ ହୋଇଥିଲା । କିନ୍ତୁ ତାହା ରାଧାକୃଷ୍ଣ ପ୍ରେମାଖ୍ୟାନକୁ ଅବଲମ୍ବନ କରି ଲେଖା ହୋଇଥିଲା ଏବଂ ଆଧୁନିକ କାବ୍ୟ ନାଟିକାର ମୌଳିକ ପ୍ରେରଣା ସେ ସବୁରେ ଅନୁଭୂତ ହେଉ ନ ଥିଲା, କିନ୍ତୁ ରବୀନ୍ଦ୍ରନାଥଙ୍କ କାବ୍ୟନାଟିକା ସମୂହ ପ୍ରକାଶିତ ହେବା ପରେ ସାହିତ୍ୟର ଏହି ବିଭାଗ ପ୍ରତି ବହୁ ଓଡ଼ିଆ କବି ଧ୍ୟାନଶୀଳ ହୋଇଥିଲେ ଫଳରେ ମାନସିଂହଙ୍କ କାବ୍ୟ ନାଟିକାରେ ତା'ର ପ୍ରଭାବ ପ୍ରତିଫଳିତ । (୫)

**ମାନସିଂହଙ୍କ ଗୀତିନାଟ୍ୟର ସଂକ୍ଷିପ୍ତ ସୂଚନା :**

ମାନସିଂହ କବି ଭାବରେ ପ୍ରଥମରୁ ଖ୍ୟାତିଲାଭ କରିଥିଲେ ହେଁ କୋଡ଼ିଏ ବର୍ଷ ବୟସରେ ଅର୍ଥାତ୍ ୧୯୨୫ ମସିହାରେ ପ୍ରଥମ ନାଟକ ରାଜ କବି ଉପେନ୍ଦ୍ର ରଚନା କରିଥିଲେ । ଏହା କଟକ ସତ୍ୟବାଦୀ ପ୍ରେସରେ ମୁଦ୍ରିତ ଓ ପ୍ରଗତି ସଂଘ ଦ୍ୱାରା ପ୍ରକାଶିତ । ଏହାର ଭୂମିକାରେ ମାନସିଂହ ଲେଖିଛନ୍ତି — "ଏ ଲେଖା ପ୍ରାୟ ତିନିବର୍ଷ ତଳର" ଅର୍ଥାତ୍ ରାଜ କବି ରଚନାର ସମୟ ହେଉଛି ଖ୍ରୀ ୧୯୨୫ ମସିହା — କିନ୍ତୁ ଏ ପୁସ୍ତକରେ ଥିବା ଶେଷ ଗୀତଟି 'କାନନେ ଆଜି ମୋର ଚିତ୍ତ ଗୈରି ।" ପ୍ରଥମେ 'ଜୀବନ ସ୍ପନ୍ଦନ' ନାମରେ ଉତ୍କଳ ସାହିତ୍ୟ ୩୦ଶ ଭାଗ ୧୨ଶ ସଂଖ୍ୟା ୧୯୩୫ ସାଲ ୧୯୨୭ ଜାନୁୟାରୀରେ ପ୍ରକାଶିତ ହୋଇଥିଲା । ମାନସିଂହ 'ରାଜ କବି ଉପେନ୍ଦ୍ର'ର ମୁଖବନ୍ଧରେ ଲେଖିଛନ୍ତି "ଉପେନ୍ଦ୍ରଙ୍କ ସମସ୍ତ ଜୀବନଟା ରହସ୍ୟମୟ ହୋଇ ରହିଛି । ଏଇ ରହସ୍ୟ ହିଁ ମୋତେ ନାଟିକା ଲେଖିବା ପାଇଁ ଉଦ୍‌ବୁଦ୍ଧ କରିଥିଲା ।" । (୬)

---

(୫) ଆଧୁନିକ ଓଡ଼ିଆ ସାହିତ୍ୟ — ଡକ୍ଟର ନିତ୍ୟାନନ୍ଦ ଶତପଥୀ ପୃ. ୩୯

(୬) ମାନସିଂହ ଗ୍ରନ୍ଥାବଳୀ ଦ୍ୱିତୀୟ ଭାଗ — ପୃ ୪୬୧ — ନବ-ସଂସ୍କରଣର ଭୂମିକା — ୧୯୬୪ ମୁଦ୍ରଣ ।

କବିଗୁରୁ ରବୀନ୍ଦ୍ରନାଥଙ୍କ 'ବାଲ୍ମୀକି ପ୍ରତିଭା' ସହିତ ଏହାର ଅଦ୍ଭୁତ ସାମଞ୍ଜସ୍ୟ ଲକ୍ଷ୍ୟ କରାଯାଏ । ଏହା ରବୀନ୍ଦ୍ର ପ୍ରଭାବ ପ୍ରସଙ୍ଗରେ ଆଲୋଚିତ ହେବ । 'ରାଜ କବି ଉପେନ୍ଦ୍ର'ରେ ସମୁଦାୟ ଛଅଟି ଦୃଶ୍ୟର ପରିକଳ୍ପନା କରାଯାଇଛି । ଯଥା— ନଦୀ ଧାର, ସଚନ୍ଦ୍ର ଶୃଙ୍ଗାଟକ, କାନନପଥ, କାନନ ନଦୀତଟ, ଉପବନ । ମଞ୍ଚରେ ଏ ସମସ୍ତ ସଜ୍ଜାକୁ ଯେତେ ସଂକ୍ଷିପ୍ତ ଓ ଦ୍ରୁତ କଲେ ମଧ୍ୟ ମଞ୍ଚର ଗତିକୁ ଅବ୍ୟାହତ ରଖିବା ଅସମ୍ଭବ ହୋଇପଡ଼େ । ତେଣୁ ଗୀତିନାଟ୍ୟଟିର ସଫଳ ଉପସ୍ଥାପନ ପାଇଁ ବର୍ଣ୍ଣିତ ଦୃଶ୍ୟ ସଜ୍ଜାକୁ ଏଡ଼ିଦେଇ ପରିବେଶ ପାଇଁ ସାଙ୍କେତିକ ବା ସୂଚନାତ୍ମକ ଦୃଶ୍ୟକୁ ଗ୍ରହଣ କରାଯାଇପାରେ । ଗୀତିନାଟ୍ୟରେ ସଙ୍କେତ ହିଁ ସ୍ପନ୍ଦନ । ଆଲୋଚ୍ୟ ଗୀତିନାଟ୍ୟରେ ଗୃହୋଟି ପୁରୁଷ, ଦୁଇଟି ନାରୀ ଏବଂ ନାଗରିକ-ଗଣ, ବଣ୍ୟ ବାଳକ ବାଳିକାଗଣଙ୍କୁ ଚରିତ୍ର ରୂପେ ଗ୍ରହଣ କରାଯାଇଛି । ପ୍ରଥମ ଦୃଶ୍ୟଟି ଶରତ ପ୍ରକୃତିର ଆରଣ୍ୟକ ପରିବେଶ, ବଣ୍ୟ ବାଳକ ବାଳିକାମାନଙ୍କର କଥୋପକଥନ ଓ ଗୀତରେ ଉନ୍ମୋଚିତ ହୋଇଛି । ରାଜକୁମାର ଉପେନ୍ଦ୍ର ଶୁଣିଛନ୍ତି ପ୍ରକୃତିର ଆହ୍ୱାନ । ଖୁବ୍ ଦୂରରୁ ଭାସି ଆସିଛି ସଙ୍ଗୀତର ମୂର୍ଚ୍ଛନା । କିଶୋର କବି ବିମୁଗ୍ଧ ଏ ରହସ୍ୟରେ । ମନପ୍ରାଣ ପ୍ରକୃତି ନିକଟରେ ସମର୍ପିତ । ଦ୍ୱିତୀୟ ଦୃଶ୍ୟ—ରାଜଧାନୀର ଶୃଙ୍ଗାଟକ, ସୈନ୍ୟଚାଳନା, ଉଦ୍‌ବୋଧନ ଗୀତ, ସିଂହାସନ ପାଇଁ ଅନ୍ତର୍ବିବାଦ—କ୍ଷମତା ଲାଳସାର ଦ୍ୱନ୍ଦ୍ୱ ଚିତ୍ରରେ ରସାଳ । ଚତୁର୍ଥ ଦୃଶ୍ୟରେ ସିଂହାସନର ପ୍ରଲୋଭନ ପ୍ରତି ଉପେନ୍ଦ୍ରଙ୍କ କଟାକ୍ଷ । ସରସ୍ୱତୀଙ୍କ ଆବିର୍ଭାବ, ଉପେନ୍ଦ୍ରଙ୍କୁ ବୀଣା ପ୍ରଦାନ ଓ ଭବିଷ୍ୟତ ସୂଚନା ଇତ୍ୟାଦି ମଞ୍ଚମାୟା ସୃଷ୍ଟି କରିବାରେ ସାହାଯ୍ୟ କରେ । ପରବର୍ତ୍ତୀ ଦୃଶ୍ୟମାନଙ୍କରେ ପ୍ରଖ୍ୟାତ କବି ଉପେନ୍ଦ୍ର ଏବଂ ବିଭିନ୍ନ ନାରୀ ଚରିତ୍ରମାନଙ୍କର ଅବତାରଣା, ରୋମାଞ୍ଚକର ମୁହୂର୍ତ୍ତର ମୁଦ୍ରାଙ୍କ ଅଙ୍କିତ ହୋଇଛି । ଯଦିଓ 'ରାଜକବି ଉପେନ୍ଦ୍ର'ର କାହାଣୀରେ କିଛି ବିଳକ୍ଷଣତା ନାହିଁ ତଥାପି ପ୍ରକୃତି ଚିତ୍ର ପ୍ରଦାନ କରିବାରେ ମାନସିଂହ ଲେଖନୀର ବିଳକ୍ଷଣତା ଅନସ୍ୱୀକାର୍ଯ୍ୟ ।

'ପୁଷ୍ପିତା'ର କଥାବସ୍ତୁରେ ମାନସିଂହ ନୂତନତ୍ୱ ପ୍ରଦର୍ଶନ କରିଛନ୍ତି । 'ଧୂପ'ରେ ଯାହା ପ୍ରକାଶଲାଭ କଲା 'ପୁଷ୍ପିତା'ରେ ତାହାର ଯେପରି ପ୍ରସ୍ତୁତି ପର୍ବ ଆରମ୍ଭ ହୋଇଥିଲା । 'କିଶୋରୀ' ନାମକ ବାଳିକାର ଯୌବନ ପ୍ରାପ୍ତି ନାଟକର କେନ୍ଦ୍ରବିନ୍ଦୁ । ଅନୂଢ଼ା ପଲ୍ଲୀ କିଶୋରୀର ଆବେଗଦୀପ୍ତ ପ୍ରେମ 'ପୁଷ୍ପିତା'ର ଉପଜୀବ୍ୟ ବସ୍ତୁ । ସହଚରୀମାନଙ୍କ ଗହଣରେ 'କିଶୋରୀ'ର ମାନସିକ ପ୍ରତିକ୍ରିୟା, ପୁଷ୍ପ, ବସନ୍ତ, ମଳୟ, ପରିମଳ ଏବଂ କାମଦେବ ପ୍ରଭୃତିଙ୍କ ଉପସ୍ଥାପନ ଦ୍ୱାରା କିଶୋରୀର ତିତ୍ତ ଶୃଙ୍ଖଳା ଏବଂ ପରେ ପରେ ମଦନ ଓ ରତିଙ୍କ ଦ୍ୱାରା କିଶୋରୀ ପ୍ରାଣର

ପରିବର୍ତ୍ତିତ ପ୍ରତିକ୍ରିୟା ଅନୁଧ୍ୟାନ କରାଯାଇପାରେ । କୁମାରୀ ଜୀବନର ମାନସିକ ବିକାଶ ଓ ପ୍ରକାଶର ପ୍ରତୀକ ଭାବେ ବ୍ୟବହୃତ ଚରିତ୍ର ମାଧ୍ୟମରେ କେତୋଟି ଗଦ୍ୟ ସଂଳାପ ସ୍ଥାନ ପାଇଥିଲେ ମଧ୍ୟ ମୁଖ୍ୟତଃ ଏଗୁଡ଼ିକ ଗୀତଧର୍ମୀ, ଭାବାଶ୍ରୟୀ । କଥାବସ୍ତୁ ଅପେକ୍ଷା ଭାବ ପ୍ରକାଶ ଏଥିରେ ଅଧିକ ଭାବେ ସଙ୍ଗଠିତ ହୋଇଛି । (୭)

'ପୁଷ୍ପାଭିନୟ'ର କାହାଣୀ ପ୍ରକୃତିର ଏକ ପରିବେଶ । ପୁଷ୍ପାଭିନୟର ସୂତ୍ରଧର ମାଧ୍ୟମରେ ଲେଖକ କୁମାରୀ ଜୀବନର ମାନସିକ ଓ ଦୈହିକ ବିକାଶର ସଙ୍କେତ ଦେଇ କଳିକା, ରବିକର, ବାୟୁ, ପ୍ରଜାପତି, ଭ୍ରମର, ଫୁଲ ଇତ୍ୟାଦିକୁ ଚରିତ୍ର ରୂପେ ଗ୍ରହଣ କରିଛନ୍ତି ।

'ପୂଜାରିଣୀ' ନାଟିକାର ରଚନା ସମୟ ପ୍ରାୟ ୧୯୨୯-୩୦ । ଲେଖକ ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟୟନ କରୁଥିବା ସମୟରେ ଲୋକଶ୍ରୁତି ଏବଂ ଖଣ୍ଡକାବ୍ୟ 'ଚିଲିକା' ବର୍ଣ୍ଣିତ ଦ୍ୱିଜକନ୍ୟା ଲକ୍ଷ୍ମୀ ଆଖ୍ୟାନକୁ କାବ୍ୟରୂପ ଦେବାପାଇଁ କବି ମାନସିଂହଙ୍କୁ ପ୍ରଭାବିତ ଓ ପ୍ରଲୁବ୍ଧ କରିଛି । ଲୋକଶ୍ରୁତିର ଏଇ ରୋମାଣ୍ଟିକ୍ ଭାବଟି ସ୍ରଷ୍ଟାମାନସରେ ସଞ୍ଚାରିତ ହେବାପରେ ଏହାର ରୂପରେଖ ନାଟିକା ରୂପରେ ଆତ୍ମପ୍ରକାଶ କରିଛି । କବି ଏଥିରେ ଇନ୍ଦ୍ରିୟୋତ୍ତର ପ୍ରେମ ବିଷୟ ବର୍ଣ୍ଣନା କରିଛନ୍ତି । ଆତ୍ମା ସର୍ବଦା ପରମାତ୍ମା ସହ ମିଳିତ ହେବାକୁ ଉନ୍ମୁଖ ହୋଇ ରହିଥାଏ । ସମସ୍ତ ବାଧା ବନ୍ଧନ ହାରି ମାନିଯାଏ । ଶେଷରେ ଆତ୍ମା ପରମାତ୍ମା ସହିତ ମିଳିତ ହୋଇ ପରମ ଶାନ୍ତି ଲଭ କରେ ଏବଂ ତାର ମୋକ୍ଷଲାଭ ହୁଏ । କବି ଏଇ କଥାକୁ ପାର୍ଥିବ ପ୍ରେମସ୍ରୋତକୁ ଅନ୍ତଃଗୁଣ ପ୍ରବାହ ମଧ୍ୟଦେଇ ବର୍ଣ୍ଣନା କରିଛନ୍ତି । ସତ୍ୟବାଦୀର ସାକ୍ଷୀଗୋପାଳ ଜନୈକ ବ୍ରାହ୍ମଣର ସୁନ୍ଦରୀ କନ୍ୟା ଲକ୍ଷ୍ମୀର ପ୍ରେମରେ ଆକୃଷ୍ଟ ହୁଅନ୍ତି । ଲକ୍ଷ୍ମୀର ଗୃହରୁ ସାକ୍ଷୀଗୋପାଳଙ୍କର ବେଣୁ, ମୁଦ୍ରିକା ଓ ଲୁଗା ପ୍ରଭୃତି ଆବିଷ୍କୃତ ହୁଏ । ଫଳରେ 'ଲକ୍ଷ୍ମୀ' ସମାଲୋଚନାର ଶରବ୍ୟ ହୁଏ । ମନ୍ଦିର କର୍ତ୍ତୃପକ୍ଷ ଦେବତାଙ୍କୁ ରାଧା ବିରହିତା ମନେକରି ଏହାର

(୭) ମଳୟ—"ଅଙ୍ଗେ ମୋ ଚନ୍ଦନ ଗନ୍ଧ
ନ ମାନେ ମୁଁ ଅର୍ଗଳ ବନ୍ଧ
ବନଗିରି ପ୍ରାନ୍ତର
ସାଗର ଦେଶାନ୍ତର
ଅଟ୍ରାଏ ମୋ ପକ୍ଷର ଛନ୍ଦ ।"

ପୁଷ୍ପିତା—ଗ୍ରନ୍ଥାବଳୀ (ଦ୍ୱିତୀୟ ଭାଗ) ପୃ ୪୬୭

ସମାଧାନ କରିବାକୁ ଯାଇ ସୁବର୍ଣ୍ଣ ରାଧା ପ୍ରତିମା ଗଢ଼ାଇବାର ପଦକ୍ଷେପ ନିଅନ୍ତି । ରାଧା ପ୍ରତିମା ଗଠନର ଆରମ୍ଭ ଦିନରୁ ଲକ୍ଷ୍ମୀକୁ ଜ୍ୱର ହୁଏ ଏବଂ ପ୍ରତିମା ସମ୍ପୂର୍ଣ୍ଣ ହେବାମାତ୍ରେ ଲକ୍ଷ୍ମୀ ମୃତ୍ୟୁର ଶିକାର ହୁଏ । ଏହାହିଁ 'ପୂଜାରିଣୀ' କାବ୍ୟନାଟିକାର ପ୍ରତିପାଦ୍ୟ ବିଷୟବସ୍ତୁ । ମାନସିଂହ ପୂଜାରିଣୀର ଆଦ୍ୟଭାଷରେ କହିଛନ୍ତି— "ଉକ୍ତ ପ୍ରତିମା ବର୍ତ୍ତମାନ ସାକ୍ଷୀଗୋପାଳର ସଖୀରୂପେ ପାର୍ଶ୍ୱମଣ୍ଡନ କରୁଅଛନ୍ତି । ରାଧାନାଥ ଏହି ସାକ୍ଷୀ ଗୋପୀନାଥ ହୃଦୟହାରିଣୀ, ଦ୍ୱିଜକନ୍ୟା ଲକ୍ଷ୍ମୀର କଥା ଚିଲିକାରେ ଉଲ୍ଲେଖ କରି ତାକୁ ଅମର କରିଯାଇଛନ୍ତି । ପିଲାବେଳେ ଚିଲିକା ପାଠବେଳୁଁ ଏ ବିଚିତ୍ର ଘଟଣା ଓ ଏଇ ମସ୍ୱିନୀ ବାଳିକା ଲେଖକର କଳ୍ପନାରେ ଗଭୀର ରେଖାପାତ କରିଥିଲେ । ଏହି ନଗଣ୍ୟ ରଚନାରେ ମୁଁ ତାହାକୁ ହିଁ ଯଥାଶକ୍ତି ରୂପଦାନ କରିବାକୁ ଚେଷ୍ଟା କରିଛି ।" ପୁନଶ୍ଚ ପରବର୍ତ୍ତୀ ସଂସ୍କରଣର ଭୂମିକାରେ ସେ ପ୍ରକାଶ କରିଛନ୍ତି, "ପାଠକେ ସ୍ମରଣ ରଖିବେ ଯେ, ସାକ୍ଷୀ ଗୋପାଳ ଓ ଲକ୍ଷ୍ମୀର ଉପାଖ୍ୟାନ ଏକ ଉପଲକ୍ଷ ମାତ୍ର । ହିନ୍ଦୁ ଦେବାଦେବୀର ମହାତ୍ମ୍ୟ ବା ବୈଷ୍ଣବ ଭକ୍ତିମାର୍ଗର ପ୍ରଚାର ପାଇଁ ମୁଁ ଏ ନାଟିକା ଲେଖି ନ ଥିଲି । ମୁଁ ପ୍ରକୃତରେ ଲେଖିଥିଲି ମାନବିକ ମନସ୍ତତ୍ତ୍ୱର ଏକ ରହସ୍ୟମୟ ବିଭାବକୁ ରୂପ ଦେବାପାଇଁ । ସେହି ବିଭାବଟି ହେଉଛି—ମନୁଷ୍ୟ ଚିତ୍ତ ଯେ ବେଳେବେଳେ ଉନ୍ମନା ହୋଇଉଠେ ; ଯାହା ପ୍ରତ୍ୟକ୍ଷ ବା ଯାହା ଦୃଶ୍ୟ ସେଥିରେ ସନ୍ତୁଷ୍ଟ ନ ହୋଇ, ସେଥିପ୍ରତି ଆକୃଷ୍ଟ ନ ରହି, ଯାହା ଅଜ୍ଞାତ, ଯାହା ଅଦୃଷ୍ଟ, ଯାହା ଦୂର ଓ ଦୂରଧିଗମ୍ୟ, ତାହାରି ପାଇଁ ଗୃହ ଓ ସମାଜର ସମସ୍ତ ନିର୍ଭରତା ଓ ସ୍ୱାଚ୍ଛନ୍ଦ୍ୟ ପରିତ୍ୟାଗ କରି ପଳାୟନ କରିବା । ତରୁଣ ବୟସରେ ଏ ଭାବ ପ୍ରତ୍ୟେକଙ୍କ ଜୀବନରେ ପ୍ରାୟ ଉଣା ଅଧିକ ଦେଖାଦିଏ । ମୋର ମନେହୁଏ ମାନବ ପ୍ରାଣରେ ଏହା ଉଚ୍ଚତର ଆଧ୍ୟାତ୍ମିକ ଜୀବନର ଅଙ୍କୁରୋନ୍ମେଷ । ସ୍ଥୂଳ ପ୍ରତି, ନିକଟ ପ୍ରତି, ପରିଚିତ ପ୍ରତି ବୀତସ୍ପୃହ ହୋଇ ସୂକ୍ଷ୍ମପ୍ରତି, ଦୂରପ୍ରତି, ଅପରିଚିତ ପ୍ରତି ଗଭୀର ଆକର୍ଷଣ ମାନବ ଚିତ୍ତରେ ଦେବତ୍ୱର ଆବିର୍ଭାବର ଚିହ୍ନ । ସାଧାରଣତଃ ଏହି ଦେବାଗ୍ନି ବିନ୍ଦୁ ଥରେ ଜଳିଉଠି ସମାଜ, କୁଟୁମ୍ବ ଓ ସଂସାରର ନାନା ଜଞ୍ଜାଳ, ନାନା ବାଧା, ନାନା ପ୍ରଲୋଭନ ଓ ବନ୍ଧନର ପାଉଁଶ ଗଦା ତଳେ ପୁଣି ପୋତିହୋଇ ଶୀତଳ ହୋଇଯାଏ । କିନ୍ତୁ ଭାଗ୍ୟବାନ କେତେକ ତାକୁ କୌଣସିମତେ ଲିଭିଯିବାକୁ ଦିଅନ୍ତି ନାହିଁ । ସେହି କେତେକ ହେଉଛନ୍ତି ବୁଦ୍ଧ, ଖ୍ରୀଷ୍ଟ, ମହମ୍ମଦ, ରାମକୃଷ୍ଣ, ବିବେକାନନ୍ଦ, ଗାନ୍ଧୀ, ଅରବିନ୍ଦ; ପୁଣି ଦାନ୍ତେ, ଶେଲି, କାଳିଦାସ, ରବୀନ୍ଦ୍ର । ସେହିମାନେ ଅଜନ୍ତା କୋଣାର୍କର ସ୍ରଷ୍ଟା । ବାହାର ଜୀବନର ଦୈନ୍ୟ, ନିର୍ଯାତନାର ଆବରଣ ତଳେ ଯେଉଁମାନେ ନିଜର

କଳ୍ପଲୋକକୁ ପ୍ରାଣପଣେ ବଞ୍ଚାଇ ରଖି ଯାଇଛନ୍ତି ଏବଂ ସେହି ସୂତ୍ରରେ ମାନବୀୟ ଐତିହ୍ୟକୁ କରିଯାଇଛନ୍ତି ଶ୍ରୀମନ୍ତ ଓ ମହିମାମୟ । × × ଲକ୍ଷ୍ମୀ ପ୍ରକୃତରେ ଏଠି ଜଣେ ପଣ୍ଡାର କନ୍ୟା ମାତ୍ର ; ଦେବତା ବା ସତ୍ୟବାଦୀର ସାକ୍ଷୀଗୋପାଳ ମନ୍ଦିରରେ ବିଜେଥିବା ସେହି କୃଷ୍ଣପ୍ରସ୍ତରର ମୂର୍ତ୍ତି ନୁହେଁ । ଏଠି ଲକ୍ଷ୍ମୀ ଶାନ୍ତ ମାନବାତ୍ମା । ଦେବତା ହେଉଛି ସେହି ଅନନ୍ତ ଅଜ୍ଞାତ ସୁଦୂର, ଚିରନ୍ତର. ଚର ଆକର୍ଷଣ ।" (୮)

'ବାରବାଟୀ'ର କଥାବସ୍ତୁ ସର୍ବତଃ କୃପାସିନ୍ଧୁ ମିଶ୍ରଙ୍କ 'ଉତ୍କଳ ଇତିହାସ'ରୁ ଗ୍ରହଣ କରାଯାଇଥିଲେ ମଧ୍ୟ ଏଥିରେ କଳ୍ପନାର ଭାଗ ବେଶୀ । ଲେଖକଙ୍କ ନିଜ ମତରେ ଉତ୍କଳର ଗୌରବମୟ ଅତୀତର କେତେକାଂଶକୁ ନାଟକାକାରରେ ସଜେଇ ଥୋଇବାର ବାସନା ଲେଖକର ମନରେ ବହୁବର୍ଷ ହେଲା ଜାଗ୍ରତ ରହିଛି । କ୍ରମେ କ୍ରମେ ଲେଖକର କଳ୍ପନା ବାରବାଟୀକୁ କେନ୍ଦ୍ର କରି ହିଁ ଗଢ଼ି ଉଠିଛି । କାରଣ ଷୋଡ଼ଶ ଶତାବ୍ଦୀରେ ଉତ୍କଳର ଅଧଃପତନ ପର୍ଯ୍ୟନ୍ତ ଚାରିଶତ ବର୍ଷ ଧରି ବାରବାଟୀର ଇତିହାସ ହିଁ ଉତ୍କଳର ଇତିହାସ । × × ଉତ୍କଳର ଇତିହାସ ଗୌରବମୟ ବୋଲି ଦେଉଳମାନଙ୍କର ପଥର ବା ତମ୍ବାପଟା କହନ୍ତି । କିନ୍ତୁ ଏମାନଙ୍କର କହିବା ଏତେ କ୍ଷୁଦ୍ର, ଏତେ ରହସ୍ୟମୟ ଯେ ତାକୁ ନେଇ ଐତିହାସିକ ନାଟକ ଲେଖିବା, ବାରିବନ୍ଦୁକୁ ମୁକ୍ତା କରିବାର ଚେଷ୍ଟା କରିବା ପରି ଦୁଃସାହସିକତାର ହିଁ ପରିଚୟ ଦେବ । × × ବାଧ୍ୟହୋଇ ତେଣୁ ଅଧିକାଂଶ ସ୍ଥଳରେ ଏ ନାଟକର ଗଳ୍ପାଂଶକୁ କାଳ୍ପନିକ କରିବା ପାଇଁ ବାଧ୍ୟ ହୋଇଅଛି । କିନ୍ତୁ ଗଳ୍ପର ମେରୁଦଣ୍ଡଟା ଅର୍ଥାତ୍ ମୋଟ୍ କଥାଟା ଯେ ଆଦୌ ଅଳୀକ ନୁହେଁ ।

ଅନଙ୍ଗଭୀମ ଦେବଙ୍କ ରାଜୁତିବେଳେ ମୁସଲ୍‌ମାନମାନଙ୍କ ଗୌଡ଼ ବିଜୟ, ଗୌଡ଼ରଜା ଲକ୍ଷ୍ମଣ ସେନ୍‌ଙ୍କୁ ଗଜପତି ଦରବାରର ରାଜନୈତିକ ଆଶ୍ରୟ ପ୍ରଦାନ, ଜଗନ୍ନାଥଙ୍କର ନୂତନ ମନ୍ଦିର ପ୍ରତିଷ୍ଠା, ସିଂହଦ୍ୱାର ନିକଟରେ ପତିତପାବନ ମୂର୍ତ୍ତି ସ୍ଥାପନା, ବିଦ୍ରୋହ ଦମନ ପାଇଁ ନରସିଂହ ଦେବଙ୍କ ତାମ୍ରଲିପ୍ତି, ମାଳବ ତେଲେଙ୍ଗାନା ଯାତ୍ରା, ଦାକ୍ଷିଣାତ୍ୟରେ ଓ୍ୱାରଙ୍ଗଲ, କୁଲବର୍ଗ ଇତ୍ୟାଦିର ପତନ, ଅନଙ୍ଗଭୀମ ଦେବଙ୍କ ଦ୍ୱାରା ମୁସଲ୍‌ମାନଙ୍କ ପରାଜୟ, ମାଳବ ରାଜକନ୍ୟାଙ୍କ ସହ ବାରବାଟୀରେ ନରସିଂହ ଦେବଙ୍କ ବିଜୟ ଇତ୍ୟାଦି ନାଟକଟିକୁ ବିଷୟବହୁଳ କରିଛି । ସାଧାରଣତଃ ଐତିହାସିକ ନାଟକରେ ସମକାଳୀନ ଶାସନ ତଥା ରାଜନୈତିକ ଦର୍ଶନ ରହିବା ବିଧେୟ । ବାରବାଟୀ ନାଟକ ଐତିହାସିକ ପୃଷ୍ଠଭୂମିରେ ଲେଖା ହୋଇଥିବାରୁ ବିଭିନ୍ନ ସଂଳାପରେ ଐତିହାସିକ ଗାମ୍ଭୀର୍ଯ୍ୟ

(୮) ମାନସିଂହ ଗ୍ରନ୍ଥାବଳୀ, ଦ୍ୱିତୀୟ ଭାଗ—ପୃ ୪୫୯-୪୬୧

ରକ୍ଷା କରିବାକୁ ଲେଖକ ଚେଷ୍ଟା କରିଛନ୍ତି । ରାଜା ବା ସାମନ୍ତମାନେ ରାଜସଭାରେ ଅମିତ୍ରାକ୍ଷର ସଂଳାପ ବ୍ୟବହାର କରୁଥିବାସ୍ଥଳେ ସାଧାରଣ ସମୟରେ ବା ରାଜଅନ୍ତଃପୁରରେ ସାଧାରଣ ଲୋକଙ୍କ ଭାଷା ବ୍ୟବହାର କରିଛନ୍ତି । ସୂକ୍ଷ୍ମଭାବରେ ପର୍ଯ୍ୟବେକ୍ଷଣ କଲେ ନାଟକର ସମସ୍ତ ଚରିତ୍ର ପ୍ରତ୍ୟକ୍ଷ ବା ପରୋକ୍ଷଭାବରେ ନିଜ ସଂଳାପ ମାଧ୍ୟମରେ ଉତ୍କଳର ଗୌରବ ଗାନ କରିଛନ୍ତି ।

ନାଟକର ଅନ୍ୟତମ ଉପାଦାନ ହେଉଛି ନାଟ୍ୟୋତ୍କଣ୍ଠା । ପ୍ରେକ୍ଷାଳୟ ପ୍ରେକ୍ଷାଳୟ କିମ୍ବା ମୁକ୍ତ ରଙ୍ଗମଞ୍ଚରେ ଦର୍ଶକ ବସିରହି ଏକନିଷ୍ଠ ଚିତ୍ତରେ ନାଟ୍ୟରସ ଆସ୍ୱାଦନ କରିଥାଏ । ନାଟ୍ୟୋତ୍କଣ୍ଠା ନାଟକର ନାଟକୀୟତାରେ ଅଧିକ ସହାୟକ ହୋଇଥାଏ । 'ବାରବାଟୀ' ନାଟକର ପ୍ରଥମ ଅଙ୍କରେ ମୁସଲମାନ୍ ଆକ୍ରମଣର ସାମାନ୍ୟ ସୂଚନା ଦେଇ ନାଟ୍ୟକାର ଯେଉଁ ଉତ୍କଣ୍ଠା ସୃଷ୍ଟିକଲେ ତାହା ନାଟକର ଶେଷ ପର୍ଯ୍ୟନ୍ତ ରହିଛି । ପ୍ରଥମ ଅଙ୍କ ତୃତୀୟ ଦୃଶ୍ୟରେ ନରସିଂହଦେବଙ୍କ ହଠାତ୍ ଯୁଦ୍ଧ ଯାତ୍ରା କେତେକାଂଶରେ ଉତ୍କଣ୍ଠା ସୃଷ୍ଟି କରିଛି । ତା'ପରେ ହଠାତ୍ ଜଳେଶ୍ୱର ଦୁର୍ଗକୁ ମୁସଲମାନ ମାନଙ୍କର ଆକ୍ରମଣ ବେଳେ ନରସିଂହ-ଦେବ ଅନୁପସ୍ଥିତ ରହିଛନ୍ତି । ତୃତୀୟ ଅଙ୍କର ପ୍ରଥମ ଦୃଶ୍ୟରେ ଜଳେଶ୍ୱର ଦୁର୍ଗର ଲୋକମାନେ ବନ୍ଦୀହୋଇ ରହିଛନ୍ତି । ବାହାର ସାହାଯ୍ୟ କିମ୍ବା ଖାଦ୍ୟ ସାମଗ୍ରୀ ପହଞ୍ଚୁ ନାହିଁ । ସେତେବେଳର ଅବସ୍ଥା ବିଷୟରେ ସାମାନ୍ୟ ଉତ୍କଣ୍ଠା ଆସେ । ପରେ ତୃତୀୟ ଅଙ୍କର ଶେଷ ଦୃଶ୍ୟରେ ନରସିଂହଦେବ ଓ ଓଡ଼ିଆ ସୈନ୍ୟଙ୍କର ପ୍ରବେଶ ସମୟର ପ୍ରତୀକ୍ଷା ପାଠକକୁ ଉତ୍କଣ୍ଠିତ କରେ ।

'ନଷ୍ଟ ନୀଡ଼' ସୃଷ୍ଟି ପଶ୍ଚାତରେ ପ୍ରତିଯୋଗିତା ଭାବ ରହିଥିବା ଏହି ପୁସ୍ତକର ମୁଖବନ୍ଧରୁ ଜଣାଯାଏ । ଓଡ଼ିଆରେ ସାମାଜିକ ନାଟକ ଲେଖିବା ପାଇଁ ଓଡ଼ିଆ ସାହିତ୍ୟ ସମାଜର ଆହ୍ୱାନ କବି ମାନସିଂହଙ୍କୁ ଏକ ପୂର୍ଣ୍ଣାଙ୍ଗ ସାମାଜିକ ନାଟ୍ୟ କାବ୍ୟ 'ନଷ୍ଟନୀଡ଼' ରଚନାରେ ବ୍ରତୀ କରିଛି । ଅବଶ୍ୟ ଏହାର ବହୁ ପୂର୍ବରୁ ଅଧ୍ୟୟନ ସମୟରେ ଲେଖକ ସେକ୍ସପିୟର, ଇବ୍‌ସନ୍ ପ୍ରଭୃତି ପ୍ରଖ୍ୟାତ ନାଟ୍ୟକାରମାନଙ୍କ ସୃଷ୍ଟି ଦ୍ୱାରା ସମ୍ପୂର୍ଣ୍ଣ ପ୍ରଭାବିତ ହୋଇଥିବା ମୁଖବନ୍ଧରେ ସୂଚିତ ହୋଇଛି । "କୋଡ଼ିଏବର୍ଷ ତଳେ ଏକ ସାମାଜିକ ନାଟକ ପାଇଁ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ଏକ ପୁରସ୍କାର ଘୋଷିତ ହୋଇଥିଲା । ତାହାର ଉତ୍ତରରେ ଏହି ନାଟକଟି ମୁଁ କନିକାପଡ଼ାରେ ଶିକ୍ଷକ ଥିଲାବେଳେ ଲେଖିଥିଲି — ଏକଶତ ମୁଦ୍ରାର ଲୋଭରେ । × × ଏ ଦେଶରେ ନାଟକର ଇତିହାସ କେବଳ ପ୍ରାଚୀନ ନୁହେଁ; ନାଟକୀୟ ତର୍କ ମଧ୍ୟ ସେହିପରି ପ୍ରାଚୀନ । ଆମର ଆଳଙ୍କାରିକମାନେ ଏ କଳାକୁ ଇତର ତାମସୀ ରୂପେ କେବେ କଳ୍ପନା କରି ନ ଥିଲେ । ଏହା ଈଶ୍ୱର ଓ

ମନୁଷ୍ୟକୁ ଏକ କରୁଥିଲା; ପୁଣି ଏଥିରେ ରଙ୍ଗମଞ୍ଚ, ନାଟ୍ୟକାର, ଅଭିନେତା, ଅଭିନେତ୍ରୀ ଓ ଦର୍ଶକମଣ୍ଡଳ — ସମସ୍ତ ଗୋଟିଏ ଅଭିନ୍ନ ଏକକ ବୋଲି ଧରି ଯାଉଥିଲେ । × × ଟ୍ରାଜେଡ଼ିର ଖ୍ରୀମକାନ୍ତ ମହିମା ଅନୁଭବ କରାଯାଇପାରେ— ଦୁଃଖର, ପତନର, ଅନୁତାପର ଯେ ଗୋଟିଏ ଅପୂର୍ବ ସୌନ୍ଦର୍ଯ୍ୟ ଅଛି ତାହା ଆଉ ବୁଝାଇବାକୁ ପଡ଼ିଲା ନାହିଁ । × × ବୋଧହୁଏ ଓଡ଼ିଆରେ ଏହା ପ୍ରଥମ ଟ୍ରାଜେଡ଼ି । ବସ୍ତୁତଃ 'ନଷ୍ଟନୀଡ଼' ସୃଷ୍ଟି ସମୟକୁ ସାମାଜିକ ନାଟକ ନ ଥିଲା ନୁହେଁ; ମାତ୍ର ତା'ର ସୌନ୍ଦର୍ଯ୍ୟ, ଗାମ୍ଭୀରତା, ବ୍ୟାପକତା, ତଥା ବିୟୋଗାନ୍ତକ ଗମ୍ଭୀରତା ପୌରାଣିକ ବା ଐତିହାସିକ ନାଟକରେ ଥିବା ପରି ନ ଥିଲା ।" (୧)

ମଧୁବାବୁ କଟକର ଏକ ସ୍କୁଲ ଶିକ୍ଷକ । ଏକମାତ୍ର କନ୍ୟା ମାଧବୀ ସହିତ ଗ୍ରାମ ପୂର୍ଣ୍ଣିର ଅନୁରାଗ ଏବଂ ଶେଷରେ ପୂର୍ଣ୍ଣିର ବନ୍ଧୁ କିଶୋର ସହିତ ତା'ର ବିବାହ— ବିବାହର ପରବର୍ତ୍ତୀ ପର୍ଯ୍ୟାୟ ଅତ୍ୟନ୍ତ କରୁଣ । ସ୍ୱାମୀର ଦୁର୍ବ୍ୟବହାର ଏବଂ ଶେଷରେ ମାଧବୀର ଆତ୍ମହତ୍ୟା ସମଗ୍ର ନାଟକଟିକୁ କରୁଣ କରି ଗଢ଼ିଛି ।

'ନଷ୍ଟନୀଡ଼' ପ୍ରସ୍ତାବନାରେ ନଟୀ ମାଙ୍ଗଳିକ ଗୀତ ଗାନ କରିଛି । ପ୍ରଥମ ଅଙ୍କ ପ୍ରଥମ ଦୃଶ୍ୟର ନେପଥ୍ୟରେ ମାଧବୀ ଗୀତ ଗାଇଛି, ନାଟକର ପାଞ୍ଚଟି ଅଙ୍କ ଓ ଷୋଳଟି ଦୃଶ୍ୟ ରହିଛି — ଏହାର ଦୃଶ୍ୟ ସଜ୍ଜା ଓ ନାଟକୀୟତା ବିପନ୍ନ କଲାଭଳି କୌଣସି ଘଟଣା ବା ଚରିତ୍ରର ଅବତାରଣା କରାଯାଇନି । ମଞ୍ଚ ସଫଳତା ନିମନ୍ତେ ପାତ୍ରୋପଯୋଗୀ ଭାଷା ରହିଛି ଯାହାଦ୍ୱାରା ଚରିତ୍ର-ଗୁଡ଼ିକର ବ୍ୟକ୍ତିଗତ ମର୍ଯ୍ୟାଦା ବିକାଶରେ ସହାୟକ ହୋଇଛି । ମଞ୍ଚ ମୂଲ୍ୟ ସଂରକ୍ଷିତ ହୋଇଛି ।

ପଞ୍ଚମ ଅଙ୍କର ପ୍ରଥମ ଓ ତୃତୀୟ ଦୃଶ୍ୟରେ କିଶୋର ଓ ମାଧୁରୀଙ୍କ କଥୋପକଥନରେ ଇବ୍‌ସେନ୍‌ଙ୍କ ନାୟିକା ନୋରାର ଚିନ୍ତା ଚେତନା, ନାରୀର ସମ୍ମାନ ଓ ମର୍ଯ୍ୟାଦାର ଚିତ୍ର କିଞ୍ଚିତ ପ୍ରତିଫଳିତ । ମାତ୍ର ଇବ୍‌ସେନ୍‌ଙ୍କ ଶାଣିତ ସଂଳାପ, ବଳିଷ୍ଠ ନାଟକୀୟ କଥୋପକଥନ, ତୀବ୍ର ବିଶ୍ୱଜନୀନ ଆବେଦନ ଏଥିରେ ଦେଖାଯାଏ ନାହିଁ । ଟ୍ରାଜେଡ଼ିର ଅନ୍ତର୍ଦାହ ଓ ସଂଘର୍ଷ ଆଲୋଚିତ ନାଟକଟିରେ ଅତି କ୍ଷୀଣଭାବେ ଉପସ୍ଥାପନ କରାଯାଇଛି । 'ନଷ୍ଟନୀଡ଼'ର ମୁଖ୍ୟ ଚରିତ୍ର ପୂର୍ଣ୍ଣି ଏତେ ବଳିଷ୍ଠ ନୁହେଁ — ଖଳ ନାୟକ କିଶୋର ମନରେ ସନ୍ଦେହର ତାଡ଼ନା ଅଛି ମାତ୍ର ତୀବ୍ରତା ନାହିଁ । କିଶୋର ପାଇଁ ମାଧବୀର ମୃତ୍ୟୁ ଯେପରି ଅବଶ୍ୟମ୍ଭାବୀ । ତେଣୁ ନାଟକର ଆବେଦନ ଏତେ ବଳିଷ୍ଠ ନୁହେଁ ।

---

(୧) ମାନସିଂହ ଗ୍ରନ୍ଥାବଳୀ ଦ୍ୱିତୀୟଭାଗ—ପୃ. ୫୨୨-୨୩

'ବୁଦ୍ଧଦୂତୀ'ରେ ମାନସିଂହ ବୌଦ୍ଧଧର୍ମର ଶ୍ରେଷ୍ଠ ପୂଜାରଣୀ ରୂପେ କଳିଙ୍ଗର ରାଜଜେମା ହେମମାଳାଙ୍କୁ ଯେପରି 'ଦୂତୀ' ଭୂମିକାରେ ବର୍ଣ୍ଣନା କରିଛନ୍ତି ତାହା ଖୁବ୍ ଉଚ୍ଚକୋଟୀର ହୋଇପାରିଛି । ବୈଦିକ ଧର୍ମାବଲମ୍ବୀମାନଙ୍କ କବଳରୁ ବୁଦ୍ଧଦନ୍ତକୁ ରାଜଜେମା ହେମମାଳା ରକ୍ଷା କରିଛି । କଳିଙ୍ଗର ବୈଦିକ ଧର୍ମାବଲମ୍ବୀ ଓ ବୌଦ୍ଧ ଶ୍ରମଣମାନଙ୍କ ନିଜ ନିଜ ଧର୍ମର ଶ୍ରେଷ୍ଠତ୍ୱକୁ ନେଇ ଯେଉଁ ସଂଘର୍ଷ ଦେଖା ଦେଇଥିଲା; ତା'ରି ପ୍ରେକ୍ଷାପଟ୍ଟରେ ବୁଦ୍ଧଦନ୍ତ ରହିଅଛି । ଏଇ ବୁଦ୍ଧଦନ୍ତକୁ ଧ୍ୱଂସ କରିପାରିଲେ ଯଥାର୍ଥରେ ହିଁ ବୌଦ୍ଧଧର୍ମର ମୂଳୋତ୍ପାଟନ ହେବ ଭାବି ବ୍ରାହ୍ମଣମାନେ ସେଦିନ କଳିଙ୍ଗର ରାଜଧାନୀ ଦନ୍ତପୁରରେ ଯେଉଁ ସଂଗ୍ରାମ ଚଳାଇଥିଲେ ସେଇ ଘଟଣାରେ ରାଜଜେମା ହେମମାଳା ଅତି ଚତୁରତାର ସହିତ ବୁଦ୍ଧଦନ୍ତକୁ ନିଜ କେଶଗୁଚ୍ଛରେ ଲୁଚାଇ କୌଣସି ବାଧାବିଘ୍ନ ନ ମାନି ସିଂହଳକୁ ପଳାୟନ କରି ସିଂହଳର ରାଜା ରାଣୀଙ୍କୁ ବୁଦ୍ଧଦନ୍ତର ସୁରକ୍ଷା ଓ ବୌଦ୍ଧଧର୍ମକୁ ଅବ୍ୟାହତ ରଖିବା ପାଇଁ ବୁଦ୍ଧଦନ୍ତଟିକୁ ତାଙ୍କୁ ପ୍ରଦାନ କରିଥିଲେ । ଏହି ବୁଦ୍ଧଦନ୍ତ ପାଇଁ ରାଜଜେମା ଗଭୀର ରଜନୀରେ ଅଭିସାରିକା ବେଶରେ ଦନ୍ତପୁରରୁ ବୁଦ୍ଧଦନ୍ତକୁ ଧରି ଦୁର୍ଗମ ପଥ ଅତିକ୍ରମ କରି ସିଂହଳରେ ପ୍ରବେଶ କରିଛନ୍ତି ଓ ସିଂହଳର ରାଜାରାଣୀଙ୍କୁ ପ୍ରଦାନ କରିବା ପରେ ବୌଦ୍ଧଧର୍ମର ପ୍ଲାବନରେ ଆମୋଦିତା ହୋଇ ନୃତ୍ୟ କରୁକରୁ ମହାନିର୍ବାଣ ଲାଭ କରିଛନ୍ତି । ରାଜଜେମା ଏଠାରେ ଏକ ସଫଳ ଦୂତୀର ଗୁରୁଦାୟିତ୍ୱ ତୁଲାଇବା ଭଳି ମନେହୁଏ । ଦୂତୀ ଯେପରି କୌଣସି କାର୍ଯ୍ୟ ସାଧନ କରିବା ପାଇଁ ବାଧାବନ୍ଧନକୁ ଭ୍ରୂକ୍ଷେପ କରେ ନାହିଁ ; ସେହିପରି ରାଜଜେମା ହେମମାଳା ବୁଦ୍ଧଦନ୍ତ ଓ ବୌଦ୍ଧଧର୍ମର ସୁରକ୍ଷା ପାଇଁ ଦୁଃସାହସିକ ପଦକ୍ଷେପ ଗ୍ରହଣ କରିଛନ୍ତି । ଏଥିରୁ ବୌଦ୍ଧଧର୍ମ ପ୍ରତି ତାଙ୍କର ଆସକ୍ତ ଅନୁମେୟ । ରାଜକନ୍ୟାଙ୍କ ମହାନିର୍ବାଣରେ ବୌଦ୍ଧଧର୍ମର ଅମୀୟ ବାଣୀ ଧ୍ୱନିତ ହୋଇ ଉଠିଛି ।

'ବୁଦ୍ଧଦୂତୀ'ରେ ସଂଳାପ ନାହିଁ । ଏହା ନୃତ୍ୟନାଟ୍ୟ ହୋଇଥିବାରୁ ଏଥିରେ ଚରିତ୍ର କେବଳ ମୂକ ଅଭିନୟ କରିଛି । କବି ମାନସିଂହଙ୍କ ଜୀବନକୁ ବୁଦ୍ଧ ଚରିତ, ବୁଦ୍ଧ ଜୀବନ, ବୁଦ୍ଧ ଆଦର୍ଶ ବହୁଭାବେ ପ୍ରଭାବିତ କରିଥିବା ନିଜେ ମାନସିଂହ ବହୁ ସ୍ଥାନରେ ପ୍ରକାଶ କରିଛନ୍ତି । 'ବୁଦ୍ଧଦୂତୀ' ଯେ ତାହାରି ରୂପାୟନ ; ଏଥିରେ ସନ୍ଦେହର ଅବକାଶ ନାହିଁ । ବୋଇତ, ସାଧବ, ସିଂହଳ ଇତ୍ୟାଦି ରୋମାଣ୍ଟିକ୍ ଚିନ୍ତାଧାରା ଓଡ଼ିଆ ପ୍ରାଣକୁ ଏବେ ବି ସ୍ପନ୍ଦିତ କରେ । 'ସାଧବ ଝିଅ'ର ପ୍ରଣେତାଙ୍କ ପାଇଁ ଏସବୁର ରୂପାନ୍ତର 'ବୁଦ୍ଧଦୂତୀ' କହିଲେ ଅତ୍ୟୁକ୍ତି ହେବ ନାହିଁ ।

ନାଟିକା 'ଦୁର୍ଭିକ୍ଷ'ର ବିଷୟବସ୍ତୁ ଓଡ଼ିଶାର ପରିଚିତ ନ'ଅଙ୍କ ଘଟଣା । ଅଭାବ, ଅନାଟନ, ହାଅନ୍ନର ଚିତ୍କାର ଓଡ଼ିଶା ପାଇଁ ଅଧିକ ଐତିହାସିକ ହୋଇ

ପଡ଼ିଛୁ । ସନାତନ କାହାଣୀର ଆଦର୍ଶ, ନଅଙ୍କର ବର୍ଣ୍ଣନା ଓ ଚରଣ ଲେଖକଙ୍କୁ ଆକାନ୍ତ କରିଥିବା ସମୟରେ ଲେଖକଙ୍କ ଆଖିରେ ପଡ଼େ ଡକ୍ଟର ଆଇଜାକ୍- ସାନ୍ତାଙ୍କ ସମ୍ପାଦିତ 'ପ୍ରଭାତ'ରେ ଅନନ୍ତ ଦାସଙ୍କ ଆତ୍ମଜୀବନୀ । ସେଥିରେ ବର୍ଣ୍ଣିତ କ୍ଷୁଧାର ଚିତ୍ର ଲେଖକଙ୍କୁ ପ୍ରଭାବିତ କରିଥିବା ଲେଖକଙ୍କ ଉକ୍ତିରୁ ଜଣାଯାଏ । ଏ ସମସ୍ତଙ୍କୁ ଏକତ୍ରିତ କରି ଦୁର୍ଭିକ୍ଷ ରୂପାୟିତ । ସମଗ୍ର ନାଟକଟିରେ କ୍ଷୁଧା, କଳହ, ଯନ୍ତ୍ରଣା ଓ ଅଭାବବୋଧର ଚିତ୍ର ଚିତ୍ରିତ ହେବା ସଙ୍ଗେ ସଙ୍ଗେ ସନାତନଙ୍କୁ ପାଠିକା କରି ଏକ ମହତ୍ତର ଚିନ୍ତା ରୂପାୟିତ ହୋଇଛି ଯାହା ମାନବିକ ଭାବବୋଧରେ କଂପନ ସୃଷ୍ଟିକରେ । ମାନସିଂହ ନିଜେ ସ୍ୱୀକାର କରିଛନ୍ତି "ଓଡ଼ିଶାର ସୁବିଦିତ ନଅଙ୍କ ଦୁର୍ଭିକ୍ଷର ପଶ୍ଚାତପଟ ଉପରେ ଗୋଟିଏ ମହାପ୍ରାଣର ମହିମାମୟ, ପବିତ୍ର, ମଧୁର ବିକାଶ ହିଁ ଏଇ ଶ୍ରେଷ୍ଠ କାବ୍ୟ ନାଟିକାଟିର ପ୍ରାଣକଥା । × × × ବିଭୀଷିକାମୟ ନଅଙ୍କ ଦୁର୍ଭିକ୍ଷର ବୀଭତ୍ସ ରଙ୍ଗଭୂମିରେ କେନ୍ଦ୍ରାପଡ଼ାର ବାଳକ ସନାତନର ଶ୍ରେଷ୍ଠ ଅଭିନୟଟି ମାନବିକତାରେ ଯେପରି କାରୁଣ୍ୟମୟ, ନରତ୍ୱର ମହିମାରେ ସେହିପରି ଅପୂର୍ବ । ସନାତନର ମହିମାମୟ କାହାଣୀଟି ମୁଁ ପ୍ରଥମେ ଏକ ବଙ୍ଗଳା ପାଠ୍ୟପୁସ୍ତକରେ ପଢ଼ିଥିଲି । ସେତେବେଳେ ମୁଁ ଖୋର୍ଦ୍ଧା ହାଇସ୍କୁଲର ଏକ ତଳ ଶ୍ରେଣୀର ଛାତ୍ର × × ସନାତନ ସେଇଦିନୁ ମୋର ମନୋଭବନର ଏକ ପୂଜାପୂତ କୋଣରେ ପ୍ରତିଷ୍ଠିତ । ବିଭୀଷିକାମୟ, ବୀଭତ୍ସ, ନିଷ୍ଠୁର ପାଶ୍ଚାତ୍ପଟ ଉପରେ ସନାତନର ବରେଣ୍ୟ ଆତ୍ମତ୍ୟାଗର ବର୍ତ୍ତିକା କ୍ରମେ ମୋ ମାନସଲୋକରେ ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର ହୋଇ ଉଠୁଥାଏ । ଏଇ ସମୟରେ କବିବନ୍ଧୁ ପ୍ରାଣକୃଷ୍ଣ ସାମଲ ମୋତେ ଦିନେ ଏଇ ପ୍ରସଙ୍ଗରେ ଜଣାଇଲେ ଯେ, ନଅଙ୍କ ଦୁର୍ଭିକ୍ଷ ଭୋଗିଥିବା ଜଣେ ଓଡ଼ିଆ ; ଖ୍ରୀଷ୍ଟାନ ହୋଇ ତାଙ୍କର ଆତ୍ମଚରିତ ଓଡ଼ିଆ ପଦ୍ୟରେ ଲେଖି ଯାଇଛନ୍ତି — ସେ ତାହା ପଢ଼ିଛନ୍ତି । × × × ଡକ୍ଟର ଆଇଜାକ୍ ସାନ୍ତାଙ୍କ ସମ୍ପାଦିତ 'ପ୍ରଭାତ' ପତ୍ରିକାର ଏକ ସଂଖ୍ୟାରେ (୧୯୩୭ ସାଲ, ଅଗଷ୍ଟ) ଏଇ ଅନନ୍ତ ଦାସଙ୍କ ଆତ୍ମଜୀବନୀଟି ପ୍ରକାଶିତ ହୋଇଛି । × × ଅନନ୍ତ ଦାସଙ୍କ ଆତ୍ମଜୀବନୀ ନଅଙ୍କ ଦୁର୍ଭିକ୍ଷର ଏକ ବଳିଷ୍ଠ ପ୍ରାମାଣିକ ଦଲିଲ ହେଲେ ହେଁ ଓଡ଼ିଶାର ଶିକ୍ଷିତ ମହଲରେ ତାହା ଏକପ୍ରକାର ଅଜ୍ଞାତ କହିଲେ ଚଳେ । × × ଅନନ୍ତ ଦାସଙ୍କ ଆତ୍ମଜୀବନୀ ପ୍ରମାଣ କଲା ଯେ ସେଥିରେ ଅତିରଞ୍ଜନ ନାହିଁ ବରଂ ଦୁର୍ବଳ ଅନନ୍ତ କ୍ଷୁଧାର ତାଡନାରେ ଯେପରି କର୍ମ ସବୁ କରି ଯାଇଛନ୍ତି ଏବଂ ଯାହାସବୁ ମୁକ୍ତ ପ୍ରାଣରେ ସ୍ୱୀକାର କରିବା ଭିତରେ ମୁ ତାଙ୍କ ବ୍ୟକ୍ତିତ୍ୱର ସାରଲ୍ୟ ଓ ମାନବିକତାମୟ ଖ୍ରୀଷ୍ଟଧର୍ମର ପୁଣ୍ୟ ପ୍ରଭାବ ଦେଖି ପାରୁଛି । × × ଆମେ ସମସ୍ତେ ଅନନ୍ତ ଦାସ । କିନ୍ତୁ ଆମ ଭିତରେ ଏକମାତ୍ର ମନୁଷ୍ୟ ହେଉଛି ସନାତନ । ଯାହାର ଆତ୍ମା ସ୍ନେହ ଲାଗି,

ପ୍ରେମ ଲାଗି, କର୍ତ୍ତବ୍ୟ ଲାଗି ଏକ ସର୍ବଗ୍ରାସୀ ପ୍ରବୃତ୍ତିର ସହସ୍ର ବିଷଦନ୍ତର ଅଜସ୍ର ଦଂଶନକୁ ମଧ୍ୟ ଗ୍ରାହ୍ୟ କରି ନ ଥିଲା, ସେ ଜୟୀ, ସେ ଜ୍ଞାନୀ, ସେ ମୁକ୍ତ । ସନାତନର ସେହି ଉଜ୍ଜ୍ୱଳ, ଉନ୍ନତ ନରତ୍ୱ ପରିସ୍ଫୁଟ କରିବା ପାଇଁ ହିଁ ଏ ପୁସ୍ତକଟି ରଚିତ । × × ପୁସ୍ତକ ଭିତରେ ସନାତନ କେବଳ ଜଣାଲୋକ । ଆଉସବୁ କାଳ୍ପନିକ । ସନାତନ ମଧ୍ୟ ଏକ ପ୍ରତୀକ—ମାନବର ଦୁର୍ବଳତାକୁ ପରାଜୟ କରିବାର, ତ୍ୟାଗର ପ୍ରେମର କର୍ତ୍ତବ୍ୟ ଜ୍ଞାନର ଏକ ପ୍ରତୀକ ରୂପେ ତାକୁ ଦେଖିବାକୁ ପାଠକ-ମାନଙ୍କୁ ଅନୁରୋଧ ।" (୧୦)

'ବୁଦ୍ଧ' ନାଟକଟିର ପ୍ରାକ୍ କଥନ ବର୍ଣ୍ଣାର୍ଡ୍ ଶ'ଙ୍କ ମୁଖବନ୍ଧ ପରି ବେଶ୍ ବିସ୍ତୃତ ହୋଇଛି । ଅନ୍ୟାନ୍ୟ ନାଟକରେ ନାଟ୍ୟକାର ଯାହା କହିପାରି ନାହାନ୍ତି ; ବୁଦ୍ଧ ନାଟକ ଆରମ୍ଭରେ ତାହା କହିବାର ସୁଯୋଗ ନେଇଛନ୍ତି । 'ମୁଁ କାହିଁକି ଏ ନାଟକ ଲେଖିଲି' ପ୍ରସଙ୍ଗରେ ସେ କହିଛନ୍ତି — 'ବୁଦ୍ଧ ଓ ତାଙ୍କର ବାଣୀ ମୋ ଚିତ୍ତକୁ ଅଧିକ ଅଭିଭୂତ କରିବାରୁ ତାଙ୍କର ଜୀବନ ଓ ତତ୍ତ୍ୱ ଅଧିକ ଆଲୋଚନା କଲି । ସାର୍ ଏଡ୍ୱିନ୍ ଆର୍ଣ୍ଣୋ ଲଡୁଙ୍କ 'ଲାଇଟ୍ ଅଫ୍ ଏସିଆ' ନାମକ ପ୍ରସିଦ୍ଧ ଇଂରାଜୀ କାବ୍ୟ ବୁଦ୍ଧବାଣୀ ପଶ୍ଚିମରେ ପ୍ରଚାରିତ ହେବାରେ ବହୁ ସାହାଯ୍ୟ କରିଛି । ଜର୍ମାନ ଓ ଇଂରାଜୀ ପଣ୍ଡିତମାନଙ୍କ ଲିଖିତ ବୁଦ୍ଧଙ୍କ ଜୀବନୀ ଓ ବୌଦ୍ଧ ଧର୍ମର ଏତେ ସୁନ୍ଦର ବିସ୍ତୃତ ଆଲୋଚନା ଅଛି ଯେ ସେ ସବୁ ପଢ଼ି ପଢ଼ି କ୍ଳାନ୍ତ ହିଁ ଆସିବ ନାହିଁ । × × × ସବୁ ପଢ଼ି ପଢ଼ି ମୋର ଇଚ୍ଛା ହେଲା ଯେ ମୁଁ ଏଇ ବୁଦ୍ଧଙ୍କର ଗୋଟିଏ ବିସ୍ତୃତ ଜୀବନୀ ଲେଖେଁ । ତା ପରେ ଦେଖିଲି ଯେ ଅନ୍ୟଭାଷାରେ ବୁଦ୍ଧଙ୍କର ଜୀବନୀ ଗଦ୍ୟରେ ଲେଖାହୋଇଛି । କାବ୍ୟ ବି ହୋଇଛି । କିନ୍ତୁ ନାଟକୀକୃତ ହେବାର ଜଣାଯାଉନି । ଓଡ଼ିଶାରେ ତାହେଲେ ମୁଁ ବୁଦ୍ଧ ଜୀବନୀକୁ ନାଟକ ଆକାରରେ ହିଁ ପ୍ରକାଶ କରେଁ ।" (୧୧)

ଘନ ଅରଣ୍ୟାନୀ ଭିତରେ ବରାହର ମୃତ୍ୟୁକାଳୀନ ଚିତ୍କାର ଶୁଣି କରୁଣାମୟ ସିଦ୍ଧାର୍ଥ ବିମର୍ଷ ହୋଇ ପଡ଼ିଛନ୍ତି । ସିଦ୍ଧାର୍ଥଙ୍କ ମନୋଭାବ ଲକ୍ଷ୍ୟକରି ଆନନ୍ଦ ଶୀକାର ନ କରିବାକୁ ଦେବଦତ୍ତକୁ ଅନୁରୋଧ କରିଛନ୍ତି । ରାଜପ୍ରାସାଦର ସମସ୍ତ ବୈଭବ ଓ ଭୋଗ ମଧ୍ୟରେ ସିଦ୍ଧାର୍ଥ ଚିନ୍ତାବିଷ୍ଟ । ନଗ୍ରରେ ଅଭିଭୂତ ସିଦ୍ଧାର୍ଥ ଜଣେ ସନ୍ନ୍ୟାସୀଙ୍କୁ ଦେଖି ଜୀବନର ଗତିପଥ ସ୍ଥିର କରି ନେଇଛନ୍ତି । ନବଜାତ ଶିଶୁ ଏବଂ ପ୍ରାଣପ୍ରିୟା ପତ୍ନୀକୁ ତ୍ୟାଗ କରି ରାଜକୁମାର ଅନ୍ତର୍ଦ୍ଧାନ

---

୧୦ । 'ଦୁର୍ଭିକ୍ଷ'ର ମୁଖବନ୍ଧ,—ମାନସିଂହ ଗ୍ରନ୍ଥାବଳୀ ପୃ-୭୭୪-୭୭୫

୧୧ । 'ବୁଦ୍ଧ' ନାଟକର ମୁଖବନ୍ଧ—ମାନସିଂହ ଗ୍ରନ୍ଥାବଳୀ—ଦ୍ୱିତୀୟ ଭାଗ, ପୃ-୬୮୧

ହୋଇ ଯାଇଛନ୍ତି । ଜ୍ଞାନପ୍ରାପ୍ତ ସିଦ୍ଧାର୍ଥଙ୍କର ତଥା ସମଗ୍ର ପୃଥିବୀର ପ୍ରଥମ ବୌଦ୍ଧ ଶିଷ୍ୟ ହୁଅନ୍ତି କଳିଙ୍ଗର ବ୍ୟବସାୟୀ । ପରେପରେ ଅନେକ ବୁଦ୍ଧ ବିଦ୍ୱେଷୀ, ଆଗ୍ରହୀ ବ୍ରାହ୍ମଣ, କ୍ଷତ୍ରିୟ, ଶାସକ ସାଧନାର ସତ୍ୟତା ଉପଲବ୍‌ଧି କରି ବୌଦ୍ଧଧର୍ମ ଓ ସଙ୍ଘର ଶରଣ ନିଅନ୍ତି । ଆମ୍ରପାଳୀ ମନରେ ଦେଖାଦିଏ ପରିବର୍ତ୍ତନ । ଚତୁର୍ଦ୍ଦିଗ ଝଂକୃତ ହୋଇଉଠେ "ବୁଦ୍ଧଂ ଶରଣଂ ଗଚ୍ଛାମି" ସ୍ତୋତ୍ରରେ । କପିଳବାସ୍ତୁ ଫେରି ବୁଦ୍ଧ ସ୍ୱୀୟ ରୂପରେ ପରିଚିତ ହୁଅନ୍ତି । ଗୋପା ହିଁ ପ୍ରଥମ ନାରୀ ଯେ ନବଜୀବନ ଦୀକ୍ଷା, ସ୍ୱାମୀ ନୁହେଁ ସନ୍ନ୍ୟାସୀ ବୁଦ୍ଧଙ୍କଠାରୁ ନିଅନ୍ତି ।

ନାଟକଟିରେ ସନ୍ନିହିତ ଦ୍ୱନ୍ଦ୍ୱ ଦର୍ଶକ ଓ ପାଠକମାନଙ୍କୁ ଯେଭଳି ପ୍ରଭାବିତ କରେ; ସେଇଭଳି ବହୁ ନାଟକୀୟ ମୁହୂର୍ତ୍ତ ସୃଷ୍ଟି କରିବାରେ ସାହାଯ୍ୟ କରେ ଏ ସମସ୍ତ ସଫଳତା ଭିତରେ ବହୁ ଚରିତ୍ରର ସମାବେଶ ନାଟକଟି ପାଇଁ ଏକ ସମସ୍ୟା । ପ୍ରାୟ ବାରଟି ନାରୀ ଚରିତ୍ର, କୋଡ଼ିଏଟି ପୁରୁଷ ଚରିତ୍ର ସହିତ କନ୍ୟାଗଣ, ନର୍ତ୍ତକୀ, ଭିକ୍ଷୁ, ଶବର ପ୍ରଭୃତିଙ୍କର ସମାବେଶ ହେତୁ ନାଟକଟିକୁ ମଞ୍ଚସ୍ଥ କରିବାରେ ଅସୁବିଧା ହୋଇଥାଏ । ସବୁପ୍ରକାର ତ୍ରୁଟିସତ୍ତ୍ୱେ ଏହା ଏକ ସଫଳ ନାଟକ; ଏଥିରେ ସନ୍ଦେହ ନାହିଁ ।

## ଶିଳ୍ପ ଓ ଶିଳ୍ପୀ—

ମୁଖ୍ୟତଃ ମାନସିଂହଙ୍କର ନାଟକ ସଂଖ୍ୟା ତିନୋଟି । ସେମାନଙ୍କ ମଧ୍ୟରୁ 'ନଷ୍ଟନୀଡ଼', 'ବାରବାଟୀ' ଓ 'ବୁଦ୍ଧ'—ଯଥାକ୍ରମେ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ସ୍ଥାନ ଅଧିକାର କରିବ । ଅନ୍ୟଗୁଡ଼ିକ ମଧ୍ୟରୁ 'ଶାସନଚକ୍ର' ତାଙ୍କର ଶ୍ରେଷ୍ଠ ଏକାଙ୍କିକା । ଏହା ବ୍ୟତୀତ 'ରାଜକବି ଉପେନ୍ଦ୍ର'ରୁ କେତେକ ଅନାବଶ୍ୟକ ଗୀତ ବାଦଦେଲେ ଏହା ଏକାଙ୍କିକା ଶ୍ରେଣୀର ହେବ । ମାନସିଂହଙ୍କର ଗୀତନାଟ୍ୟଗୁଡ଼ିକୁ ଆଲୋଚନା କଲେ ଜଣାଯାଏ, ସେଥିରେ ଥିବା ସମସ୍ତ ଚରିତ୍ରଗୁଡ଼ିକ ସରଳ ଓ ନିଷ୍ପାପ । କିନ୍ତୁ 'ରାଜକବି ଉପେନ୍ଦ୍ର'ରେ ଉପେନ୍ଦ୍ର ଚରିତ୍ର ଅତି ଦୁର୍ବଳ । ସେ ଗ୍ରାମ୍ୟ ବାଳିକାମାନଙ୍କ ସହିତ ଉତ୍ସବରେ ଆତ୍ମବିଭୋର ହେବା ଏବଂ ପ୍ରକୃତିକୁ ଉପଭୋଗ କରିବା ବ୍ୟତୀତ ଅନ୍ୟକିଛି ଜାଣନ୍ତି ନାହିଁ । ଦୁର୍ଭିକ୍ଷର ସନାତନ ଚରିତ୍ର ସେହିପରି ସ୍ନେହ ଓ ପ୍ରେମର ମହତ୍ତ୍ୱ ପ୍ରକାଶ ପାଇଁ ଅଭିପ୍ରେତ । ପୂଜାରିଣୀର ସାକ୍ଷୀଗୋପାଳ ଦେବତା ହେଲେହେଁ ଜଣେ ପ୍ରେମିକ ପୁରୁଷ, ଲକ୍ଷ୍ମୀ ମାନବୀ ହୋଇ ଦେବତାଙ୍କର ଉପଭୋଗ୍ୟା । 'ସୁସ୍ମିତା'ର ନାୟିକା କିଶୋରୀ ନିଜେ କିଛି କରିନି । ପ୍ରକୃତି ସହିତ ତାଳଦେଇ ସେ ସେପରି ଗତି କରିଯାଇଛି । 'ପୁଷ୍ପାଭିନୟ'ର ଚରିତ୍ରଗୁଡ଼ିକ ପ୍ରକୃତିର ବିଭବ; ଏମାନେ ନିଜେ କିଛି କରିନାହାନ୍ତି । 'ବୁଦ୍ଧଦୂତୀ'ରେ ରାଜଜେମା ହେମମାଳା

ଦୁଃସାହସିକ ପଦକ୍ଷେପ ନେଇ କଳିଙ୍ଗରୁ ସିଂହଳ ଯାତ୍ରା କରିଛନ୍ତି । ନାଟକରେ ମୁଖ୍ୟଚରିତ୍ରର ଚାରିତ୍ରିକ ମହତ୍ତ୍ୱ ଓ ମୂଲ୍ୟାୟନ ପାଇଁ ଗୌଣଚରିତ୍ରର ଆବଶ୍ୟକ ହୋଇଥାଏ । ମାନସିଂହଙ୍କ ନାଟକରେ ମୁଖ୍ୟ ଚରିତ୍ରଗୁଡ଼ିକଠାରୁ ଗୌଣଚରିତ୍ର-ମାନଙ୍କର ମହତ୍ତ୍ୱହିଁ ଅଧିକ ଉପଭୋଗ୍ୟ । 'ଦୁର୍ଭିକ୍ଷ' ନାଟିକାରେ ସନାତନ ଚରିତ୍ରକୁ ଜୀବନାନନ୍ଦ, ଶିବାନନ୍ଦ, କାଶୀ, କାଙ୍ଗାଳ ଦଳ ଓ ପାତ୍ରୀଦ୍ୱୟ ଅଧିକ ପ୍ରଭାବଶାଳୀ କରାଇ ପାରିଛନ୍ତି । ନାଟିକାଟିକୁ ହୃଦୟସ୍ପର୍ଶୀ କରିବା ପାଇଁ ସନାତନର ପିତାମାତା, କମଳୀ ଓ ପୀତେଇ ନାମୀର ଭୂମିକା କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ । 'ରାଜକବି ଉପେନ୍ଦ୍ର'ରେ ବାଳକ ବାଳିକାମାନଙ୍କର ଉପସ୍ଥିତିହିଁ ନାଟକଟିକୁ ଅଧିକ ରସୋତ୍ତୀର୍ଣ୍ଣ କରିପାରିଛି 'ପୂଜାରିଣୀ'ରେ ଦେବତା ଓ ଲକ୍ଷ୍ମୀ ବ୍ୟତୀତ ବେଲେଶ୍ୱର ମହାପାତ୍ର, ମହାପାତ୍ରୀ, ପୂଜାରୀ, ପୂଜକପତ୍ନୀ, ସୁନାରୀ, ସୁନାରିଣୀ, ଲକ୍ଷ୍ମୀର ସାଙ୍ଗ ଓ ଦେବଦାସୀ ଚରିତ୍ର ରହିଛି । ବୁଦ୍ଧଦୂତରେ ରାଜଜେମା ହେମମାଳା ଚରିତ୍ରକୁ କଳିଙ୍ଗର ବ୍ରାହ୍ମଣ, ବୌଦ୍ଧ ଶ୍ରମଣ ଏବଂ ସିଂହଳର ରାଜରାଣୀ ଚରିତ୍ରଦ୍ୱୟ ମହନୀୟ କରି ତୋଳିପାରିଛି ।

କେବଳ ବିଷୟବସ୍ତୁ ଓ ଚରିତ୍ର ବିନ୍ୟାସରେ ନାଟକ କି ନାଟିକାର ସୃଷ୍ଟି ସମ୍ଭବ ନୁହେଁ । ବିଷୟବସ୍ତୁ ଓ ଚରିତ୍ରଗୁଡ଼ିକ ନାଟକର ପ୍ରଧାନ ଉପାଦାନ ସତ, ମାତ୍ର ବିଷୟବସ୍ତୁକୁ ଗତିଶୀଳ ଓ ଚରିତ୍ରକୁ ଜୀବନ୍ୟାସ ଦେବାକୁ ହେଲେ ପାତ୍ରମୁଖୀ ଭାଷାର ଆବଶ୍ୟକତା ବହୁତ ବେଶୀ । ମାନସିଂହ ମୁଖ୍ୟତଃ ଜଣେ କବି । ସେଥିପାଇଁ ନାଟକଗୁଡ଼ିକର ଭାଷା କବିତ୍ୱମୟ । ସଂଳାପ ଦୃଷ୍ଟିରୁ 'ରାଜକବି ଉପେନ୍ଦ୍ର' ଏକ ଅସଫଳ ସୃଷ୍ଟି । ଏହା ନାଟ୍ୟକାରଙ୍କ ପ୍ରଥମ କୃତି । 'ପୁଷ୍ପିତା'ର ପରିବେଶ ସମ୍ପୂର୍ଣ୍ଣ ଗ୍ରାମୀଣ । ଗାଁର ଅନୂଢ଼ା ବାଳିକାମାନଙ୍କର କଥୋପକଥନ ଅଧିକ ସ୍ୱାଭାବିକ ହୋଇପାରିଛି । 'ପୂଜାରିଣୀ'ର ସଂଳାପ ଦୀର୍ଘ ଏବଂ କବିତ୍ୱମୟ ହୋଇଥିଲେ ମଧ୍ୟ କାବ୍ୟ ନାଟିକାର ମହତ୍ତ୍ୱ କେଉଁଠି କ୍ଷୁଣ୍ଣ ହୋଇନାହିଁ । ବଳିଷ୍ଠ ଶବ୍ଦ ସଂଯୋଜନା ଦ୍ୱାରା ଏହା ହୃଦୟସ୍ପର୍ଶୀ ହୋଇପାରିଛି ।

ଦ୍ୱନ୍ଦ୍ୱ ହିଁ ନାଟକର ଏକ ପ୍ରଧାନ ଉପାଦାନ । ଏହାକୁ ବାଦ୍‌ଦେଲେ ନାଟକ ରସହୀନ ହୋଇପଡ଼େ । ଅନ୍ତର୍ଦ୍ୱନ୍ଦ୍ୱ ଏବଂ ବହିର୍ଦ୍ୱନ୍ଦ୍ୱ ଭିତର ଦେଇ ନାଟକ ଗତିକରେ । ପ୍ରବୃତ୍ତି ସହିତ ନିବୃତ୍ତିର, ଆଦର୍ଶ ସହିତ ଅନାଦର୍ଶର, ବାସ୍ତବ ସହିତ ଆଦର୍ଶବୋଧ ଓ ନୈତିକତାର, ଚେତନ ସହିତ ଅବଚେତନର ସୃଷ୍ଟି ହୁଏ ଦ୍ୱନ୍ଦ୍ୱ । ମାନସିଂହଙ୍କର 'ରାଜକବି ଉପେନ୍ଦ୍ର'ରେ ରାଜସିଂହାସନକୁ କେନ୍ଦ୍ରକରି ବ୍ୟକ୍ତି ମଧ୍ୟରେ ଲାଗି ରହିଛି ଦ୍ୱନ୍ଦ୍ୱ । କିନ୍ତୁ ଉପେନ୍ଦ୍ରଙ୍କ ମନରେ ରାଜଶକ୍ତି ଓ ବାଣୀ ଆରାଧନା ନେଇ ସୃଷ୍ଟି ହୋଇଛି ଦ୍ୱନ୍ଦ୍ୱ । କିନ୍ତୁ 'ପୁଷ୍ପିତା'ରେ ଅନ୍ତର୍ଦ୍ୱନ୍ଦ୍ୱ

ଉତ୍କର୍ଷତା ଲାଭ କରିଛି । 'ପୂଜାରିଣୀ'ରେ ହୃଦୟ ହୃଦୟ ମଧ୍ୟରେ ଦ୍ୱନ୍ଦ୍ୱ ଦେଖା-ଦେଇଛି । 'ଦୁର୍ଭିକ୍ଷ'ରେ ସ୍ନେହ ଓ ସ୍ୱାର୍ଥ ମଧ୍ୟରେ ଦେଖାଦେଇଛି ଦ୍ୱନ୍ଦ୍ୱ । ବୁଦ୍ଧଦୂତରେ ବ୍ରାହ୍ମଧର୍ମ ଓ ବୌଦ୍ଧଧର୍ମ ମଧ୍ୟରେ ଯେଉଁ ସଙ୍ଘର୍ଷ ସୃଷ୍ଟି ହୋଇଛି ସେଥିରୁ ରାଜବାଳା ହେମମାଳାର ଅନ୍ତର୍ଦ୍ୱନ୍ଦ୍ୱ ଦେଖାଦେଇଛି ।

ନାଟକର ଅନ୍ୟତମ ଉପାଦାନ ହେଉଛି ନାଟ୍ୟୋତ୍କଣ୍ଠା । ପ୍ରେକ୍ଷାଳୟରେ କମ୍ବା ମୁକ୍ତ ରଙ୍ଗମଞ୍ଚରେ ଦର୍ଶକ ବସିରହି ଏକନିଷ୍ଠ ଚିତ୍ତରେ ନାଟ୍ୟରସ ଆସ୍ୱାଦନ କରିଥାଏ । ଅଭିନୟ ପ୍ରତି ଦର୍ଶକର ମନକୁ ଏକନିଷ୍ଠ କରି ରଖିବାରେ ନାଟ୍ୟୋତ୍କଣ୍ଠା ସକ୍ଷମ ହୋଇଥାଏ । ଏହି ପରିପ୍ରେକ୍ଷିରେ ମାନସିଂହଙ୍କର ଗୀତିନାଟ୍ୟଗୁଡ଼ିକୁ ଆଲୋଚନା କରାଯାଇପାରେ । 'ପୂଜାରିଣୀ'ର ତୃତୀୟ ଦୃଶ୍ୟରେ ଦେବଦତ୍ତ ଓ ଲକ୍ଷ୍ମୀଙ୍କର କଥୋପକଥନରେ ଯେଉଁ ଉତ୍କଣ୍ଠା ସୃଷ୍ଟି ହୋଇଛି ତାର ପରିଣତି ସେହି ଦୃଶ୍ୟରେ ହିଁ ହୋଇଯାଇଛି । ପଞ୍ଚମ ଦୃଶ୍ୟରେ ଲକ୍ଷ୍ମୀକୁ ଜ୍ୱର ହେବା ଏବଂ ସୁନାର ରାଧାମୂର୍ତ୍ତି ଗଢ଼ାହେବା ବିଷୟରେ ଦର୍ଶକ ମନରେ ସାମାନ୍ୟ ଉତ୍କଣ୍ଠା ଉଦ୍ରେକ ହୋଇଛି । 'ରାଜକବି ଉପେନ୍ଦ୍ର'ରେ କୌଣସି ଉତ୍କଣ୍ଠା ନାହିଁ । ପୁଷ୍ପିତାରେ ମଧ୍ୟ ଅନୁରୂପ ପରିବେଶ ସୃଷ୍ଟି ହୋଇଛି । 'ପୁଷ୍ପାଭିନୟ' ଏବଂ 'ଦୁର୍ଭିକ୍ଷ'ରେ ନାଟ୍ୟୋତ୍କଣ୍ଠା ସୃଷ୍ଟି କରିବାରେ ମାନସିଂହ ପ୍ରତିଭାର କୌଣସି କଳାଗତ ଉତ୍କର୍ଷ ଲକ୍ଷ୍ୟ କରାଯାଏ ନାହିଁ ।

ମାନସିଂହଙ୍କ ଗୀତିନାଟ୍ୟଗୁଡ଼ିକ ସଙ୍ଗୀତ ବହୁଳ । ସାଙ୍ଗୀତିକତା ଭିତରେ ମାନସିଂହଙ୍କର କବି ପ୍ରତିଭା ଏବଂ ଦେଶାତ୍ମବୋଧର ପରାକାଷ୍ଠା ପ୍ରତିପାଦିତ ହୋଇଥାଏ । କବିସୁଲଭ ସ୍ୱାଭାବିକ ପ୍ରକୃତି ତାଙ୍କର ନାଟ୍ୟକୃତି-ଗୁଡ଼ିକରେ ପ୍ରତିଫଳିତ ହୋଇପାରିଛି । ମାନସିଂହଙ୍କର ସମସ୍ତ ନାଟ୍ୟକୃତିକୁ ଅନୁଶୀଳନ କଲେ ଜଣାଯାଏ ଯେ ଏଗୁଡ଼ିକ **ତିନୋଟି** ବିଷୟ ଉପସ୍ଥାପନା କରିବା ପାଇଁ ଅଭିପ୍ରେତ । ଯଥା—ଦେଶାତ୍ମବୋଧ (ନଷ୍ଟନୀଡ଼, ବାରବାଟୀ, ଶାସନଚକ୍ର, ବୁଦ୍ଧ ଓ ବୁଦ୍ଧଦୂତ), ପ୍ରକୃତି ପ୍ରତି ରୋମାଣ୍ଟିକ ଭାବୁକତା ଓ ପ୍ରେମଚେତନା (ରାଜକବି ଉପେନ୍ଦ୍ର, ପୂଜାରିଣୀ, ପୁଷ୍ପିତା) ଏବଂ ମାନବିକ ମମତ୍ୱବୋଧ (ଦୁର୍ଭିକ୍ଷ, ନଷ୍ଟନୀଡ଼) ।

**ମାନସିଂହଙ୍କ ଗୀତିନାଟ୍ୟରେ ରବୀନ୍ଦ୍ର ପ୍ରଭାବ—**

ରବୀନ୍ଦ୍ରନାଥଙ୍କ ବହୁ କବିତାର ପ୍ରଭାବ ମାନସିଂହଙ୍କ ଉପରେ ପଡ଼ିଥିବାର କଥା ପୂର୍ବେ ଆଲୋଚିତ ହୋଇଛି । କିନ୍ତୁ ମାନସିଂହଙ୍କ ଗୀତିନାଟ୍ୟ 'ପୁଷ୍ପିତା' ରବୀନ୍ଦ୍ରନାଥଙ୍କର 'ଚିତ୍ରାଙ୍ଗଦା' ଦ୍ୱାରା ବହୁଳାକାରେ ପ୍ରଭାବିତ । ଯଦିଓ

ମାନସିଂହ ରବୀନ୍ଦ୍ରନାଥଙ୍କ କାବ୍ୟିକ ଭାବଚେତନା ଦ୍ୱାରା ଉଦ୍‌ବୁଦ୍ଧ ହୋଇ 'ରାଜକବି ଉପେନ୍ଦ୍ର', 'ଉପେକ୍ଷିତା', ଏବଂ 'ପୁଷ୍ପିତା' ଆଦି ଗୀତିନାଟ୍ୟ ସୃଷ୍ଟି କରିଥିଲେ, ତଥାପି କବିଙ୍କର ମୌଳିକତା କ୍ଷୁଣ୍ଣ ହୋଇନାହିଁ । ରବୀନ୍ଦ୍ରନାଥଙ୍କ 'କଚ ଦେବଯାନୀ', 'ବିଦାୟ ଅଭିଶାପ', 'କର୍ଣ୍ଣକୁନ୍ତୀ ସମ୍ବାଦ', 'ଚିତ୍ରାଙ୍ଗଦା', 'ଗାନ୍ଧାରୀର ଆବେଦନ' ପ୍ରଭୃତି ଗୀତିନାଟ୍ୟଗୁଡ଼ିକ ଓଡ଼ିଆ ସାହିତ୍ୟର କବିମାନଙ୍କୁ ବିଭିନ୍ନଭାବରେ ପ୍ରଭାବିତ କରିଛି । 'କଚ ଦେବଯାନୀ' ଅବଲମ୍ବନରେ ବୈକୁଣ୍ଠ ପଟ୍ଟନାୟକଙ୍କର 'ଉପେକ୍ଷିତା', 'ଗାନ୍ଧାରୀର ଆବେଦନ' ଅନୁସରଣରେ କାଳନ୍ଦୀଚରଣ ପାଣିଗ୍ରାହୀଙ୍କର 'ଗାନ୍ଧାରୀର ଆଶୀର୍ବାଦ' କବିତାର ପରିକଳ୍ପନା ହୋଇଥିବା ଅନୁମେୟ । ମାନସିଂହ ତାଙ୍କର କବି ଓ କବିତା ପ୍ରବନ୍ଧରେ ରବୀନ୍ଦ୍ରନାଥଙ୍କ ସମ୍ପର୍କରେ କହିଛନ୍ତି—" × × ରବୀନ୍ଦ୍ରନାଥ ମୋର ଅତି ପ୍ରିୟ କବି, ଅତି ମାନ୍ୟ ଓ ପ୍ରଣମ୍ୟ କବି । ସେ ମୋର ପ୍ରିୟ, କାରଣ ସେ ମୋ ନିଜ ଅନ୍ତରର ଅବ୍ୟକ୍ତ ଆଶା, ତୃଷା, ବ୍ୟଥା, ବେଦନାକୁ ଏପରି ବ୍ୟକ୍ତ କରିଛନ୍ତି; ଯେପରିକି ମୁଁ ମନେକରିଥାଏ ରବୀନ୍ଦ୍ରନାଥ ମୋରି କଥାଗୁଡ଼ିକ ଯେପରି ଲେଖି ଯାଇଛନ୍ତି । ସେ ମୋର ପରମ ପ୍ରଣମ୍ୟ କବି । କାରଣ ଜୀବନର ବହୁ ଦୁର୍ଦ୍ଦିନରେ ତାଙ୍କରି କବିତା ପଂକ୍ତିହିଁ ଅନ୍ତରରେ ଜାଳି ଦେଇଛି ଦମ୍ଭ ଓ ସାହସର କ୍ଷୀଣ ବର୍ତ୍ତିକା—

ଯଦି ତୋର ଡାକ୍ ଶୁନେ କେଉ ନା ଆସେ
ଏକଲା ଚଲୋ, ଏକଲା ଚଲୋ, ଏକଲା ଚଲୋରେ ।"

(କବି ଓ କବିତା—ମାନସିଂହ ଗ୍ରନ୍ଥାବଳୀ—ପୃ. ୪୬୭)

ଏହି ଉକ୍ତିରୁ ସ୍ପଷ୍ଟ ହେଉଛି ମାନସିଂହ ରବୀନ୍ଦ୍ର ପ୍ରତିଭାର କେତେ ବେଶୀ ପୂଜାରୀ ଥିଲେ । ତେଣୁ ତାଙ୍କ ଉପରେ ରବୀନ୍ଦ୍ର ପ୍ରଭାବ ପଡ଼ିବା ବିଚିତ୍ର ନୁହେଁ । ରବୀନ୍ଦ୍ରନାଥଙ୍କ 'ବାଲ୍ମୀକି ପ୍ରତିଭା'ରେ ବାଲ୍ମୀକିଙ୍କ ପ୍ରତିଭାକୁ ବିରାଟ ଏବଂ ବ୍ୟାପକ ଭାବରେ ଗ୍ରହଣ କରାଯାଇଛି । କବି ସବୁଦିନେ ବାଗ୍‌ଦେବୀଙ୍କ ଆରାଧନା କରିଥାଏ । ଧନଧାନ୍ୟର ଆକର୍ଷଣ, ସାଂସାରିକ ବସ୍ତୁର ମୋହ, ତା' ପକ୍ଷରେ ଅତି ନଗଣ୍ୟ । ବାଲ୍ମୀକି ପ୍ରତିଭା ରବୀନ୍ଦ୍ରନାଥଙ୍କର ପ୍ରଥମ ଗୀତିନାଟ୍ୟ । ଏହି ଗୀତିନାଟ୍ୟର ବିଷୟବସ୍ତୁ ଏବଂ ଭାବ ପ୍ରକାଶ ଭିତରେ କୌଣସି ନୂତନତ୍ୱ ନାହିଁ । କିନ୍ତୁ ତା ଭିତରେ ଥିବା ଗୀତଗୁଡ଼ିକ ମଧ୍ୟରେ ରସମାଧୁର୍ଯ୍ୟର ସ୍ୱାକ୍ଷର ସ୍ପଷ୍ଟ । ଜୀବନରେ ସୁଖର ସହଚର ସମସ୍ତେ । ଜୀବନ ସମ୍ପର୍କରେ ଏକ ବୃହତ୍ତର ଓ ଚିରନ୍ତନ ସତ୍ୟର ଅନୁସନ୍ଧାନ କରି ସେ ଅନୁଭବ କରିଛନ୍ତି ଜ୍ଞାତି କୁଟୁମ୍ବଙ୍କ ପରିଧିରେ ସେ ଏକାନ୍ତ ଭାବେ ନିଃସଙ୍ଗ । ଲକ୍ଷ୍ମୀଙ୍କର

ସକଳ ପ୍ରଲୋଭନ ତାଙ୍କ ନିକଟରେ ନିଷ୍ପ୍ରିୟ ହୋଇଯାଇଛି । ଏହି ସମୟରେ ବ୍ୟାଧହତ କ୍ରୌଞ୍ଚକୁ ଦେଖି ବାଲ୍ମୀକିଙ୍କ କଣ୍ଠରୁ ବେଦନାର ଝଙ୍କାର ଶ୍ଳୋକଟିଏ ବାହାରି ଆସିଛି । "ମା ନିଷାଦ ପ୍ରତିଷ୍ଠାଂ ତ୍ୱମଗମଃ ଶାଶ୍ୱତୀସମାଃ/ଯତ୍ କ୍ରୌଞ୍ଚ ମିଥୁନାଦେକଂ ଅବଧିଃ କାମମୋହିତ" । ତାହାହିଁ ପୃଥିବୀର ଆଦିଶ୍ଳୋକ । କାରୁଣ୍ୟର କ୍ରନ୍ଦନରୁ ଜନ୍ମନେଇଛି ପୃଥିବୀର ଆଦି ସାହିତ୍ୟ । କବି କୀଟସ ମଧ୍ୟ ଅନୁରୂପ ମନ୍ତବ୍ୟ ଦେଇଛନ୍ତି—

"Our sweetest songs are those
That tell us saddest thoughts."

କବି ମାନସିଂହ ତାଙ୍କର ରାଜକବି ଉପେନ୍ଦ୍ରରେ ଅନୁରୂପ ଚରିତ୍ର ସୃଷ୍ଟି କରିଛନ୍ତି । ଗଣକବି ବୈଷ୍ଣବପାଣି ଓ ସମସାମୟିକ ବାଳକୃଷ୍ଣ ମହାନ୍ତି, କୃଷ୍ଣପ୍ରସାଦ ବସୁ, ଗୋପାଳ ଦାସ ପ୍ରଭୃତି ଯେଉଁ କେତେକ ଗୀତିନାଟ୍ୟକାର ଗୀତିନାଟ୍ୟମାନ ରଚନା କରୁଥିଲେ, ସେଥିରେ ସେମାନେ ରଚନାରେ ସାହିତ୍ୟିକ ମୂଲ୍ୟ ଅପେକ୍ଷା ଲୋକମାନଙ୍କୁ ଆକୃଷ୍ଟ କରିବା ପାଇଁ ଅଧିକ ଉପାଦାନ ଦେଉଥିଲେ । ଏହାର ପରିବର୍ତ୍ତିତ ଆଣି ମାନସିଂହ ପ୍ରଥମେ ଓଡ଼ିଆ ସାହିତ୍ୟରେ ଗୀତିନାଟ୍ୟଗୁଡ଼ିକୁ ସାହିତ୍ୟିକ ଓ କାବ୍ୟିକ ମୂଲ୍ୟ ଦେବାରେ ସମର୍ଥ ହୋଇପାରିଲେ । ଏହି ଧାରାକୁ ଅନୁସରଣ କରି ରାଧାମୋହନ ଗଡ଼ନାୟକ, ଜ୍ଞାନୀନ୍ଦ୍ର ବର୍ମା, କୁଞ୍ଜବିହାରୀ ଦାଶ, ପ୍ରାଣକୃଷ୍ଣ ସାମଲ ପ୍ରମୁଖ ସ୍ରଷ୍ଟାଗଣ ବହୁ କାବ୍ୟନାଟିକା ରଚନା କରିଛନ୍ତି । ତେଣୁ ଓଡ଼ିଆ ଗୀତିନାଟ୍ୟ କ୍ଷେତ୍ରରେ ମାନସିଂହଙ୍କ ସ୍ଥାନ ନିଶ୍ଚିତ ଭାବରେ ଊର୍ଦ୍ଧ୍ୱରେ, ଏହା ଅସ୍ୱୀକାର କରି ହେବ ନାହିଁ ।

ରବୀନ୍ଦ୍ରନାଥ ଯେପରି ବାଲ୍ମୀକିଙ୍କୁ ବିପୁଳ ଗୌରବ ଦାନ କରିଛନ୍ତି ମାନସିଂହ ମଧ୍ୟ ଭଞ୍ଜକବିଙ୍କୁ ସେହି ସମ୍ମାନର ଅଧିକାରୀ କରିଛନ୍ତି । ବାଲ୍ମୀକି ପ୍ରତିଭାରେ ଯେପରି ଲକ୍ଷ୍ମୀ ଏବଂ ସରସ୍ୱତୀଙ୍କର ଅବତାରଣା କରାଯାଇଛି; ରାଜକବି ଉପେନ୍ଦ୍ରରେ ମଧ୍ୟ ସେହିପରି ରାଜଲକ୍ଷ୍ମୀ ଏବଂ ସରସ୍ୱତୀ ସୃଷ୍ଟି କରାଯାଇଛି । କବି ପ୍ରକୃତିର ମୁଗ୍ଧ ପରିବେଶ ମଧ୍ୟରେ ମୋହମୁଗ୍ଧ ହୋଇପଡ଼ିଛନ୍ତି ଏବଂ ରାଜସିଂହାସନକୁ ଯିବାପାଇଁ ଅନିଚ୍ଛା ପ୍ରକାଶ କରିଛନ୍ତି । ଘୁମୁସରର ଅଧିଷ୍ଠାତ୍ରୀ ଦେବୀ ରାଜଲକ୍ଷ୍ମୀ ପ୍ରବେଶ କରି ଉପେନ୍ଦ୍ରଙ୍କୁ ସିଂହାସନର ପ୍ରଲୋଭନ ଦେଖାଇଛନ୍ତି । ତାଙ୍କୁ ଅନୁସରଣ କରିବାକୁ ପ୍ରବର୍ତ୍ତାଇଛନ୍ତି । "ତୁମକୁ ଶେଷଥର କହି ରଖୁଛି, ମୋର ଅନୁସରଣ କର, ନଚେତ୍ ତୁମେ ତୁମର ଦୁର୍ଭାଗ୍ୟକୁ ସାକ୍ଷୀକରି ଜୀବନ ହାହାକାର-ମୟ କର ।" (ରାଜକବି ଉପେନ୍ଦ୍ର ଗ୍ର. ପୃ-୪୧୯) ବାଲ୍ମୀକି ପ୍ରତିଭାରେ ମଧ୍ୟ ସେହିପରି ଲକ୍ଷ୍ମୀ ପ୍ରଲୋଭନ ଦେଖାଇଛନ୍ତି—

"କେନଗୋ ଆପନ୍ ମନେ ଭ୍ରମିଛ ବନେ ବନେ
ସଲିଲ ଦୁନୟନେ କସେର ଦୁଃଖେ
କମଲା ଦତେଛୁ ଆସି, ରତନ ଗଣି ଗଣି
ଫୁଟୁକ ତବେ ହସି ମଲିନ ମୁଖେ ।"

'ବାଲ୍ମୀକି ପ୍ରତିଭା'ରେ ଯେମିତି ଲକ୍ଷ୍ମୀ ସରସ୍ୱତୀଙ୍କର ମଧ୍ୟରେ ସରସ୍ୱତୀଙ୍କର ଜୟ ହୋଇଛି । "ଆମି ବୀଣାପାଣି ତୋରେ ଏସେଛି ଶିଖାତେ/ତୋର ଗାନେ ଗଲେ ଯାବେ ସହସ୍ର ପାଷାଣ ପ୍ରାଣ / × × ଏଇ ନେ ଆମାର ବୀଣା ଦନୁ ତୋରେ ଉପହାର/ଯେ ଗାନ ଗାହିତେ ସାଧ ଧ୍ୱନି ଦେ ଇହାର ତାର ।" ସରସ୍ୱତୀ କବିଙ୍କ ଉପରେ ଆଶିଷ ବର୍ଷଣ କରିଛନ୍ତି । ସରସ୍ୱତୀଙ୍କର ଆଶୀର୍ବାଦରେ ଜୀବନ ତାଙ୍କର କରୁଣାମୟ ହୋଇ ଉଠିଛି । ସେତେବେଳେ ସେ ଆଉ ଦସ୍ୟୁ ରତ୍ନାକର ହୋଇ ରହି ନାହାଁନ୍ତି—ସତ୍ୟସନ୍ଧାନୀ ଦୃଷ୍ଟିରେ ତାଙ୍କ ଜୀବନ ମହିମାମୟ ହୋଇ ଉଠିଛି ।

ରାଜକବି ଉପେନ୍ଦ୍ରରେ ସେହିପରି —

"ସଙ୍ଗୀତ ମୁଁ ଗୋ କୋକିଳ କଣ୍ଠେ ମଳୟର ଲଘୁ ସୁଆଗ
ଚନ୍ଦ୍ର-ଚକିତ ସନ୍ଧ୍ୟାରେ ଘନ ସୁରଭିତ ଫୁଲ ପରାଗ
ସୁନ୍ଦର ମୁଁ ଗୋ ଭୁବନେ
ଚୁମ୍ବନ ମୋର ସୁଷମା ଫୁଟାଏ ଅମୃତ ରୁକ୍ଷ ଜୀବନେ ।"
(ଗ୍ରନ୍ଥାବଳୀ-ପୃଷ୍ଠା ୪୬୧)

ରାଜଲକ୍ଷ୍ମୀ ଓ ସରସ୍ୱତୀଙ୍କ ମଧ୍ୟରୁ ଉପେନ୍ଦ୍ରଙ୍କ ଜୀବନରେ ସରସ୍ୱତୀଙ୍କର ହୋଇଛି ପରମ ବିଜୟ । ପ୍ରାଚୁର୍ଯ୍ୟ କିମ୍ବା କ୍ଷମତା କବିଙ୍କ ନିକଟରେ ତୁଚ୍ଛ ହୋଇଯାଇଛି ।

ରବୀନ୍ଦ୍ରନାଥଙ୍କ ଚିତ୍ରାଙ୍ଗଦା ସହିତ ମାନସିଂହଙ୍କର ପୁଷ୍ପିତାର ସାମଞ୍ଜସ୍ୟ ଲକ୍ଷ୍ୟ କରିଯାଇ ପାରେ । ପୁଷ୍ପିତା ଏକ ସଂକ୍ଷିପ୍ତ ସାମାଜିକ କାବ୍ୟ ନାଟିକା; କିନ୍ତୁ ଏହାର ରୋମାଣ୍ଟିକ ଦୃଷ୍ଟିଭଙ୍ଗୀ ଅନବଦ୍ୟ । ମଦନ ଓ ରତିର, ମଳୟ ଓ ବସନ୍ତର ପରିକଳ୍ପନାରେ ମାନସିଂହ ସମସ୍ତ ସଚେତନତାକୁ ଉପେକ୍ଷା କରିଛନ୍ତି । କିଶୋରୀର ଜୀବନରେ କନକ ପଦ୍ମର ପ୍ରଥମ ରାସ ଫୁଟାଇବା ପାଇଁ ଏହି ଦେବତା-ମାନଙ୍କୁ ମର୍ତ୍ତ୍ୟକୁ ଆହ୍ୱାନ କରିଛନ୍ତି—

"ଗନ୍ଧ ଆକୁଳ ଏଇ ପବନେ
କିସୁଖ ତାହାର ନାହିଁ ଜୀବନେ

ପତ୍ରଣ ପ୍ରିୟତମ ଗୋ ଯାର ସଜନୀ
କପରେ କଟିବ ତା'ର ରଜନୀ ।"

(ପୁଷ୍ପିତା—ପୃ ୪୫୧)

ନାରୀ ଜୀବନର ଏଇ ସ୍ୱାଭାବିକ ସତ୍ୟତା ଉପରେ 'ପୁଷ୍ପିତା'ରେ କେବଳ ଗୁରୁତ୍ୱ ଦିଆଯାଇଛି । ଏଥିରେ ଜୀବନର ଅନ୍ୟ କୌଣସି ସମସ୍ୟା ସମାଧାନର ଚିନ୍ତା ନାହିଁ । କିନ୍ତୁ ରବୀନ୍ଦ୍ରନାଥଙ୍କ 'ଚିତ୍ରାଙ୍ଗଦା' ପୌରାଣିକ ଉପାଖ୍ୟାନ ଉପରେ ଏହି ଚିରନ୍ତନ ମାନବିକ ଦୃଷ୍ଟିଭଙ୍ଗୀକୁ ନେଇ ଗଢ଼ିଉଠିଛି । ଚିତ୍ରାଙ୍ଗଦା ସମରକୁଶଳା ଏବଂ ପୁରୁଷ ବେଶରେ ସୁସଜ୍ଜିତା । କିନ୍ତୁ ଅର୍ଜୁନଙ୍କୁ ଦେଖିବା ପରେ ତାଙ୍କ ମନରେ ପ୍ରତିକ୍ରିୟା ସୃଷ୍ଟି ହୋଇଛି । ସେ ପ୍ରାର୍ଥନା କରିଛି—"ମାତ୍ର ଗୋଟିଏ ବର୍ଷ ପାଇଁ ରତିକାନ୍ତ, ମୋ ଦେହରେ ମଳୟର ହିଲ୍ଲୋଳ, ବସନ୍ତର ମହୋତ୍ସବ, ପ୍ରୀତିର ପ୍ରୀତଲ ସ୍ଫୂର୍ତ୍ତି ଫୁଟେଇ ଦିଅ । ପୃଥିବୀର ଲାବଣ୍ୟ କର ଏକତ୍ରିତ, ମର୍ତ୍ତ୍ୟରେ ତା ହେଉ ଅତୁଳନୀୟ । ହେଉ ଅନବଦ୍ୟ ।" ରତିପତି ତାହାର ପ୍ରାର୍ଥନା ପୂରଣ କରିଛନ୍ତି ।

କିନ୍ତୁ ପୁଷ୍ପିତାରେ ବସନ୍ତ ଛପି ଛପି ଆସି କିଶୋରୀର ତନୁରେ ଅତନୁର ପରଶ, ମନରେ ମୀନକେତନର ବାର୍ତ୍ତା ପରଶି ଯାଇଛି । ପୁରୁଷ ପୂଜାର ସାମଗ୍ରୀ ପାଇଁ ତାକୁ ଅପୂର୍ବ ଶ୍ରୀରେ କରିଛି ବିମଣ୍ଡିତ । କବିଙ୍କର ପରିକଳ୍ପନା ପଛରେ ଅଛି ଦୁଇ ବିପରୀତ ଶକ୍ତିର ଚିରନ୍ତନ ମିଳନ ଆଉ ସେଥିରୁ ନବାଗତର ଆବିର୍ଭାବ । ବିଷୟବସ୍ତୁ, ଦୃଷ୍ଟିଭଙ୍ଗୀ, ଚରିତ୍ର ଚିତ୍ରଣ, ନାଟ୍ୟକୀୟ ସଂଘର୍ଷ—ସବୁ ବିଷୟରେ ମାନସିଂହଙ୍କ ପୁଷ୍ପିତା ରବୀନ୍ଦ୍ରନାଥଙ୍କ ଚିତ୍ରାଙ୍ଗଦାଠାରୁ ଭିନ୍ନ । କିନ୍ତୁ ଏକ ସାମାଜିକ ବିଷୟବସ୍ତୁରେ ଏହି ବିଦେହି ଚରିତ୍ରଗୁଡ଼ିକର ପରିକଳ୍ପନା ଏବଂ ତାହାର ବର୍ଣ୍ଣନାରେ କବିଙ୍କର ଉନ୍ମୁଖତା—କବିଙ୍କ ଉପରେ ରବୀନ୍ଦ୍ରନାଥଙ୍କ 'ଚିତ୍ରାଙ୍ଗଦା'ର ମଦନ ଚରିତ୍ରର ପ୍ରଭାବର ସ୍ପଷ୍ଟ ସଙ୍କେତ ଦିଏ । ରବୀନ୍ଦ୍ରନାଥ କେବଳ ଗୋଟିଏ ଚରିତ୍ର ମଦନ ସୃଷ୍ଟିକରି ନୀରବ ହୋଇଥିବାବେଳେ କବି ମାନସିଂହ ମଦନ, ରତି, ବସନ୍ତ, ମଳୟ, ଯୌବନ ଆଦି ଏକାଧିକ ଚରିତ୍ର ସୃଷ୍ଟି କରିଛନ୍ତି । ତେବେ ମୌଳିକ ପ୍ରେରଣା କବିଙ୍କ ଚିନ୍ତାରେ ସୁଦୂରପ୍ରସାରୀ ହୋଇପାରିଛି । ଚିତ୍ରାଙ୍ଗଦା ସମ୍ପର୍କରେ ସମାଲୋଚକ ନୀହାରରଞ୍ଜନ ରାୟ ତାଙ୍କର 'ରବୀନ୍ଦ୍ର ସାହିତ୍ୟେର ଭୂମିକା' ପୁସ୍ତକରେ ପ୍ରକାଶ କରିଛନ୍ତି—"ନରନାରୀର୍ ପ୍ରେମନିଲ୍ ଦେହକେଇ ପ୍ରଥମ କାମନା କରେ, ଆକର୍ଷଣ କରେ, ମୋହାବିଷ୍ଟ ହଇଆ ଦେହକେଇ ଏକାନ୍ତ କରିଆ ପାଇତେ ଚାୟ । ଦେହ ଏକାନ୍ତ ସତ୍ୟ, ଦେହ ଧର୍ମେର୍ ମୂଲ୍ୟ ନାଇ,

ଏକଥା ବଲା ଚଲେନା × × ଏକ ମନ, ଆତ୍ମା, ହୃଦୟ, ଦେହକେ ଅତକ୍ରମ କରଯ୍ୱା ଆର୍ ଏକ ମନ, ଆତ୍ମା, ହୃଦୟକେ ପାଇତେ ଚାୟ, ସ୍ପର୍ଶ କରତେ ଚାୟ ଏବଂ ତାହା ଯଖନ ପାବେ ତଖନଇ ପ୍ରେମାସ୍ପଦାକେ ପୂର୍ଣ୍ଣଭାବେ ଜାନାଯାୟ, ପାଓଆ ଯାୟ, ଭୋଗ କରାଯାୟ । ଅର୍ଜୁନ ଯଖନ ଏଇ ନତ୍ୟପୂର୍ଣ୍ଣ ପ୍ରେମେର୍ ପରଚୟ ପାଇଲେନ୍, ତଖନ୍ ତନ ଧନ୍ୟ ହଇଲେନ୍, ଚତ୍ରାଙ୍ଗଦାର ନାରୀ ଜନ୍ମଓ ସାର୍ଥକ ହଇଲ । ଶାଶ୍ୱତ ନରର ସଙ୍ଗେ ଶାଶ୍ୱତ ନାରୀର ମିଲନ ହଇଲ । ଏହାଇ ରବୀନ୍ଦ୍ରନାଥେର ଦୃଷ୍ଟିଭଙ୍ଗୀ, ଦେହ ଆତ୍ମାର ଏଇ ପ୍ରେମ ଭାବନାଇ ରବୀନ୍ଦ୍ର ଚତ୍ତକେ ଅଧିକାର କରୟାଛେ ।" (୧୬)

ଏଇ ଗୀତନାଟ୍ୟର ନାୟକ ଅର୍ଜୁନ ଓ ନାୟିକା ଚତ୍ରାଙ୍ଗଦା କେହ ଜଣେ ମଧ୍ୟ ବ୍ୟକ୍ତିବିଶେଷ ନୁହଁନ୍ତି । ଦୁଇଜଣ କେବଳ ପ୍ରତୀକ । ଚତ୍ରାଙ୍ଗଦା ସମଗ୍ର ନାରୀଜାତିର କଥା କହୁଛି ଏବଂ ଅର୍ଜୁନ ଭାବପ୍ରବଣ ସୌନ୍ଦର୍ଯ୍ୟ ଲାଲସା ରହିତ ପୁରୁଷର ପ୍ରତୀକ । ଭାବାନୁଭୂତିର ସୂକ୍ଷ୍ମତା, ବର୍ଣ୍ଣନାର ଗୌରବ, କାମନା, ବାସନାର ମୃଦୁ ଏବଂ ତୀବ୍ର ସୌରଭ ଏବଂ ଭାବବ୍ୟଞ୍ଜନା ଚତ୍ରାଙ୍ଗଦାକୁ ଯେପରି ଅପରୂପ କାବ୍ୟ ମୂଲ୍ୟ ଦାନ କରିଛି ମାନସିଂହଙ୍କର 'ପୁଷ୍ପିତା' ଗୀତନାଟ୍ୟ ହେଲେ ମଧ୍ୟ ତାହାର କାବ୍ୟମୂଲ୍ୟ ଅସ୍ୱୀକାର କରି ହେବନାହିଁ ।

କବି ମାନସିଂହ ଥିଲେ ଗୀତଧର୍ମୀ କବି ; ଏହା ସର୍ବଜନବିଦିତ । ତାଙ୍କର ଏହି ଗୀତଧର୍ମୀ ମାନସ ଯେ କେବଳ କାବ୍ୟକବିତା ମଧ୍ୟରେ ସୀମିତ ତାହାନୁହେଁ, ଏପରିକି ଗୀତନାଟ୍ୟ ଏବଂ ବିଭିନ୍ନ ପ୍ରବନ୍ଧ ରଚନାରେ ମଧ୍ୟ ଏହା ସୁସ୍ପଷ୍ଟ ।

ତେବେ ଗୋଟିଏ କଥା ଅତି ସ୍ପଷ୍ଟ ଯେ ମାନବଚରିତ୍ରର ଦ୍ୱନ୍ଦ୍ୱ ଯେଉଁଠି ଯେତେ ନିବିଡ଼ ଓ ପ୍ରବଳ, ସଂଗ୍ରାମ ଯେଉଁଠି ଯେତେ ସୂକ୍ଷ୍ମ ଓ ବିଚିତ୍ର, ହୃଦୟ ମଧ୍ୟରେ ଯେଉଁ ଅନୁଭୂତି ଖୁବ୍ ତୀବ୍ର, ମାନବ ଚରିତ୍ର ସେହି ରହସ୍ୟର ଗଭୀରତା ଯେଉଁଠି ଯେତେ ବେଶୀ ; ମାନସିଂ ପ୍ରତିଭା ସେଠାରେ ସେତେ ବେଶୀ ଫୁଟି ଉଠିଛି । ସେଥିପାଇଁ ନାଟକ କମ୍ବା ନାଟିକା କହିଲେ ଯେଉଁ ଘଟଣାବହୁଳ ବୈଚିତ୍ର୍ୟବହୁଳ ସାହିତ୍ୟିକ ରୂପ ଆମେ ବୁଝୁ ; ମାନସିଂ ସେଭଳି ନାଟକର ସ୍ରଷ୍ଟା ନୁହଁନ୍ତି । ସେ ଯେଉଁସବୁ ଗୀତନାଟ୍ୟ ରଚନା କରିଛନ୍ତି ତାହା ଆଦୌ ଘଟଣାବହୁଳ ନୁହେଁ , ଭାବବ୍ୟଞ୍ଜକ । ସେଥିପାଇଁ ମାନସିଂହ ରୋମାଣ୍ଟିକ୍ କବି

(୧୬) ରବୀନ୍ଦ୍ର ସାହିତ୍ୟେର ଭୂମିକା—ନୀହାରରଞ୍ଜନ ରାୟ, ପୃ-୫୭

ଭାବରେ ଯେତେ ପ୍ରସିଦ୍ଧି ଲାଭ କରିଛନ୍ତି ; ନାଟକ ରଚନାରେ ନୁହେଁ । କାବ୍ୟ-କବିତା କ୍ଷେତ୍ରରେ ମାନସିଂ ପ୍ରତିଭା ଅତୁଳନୀୟ । ତାଙ୍କ କବିତାରେ ରହିଛି ଏକ ଭାବମୁଗ୍ଧ ଶିଳ୍ପୀପ୍ରାଣର ପ୍ରକୃଷ୍ଟ ପରିଚୟ । ଗୋଟିଏ ଭାବଲୋକରୁ ଅନ୍ୟ ଭାବଲୋକ ମଧ୍ୟରେ ଆପଣାର ରୂପତୃଷ୍ଣା ଓ ରସତୃଷ୍ଣାକୁ ରୂପାୟିତ କରିଛନ୍ତି । କିନ୍ତୁ ନାଟକ ମଧ୍ୟରେ ଏହାର ଅଭାବ ଅନୁଭୂତ ହୋଇଥାଏ । ତଥାପି ଗୀତିନାଟ୍ୟ ରଚନା କ୍ଷେତ୍ରରେ ମାନସିଂ ଯେ ଅଦ୍ୱିତୀୟ ଏକଥା ଅସ୍ୱୀକାର କରିହେବ ନାହିଁ । ସେ ତାଙ୍କର ଏହି ଗୀତିନାଟ୍ୟର ସୃଷ୍ଟି ମଧ୍ୟରେ ସ୍ମରଣୀୟ ରହିବେ । ରୂପଅରୂପର ଅତୀନ୍ଦ୍ରିୟ ରାଜ୍ୟର ସନ୍ଧାନ କରିବାକୁ, କବିପ୍ରାଣର ଯେଉଁ ଯାତ୍ରା , ଆତ୍ମାର ବିଚିତ୍ର ଅନୁଭୂତି ଓ ଉପଲବ୍‌ଧି ମାନସିଂହଙ୍କ ଗୀତିନାଟ୍ୟଗୁଡ଼ିକୁ ଅମରତ୍ୱ ଦାନ କରିବ । ବଡ଼ ବଡ଼ କଥା କିମ୍ବା ବହୁ କାବ୍ୟବିନ୍ୟାସ ସାହାଯ୍ୟରେ ସୁକଠିନ ତତ୍ତ୍ୱ ବା ଉପଦେଶ ପ୍ରଚାରର ଚେଷ୍ଟା ମାନସିଂଙ୍କ କବିତାରେ କିମ୍ବା ଗୀତିନାଟ୍ୟରେ କେଉଁଠାରେ ହେଲେ ନାହିଁ । ତେବେ ଗୋଟିଏ ସୁନ୍ଦର ସତ୍ୟର ପୂର୍ଣ୍ଣ ପରିଣତିର ଇଙ୍ଗିତ ତାଙ୍କର ଗୀତିନାଟ୍ୟର ମର୍ମକଥା ।



# ପଞ୍ଚମ ପରିଚ୍ଛେଦ

## ସମସାମୟିକ ମାନବବାଦୀ କାବ୍ୟ ଆନ୍ଦୋଳନ ଓ କବି ମାନସିଂହ

ଓଡ଼ିଆ କାବ୍ୟ କବିତା କ୍ଷେତ୍ରରେ ମାନବବାଦୀ କାବ୍ୟ ଚେତନାର ଅନୁପ୍ରବେଶ ; ପାରମ୍ପରିକତା ବିରୁଦ୍ଧରେ ଯେ ଏକ ଆନ୍ଦୋଳନ, ଏହା ଅସ୍ୱୀକାର କରି ହେବନାହିଁ । ମାନବବାଦୀ ତଥା ପ୍ରଗତିବାଦୀ ସ୍ୱରର ଉଦ୍‌ଗାତାମାନେ ଏହି କାବ୍ୟଚେତନାକୁ ମାର୍କସୀୟ ଭାବଧାରା ଭିତରେ ବିଗ୍ରହ କରିବା ଦ୍ୱାରା ଏହାର ଆଭିମୁଖ୍ୟ ସଙ୍କୁଚିତ ହୋଇଯାଇଛି । ପ୍ରଗତିବାଦୀ ସାହିତ୍ୟର ସଂଜ୍ଞା ନିରୂପଣ କରିବାକୁ ଯାଇ ସାମ୍ୟବାଦୀ ଆନ୍ଦୋଳନର ଅନ୍ୟତମ ପ୍ରବକ୍ତା ପ୍ରାଣନାଥ ପଟ୍ଟନାୟକ କହିଛନ୍ତି "ସାମ୍ରାଜ୍ୟବାଦ ବିରୋଧୀ ଓ ସ୍ୱାଧୀନତାକାମୀ ଏହି ସମସ୍ତ ଜାତୀୟବାଦୀ ସାହିତ୍ୟ ନିଶ୍ଚୟ ଉଚ୍ଚ ପର୍ଯ୍ୟାୟଭୁକ୍ତ ସାହିତ୍ୟ ଏବଂ ପ୍ରଗତିଶୀଳ ସାହିତ୍ୟ ନାମରେ ନାମିତ ହେବ ; ଏଥିରେ ସନ୍ଦେହ ନାହିଁ । ଭବିଷ୍ୟତରେ ବିଗତ ସାହିତ୍ୟର ଏହି ସମସ୍ତ ସ୍ତରଭେଦ ନିର୍ଣ୍ଣୟ କରି ପ୍ରଗତି ଓ ପ୍ରତିକ୍ରିୟାର ମାପକାଠିରେ ମାପି ତାହାକୁ ପର୍ଯ୍ୟାୟଭୁକ୍ତ କଲାବେଳେ କେହି ଯେପରି ମନେ ନ କରନ୍ତୁ ଆସନ୍ତା କାଲିର ସାହିତ୍ୟ ତରାଜୁରେ ଓଜନ କଲାବେଳେ ଅତୀତର ହଜାର ହଜାର ବର୍ଷର ସାହିତ୍ୟ ଘର ଶୂନ୍ ପଡ଼ିଯିବ ।" (୧)

ଊନବିଂଶ ଶତାବ୍ଦୀ ମୁଖ୍ୟତଃ ଏକ ରୋମାଣ୍ଟିକ୍ ଯୁଗ ହିସାବରେ ଖ୍ୟାତିଲାଭ କରିଥିଲା । ରାଧାନାଥ, ଗଙ୍ଗାଧର ଏବଂ ନନ୍ଦକିଶୋରଙ୍କ କାବ୍ୟ-ଚେତନା ଥିଲା ସାମନ୍ତବାଦୀ ଭାବଧାରାର ବାହକ । ଏହି ଭାବନା ବିରୁଦ୍ଧରେ ଫକୀରମୋହନ, ଗୋପବନ୍ଧୁ, ଗୋଦାବରୀଶଙ୍କ ସାହିତ୍ୟ ଯଥାର୍ଥରେ ଏକ ମାନବବାଦୀ ଜାତୀୟ ଚେତନାର ସ୍ୱର ଉନ୍ମୋଚନ କରିଥିବା ଲକ୍ଷ୍ୟ କରାଯିବ । ଏହି ଦୃଷ୍ଟିକୋଣରୁ ସତ୍ୟବାଦୀ ଯୁଗର ସାହିତ୍ୟରେ ମଧ୍ୟ ପ୍ରଗତିବାଦୀ ଧାରା

---

(୧) ଆସନ୍ତା କାଲିର ସାହିତ୍ୟ—ଶ୍ରୀ ପ୍ରାଣନାଥ ପଟ୍ଟନାୟକ, ପୃ-୬୭

ପ୍ରକାଶିତ ହୋଇଥିବାର ଦେଖାଯାଏ । ବିଂଶ ଶତାବ୍ଦୀରେ ସାହିତ୍ୟର ସ୍ରୋତ କ୍ରମେ ବାସ୍ତବତା ଅଭିମୁଖୀ ହେବାକୁ ଲାଗିଲା । ସାଧାରଣ ଜୀବନର ଘାତପ୍ରତିଘାତ, ସୁଖ ଦୁଃଖ ଓ ଆଶା ଆକାଙ୍‌କ୍ଷା ପ୍ରଭୃତି ତୁଚ୍ଛତମ ଘଟଣାମାନ କଳାସୃଷ୍ଟି ନିମନ୍ତେ ଅବଲମ୍ବନ ହୋଇଉଠିଲା । ଫଳରେ ସାହିତ୍ୟ ଜୀବନକୁ ନେଇ ଗତିଶୀଳ ହେବାକୁ ଲାଗିଲା । କିନ୍ତୁ ଏହା ପୂର୍ବରୁ ସାହିତ୍ୟ ଥିଲା ଗୋଷ୍ଠୀବିଶେଷର ବିଳାସ ସାମଗ୍ରୀ । ଅଭିଜାତ ସଂପ୍ରଦାୟର ଜୀବନ ଚରିତ୍ର ଥିଲା ସାହିତ୍ୟର ଏକମାତ୍ର ଆଦର୍ଶ । କିନ୍ତୁ ସାହିତ୍ୟର ଦୃଷ୍ଟିଭଙ୍ଗୀ କ୍ରମେ ବଦଳିବାକୁ ଲାଗିଲା । ପୁଞ୍ଜିପତି ଉତ୍ପାଦନ ପ୍ରଣାଳୀ ଯେ କୌଣସି ନୈତିକ ସୃଜନର ବିରୋଧୀ—ଏହି ମାର୍କସୀୟ ଦର୍ଶନ ୟୁରୋପୀୟ ସାହିତ୍ୟିକଙ୍କ ମନୋବୃତ୍ତିରେ ପ୍ରଥମେ ପ୍ରକାଶ ପାଇଲା । ଫ୍ଲବାର୍ଟ, ଜୋଲ୍ ଏବଂ ମୋପାସାଁଙ୍କ ପରି ସାହିତ୍ୟିକମାନେ ଯଦିଓ ଏକ ବାସ୍ତବବାଦୀ ସାହିତ୍ୟ ସୃଷ୍ଟିରେ ଥିଲେ ଅଗ୍ରଣୀ ତଥାପି ସମାଜବାଦୀ ଦୃଷ୍ଟିଭଙ୍ଗୀ ଜନିତ ସାମାଜିକ ପରିବର୍ତ୍ତନ ସେତେବେଳେ ତଥାପି ସେମାନଙ୍କ ଚିନ୍ତାରାଜ୍ୟରେ ପ୍ରତିକ୍ରିୟା ସୃଷ୍ଟିକରି ନ ଥିଲା । ପାଶ୍ଚାତ୍ୟ ସାହିତ୍ୟରେ ଏହି ସ୍ୱାଭାବିକ ବାସ୍ତବବାଦୀ ଦୃଷ୍ଟିକୋଣ ପ୍ରକାଶ ପାଇବା ଫଳରେ ସାହିତ୍ୟର ଗତାନୁଗତିକ ଆଦର୍ଶ କ୍ରମେ ବଦଳିଗଲା । ସ୍ୱାଭାବିକ ଭାବରେ ବାସ୍ତବ ଜୀବନର ଚିତ୍ର କଳାରେ ଫୁଟି ଉଠିଥାଏ, ଏହାହିଁ ହେଲା କଳାର ଆଭିମୁଖ୍ୟ । ସମାଲୋଚକ ଚିନ୍ତାମଣି ବେହେରା ଯଥାର୍ଥରେ କହିଛନ୍ତି, "ସାହିତ୍ୟିକ ଜଣେ କୃଷକ ଓ ଲେଖନୀ ହେଉଛି ତାର ଲଙ୍ଗଳ । ତାହାରି ସାହାଯ୍ୟରେ ଜନତାର ଭାବରାଜ୍ୟରେ ସେ ସତ୍ୟ ଓ ପ୍ରଗତିର ବୀଜ ବପନ କରି ମାନବିକତାର ସବୁଜ ଶସ୍ୟ ସୃଷ୍ଟି କରିବାକୁ ସମର୍ଥ ହୋଇଥାଏ ।" (୨)

ଆମର ପାରମ୍ପରିକ ବିଶ୍ୱାସକୁ ମାର୍ଜିତ ଓ ସାଂସ୍କୃତିକ ରୂପଦାନ କରି ପ୍ରଗତି ସାହିତ୍ୟ ଅଙ୍ଗୀଭୂତ କରିଥାଏ । ସାହିତ୍ୟକୁ ଜନପ୍ରିୟ କରିବା ସଙ୍ଗେ ସଙ୍ଗେ କଳାଗତ ବୈଶିଷ୍ଟ୍ୟ ରକ୍ଷା କରିବା ନିମନ୍ତେ ପ୍ରଗତିବାଦୀ ଲେଖକମାନେ ଯତ୍ନବାନ ହୋଇଥାଆନ୍ତି । କବି ଓ ଲେଖକ ସମାଜର ଦଶଜଣରୁ ଜଣେ ନୁହଁନ୍ତି, ସେ ଦଶଜଣର ମୁଖପାତ୍ର । କବି ଓ ଲେଖକର ଲେଖନୀ ନେଇ ସମାଜ କଥା ଶୁଣେ କେବଳ ନୁହେଁ; କଥା କହେ । ଅତ୍ୟାଚରିତ ପୀଡ଼ିତ ଜନତା ମୂକ ଓ ଅଜ୍ଞ ଜନସାଧାରଣର ଅନ୍ତରବ୍ୟଥା କିଏ ପ୍ରକାଶ କରିବ ? ଅନ୍ୟାୟୀ, ଅତ୍ୟାଚାରୀ ବିରୁଦ୍ଧରେ ପ୍ରତିବାଦ କରିବ କିଏ ? ଏକ ସୈନିକ, ଦ୍ୱିତୀୟ କବି । ଖଡ଼୍‌ଗ ଓ ଲେଖନୀ । ଖଡ଼୍‌ଗଧାରୀ ବୀର ଜନତାର କଲ୍ୟାଣ ପାଇଁ ଯୁଦ୍ଧଭୂମିରେ ମୁଣ୍ଡ ଢାଳିଦିଏ ଅକାତରେ । ଲେଖନୀଧାରୀ କବି ମଧ୍ୟ ଠିକ୍ ସେହିପରି ଦେଶ ଓ ଜାତିର

---

(୨) କାବ୍ୟ ଓ କଳାକାର—ଚିନ୍ତାମଣି ବେହେରା, ପୃ. ୧୬୩

ଆହ୍ୱାନରେ କାରା ଓ ମୃତ୍ୟୁ ବରଣ କରେ । × × × ମଣିଷ ମନର କଥା ଜାଣିବାକୁ ହେଲେ ଏବଂ ମଣିଷ ବୁଝିବା ଭଳି ଭାଷାରେ ତାକୁ ବ୍ୟକ୍ତ କରିବାକୁ ହେଲେ, କବି ଓ ଲେଖକଙ୍କୁ ଜଣେ କେବଳ ସାଧାରଣ ମଣିଷ ପରି ବଞ୍ଚିବାକୁ ହେବନାହିଁ; ତା'ଠାରୁ ଅଧିକ ଗଭୀର, ନିବିଡ଼ ଓ ଅର୍ଥମୟ ଜୀବନ ଯାପନ କରିବାକୁ ପଡ଼ିବ । ପୁଣି ସହସ୍ର ମନର ସ୍ୱପ୍ନର ଧାରା ବୁଝିବାକୁ ହେଲେ କବି ଓ ଲେଖକଙ୍କୁ, ସହସ୍ର ସାଥିରେ ସମାନ ଭାବରେ ମିଶିବାକୁ ହେବ । ସହସ୍ର ପରି କବି ଓ ଲେଖକଙ୍କୁ ମଧ୍ୟ ଧୂଳିମଳିନ, କର୍ମକ୍ଳାନ୍ତ ଓ ପଥଶ୍ରାନ୍ତ ହେବାକୁ ହେବ ।" (୩) ମୁଖ୍ୟତଃ ଏହି ସହସ୍ର ଜୀବନର ଛନ୍ଦକୁ ପ୍ରଗତିବାଦୀ କବି ଅଧିକ ପ୍ରାଞ୍ଜଳ ଭାବରେ ଫୁଟାଇପାରେ ।

ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ଏକ ବିପ୍ଳବର ଯୁଗ ଏବଂ ଏହି ବିପ୍ଳବ ମଣିଷର ସମାଜ ଓ ରାଷ୍ଟ୍ରଜଗତରେ ନୁହେଁ; ମଣିଷର ଚିନ୍ତାଜଗତ ଓ ଅର୍ଥନୀତି ଭିତରେ ଦେଖାଦେଇଛି । ବିଜ୍ଞାନ ଆଜି ତାର ଜୀବନଯାପନ ପ୍ରଣାଳୀକୁ ଅଭୂତ ଭାବରେ ବଦଳାଇ ଦେବା ସଙ୍ଗେସଙ୍ଗେ ମାର୍କସବାଦ ପ୍ରଭୃତି ବିଭିନ୍ନ ରାଜନୈତିକ ମତବାଦ ଓ ଫ୍ରଏଡ୍, ହେବଲକ୍, ଏଲିସ୍ ପ୍ରଭୃତିଙ୍କର ମନଃସମୀକ୍ଷା ଓ ଯୌନତତ୍ତ୍ୱ ତାର ପ୍ରାଚୀନ ଧର୍ମବିଶ୍ୱାସ ଓ ନୈତିକତାର ଦୃଷ୍ଟିକୋଣକୁ ସମ୍ପୂର୍ଣ୍ଣ ଭାବରେ ପରିବର୍ତ୍ତନ କରିଦେଇଛି । ମଣିଷ ତା'ର ମୌଳିକ ଅଧିକାର ସମ୍ପର୍କରେ ଆଜି ସଚେତନ । ସବୁ ଦେଶର ପ୍ରଗତିଶୀଳ ସାହିତ୍ୟରେ ମଣିଷର ଆଶା ଆକାଙ୍କ୍ଷା ଚିନ୍ତାଚେତନା ଦୈନନ୍ଦିନ ଜୀବନର ସଂଗ୍ରାମ ଓ ସଙ୍ଘର୍ଷ ପ୍ରତିବିମ୍ବିତ ହେବା ବିଚିତ୍ର ନୁହେଁ । ଆଜିର କବିମାନସ ଦ୍ୱିଧାସଙ୍କୁଳ । ସେ ସ୍ୱପ୍ନର ମୀନାର ତିଆରି କରିବା ପାଇଁ ଆଉ ଇଚ୍ଛା କରୁନି । ବାହ୍ୟ ସମାରୋହ ଭିତରେ ସେ ଆଉ ଆତ୍ମମଗ୍ନ ନୁହେଁ । ତା ଚାରିପାଖର ବାସ୍ତବ ଜୀବନ ଯେପରି ଭାବରେ ବିପର୍ଯ୍ୟସ୍ତ, ଅନ୍ତର୍ଜଗତ ମଧ୍ୟ ସେହି ଭାବରେ ସଂଶୟାଚ୍ଛନ୍ନ । ପ୍ରଗତିଶୀଳ ସାହିତ୍ୟିକର ଦୃଷ୍ଟିକୋଣ ଭିନ୍ନ । ସମାଜ ଓ ଜୀବନର ଭବିଷ୍ୟତ ପ୍ରତି ତାର ବଳିଷ୍ଠ ବାଣୀ ଓ ସାମାଜିକ ଜୀବନର ନିଖୁଣ ଓ ବାସ୍ତବ ପ୍ରତିବିମ୍ବ ତା ସୃଷ୍ଟିରେ ପ୍ରତିଫଳିତ ହୋଇଥାଏ ।

ବ୍ରିଟିଶ୍ ଶାସନ ଭାରତରେ ପ୍ରତିଷ୍ଠିତ ହେବା ସଙ୍ଗେସଙ୍ଗେ ପାଶ୍ଚାତ୍ୟ ସଭ୍ୟତା ସହିତ ଆମ୍ଭମାନଙ୍କର ପରିଚୟ ଘଟିଲା । ଏହା ପୂର୍ବରୁ ଦେଶର କବି ଏବଂ ଲେଖକମାନେ ସଂସ୍କୃତ ସାହିତ୍ୟକୁ ହିଁ ଆଦର୍ଶ ରୂପେ ଆଖି ଆଗରେ

(୩) କବି ଓ କବିତା—ମାନସିଂହ ଗ୍ରନ୍ଥାବଳୀ, ଦ୍ୱିତୀୟଭାଗ—ପୃ. ୫୫୭, ୫୫୯

ରଖିଥିଲେ । କିନ୍ତୁ ପଶ୍ଚିମୀ ସଭ୍ୟତାର ସଂସ୍ପର୍ଶରେ ଆସି ଭାରତୀୟ କାବ୍ୟ ସାହିତ୍ୟ ଏକ ନୂତନ ରୂପରେଖ ଧାରଣ କରିବାକୁ ଲାଗିଲା । ପ୍ରାଚ୍ୟ ପାଶ୍ଚାତ୍ୟର ଏହି ମିଳନ ମୁହୂର୍ତ୍ତରେ ଯେଉଁ ନୂତନ ଭାବ ସମ୍ପଦ ଆମ ଦେଶକୁ ଆସିଲା, ବିଭିନ୍ନ ପ୍ରଦେଶର ଆଧୁନିକ ଲେଖକମାନେ ସେଥିରେ ଅନୁପ୍ରାଣିତ ହୋଇ ନିଜନିଜ ମାତୃଭାଷାରେ ସାହିତ୍ୟ ସୃଷ୍ଟି ପାଇଁ ପ୍ରୟାସୀ ହେଲେ । ୧୯୩୦-୪୦ ଦଶକର ମଧ୍ୟଭାଗରେ ଯେଉଁ ପ୍ରଗତିବାଦୀ କାବ୍ୟଚେତନା ଓଡ଼ିଆ କାବ୍ୟ କବିତା କ୍ଷେତ୍ରରେ ଅନୁପ୍ରବେଶ କରିଛି; ତାହା ଆମ ପାରମ୍ପରିକ ସାହିତ୍ୟ ଇତିହାସରେ ଯେ ଏକ ପ୍ରଗତିବାଦୀ କାବ୍ୟ ଆନ୍ଦୋଳନ, ଏଥିରେ ସନ୍ଦେହ ନାହିଁ । ରାଧାନାଥ, ଗଙ୍ଗାଧର, ନନ୍ଦକିଶୋରଙ୍କ କାବ୍ୟଚେତନା ଥିଲା ସାମନ୍ତବାଦୀ ଭାବଧାରାର ବାହକ । କିନ୍ତୁ ଫକୀରମୋହନ, ଗୋପବନ୍ଧୁ, ଗୋଦାବରୀଶଙ୍କ ସୃଷ୍ଟିରେ ମାନବବାଦୀ ଜାତୀୟଚେତନାର ସ୍ୱର ଅନୁରଣିତ । ଏହି ଦୃଷ୍ଟିକୋଣରୁ ସତ୍ୟବାଦୀ ଯୁଗର ସାହିତ୍ୟ ଏହାର ପୂର୍ବବର୍ତ୍ତୀ ସୃଷ୍ଟି ପ୍ରକ୍ରିୟାଠାରୁ ଅଧିକ ପ୍ରଗତିବାଦୀ ବୋଲି କହିବାକୁ ହେବ । କିନ୍ତୁ କବି ନୀଳକଣ୍ଠଙ୍କର 'ମାୟାଦେବୀ' ଓ 'ଖାରବେଳ' କାବ୍ୟ ଏହି ଭାବଧାରାର ବ୍ୟତିକ୍ରମ ।

ଓଡ଼ିଆ ସାହିତ୍ୟର ଜାତୀୟବାଦୀ କାବ୍ୟସ୍ୱରରେ ରାଜନୈତିକ ମୁକ୍ତି ଆନ୍ଦୋଳନର ସ୍ୱର ଅଧିକ ସ୍ପଷ୍ଟ । କିନ୍ତୁ ପ୍ରଗତିବାଦୀ କାବ୍ୟ ସ୍ୱରରେ ନିପୀଡ଼ିତ ଦଳିତ ଜନସଙ୍ଘର ମୁକ୍ତିର ଆକାଂକ୍ଷା ପ୍ରତିଫଳିତ । ରୁଷ୍ ବିପ୍ଳବ ଓ ସୋଭିଏଟ୍ ସମାଜ ଜୀବନର ଚୂଡ଼ାନ୍ତ ପରିବର୍ତ୍ତନ ଗୋପବନ୍ଧୁଙ୍କୁ ଏହି ପ୍ରଗତିବାଦୀ କାବ୍ୟ ଚେତନା ଆଡ଼କୁ ଆସକ୍ତ କରିଥିଲା । ସେ ସମାଜର ସମ୍ପାଦକୀୟରେ ଲେଖିଥିଲେ, "କମ୍ୟୁନିଷ୍ଟମାନେ ଯାହା କରୁଛନ୍ତି ତାହା ଦୋଷାବହ ନୁହେଁ । ବିଶେଷ କରି ସେମାନଙ୍କର ନୀତି ଭାରତ ପକ୍ଷରେ ନୂଆ ନୁହେଁ । ସେମାନେ କହନ୍ତି ଦେଶର ଜଣକର କାହିଁକି ପାଞ୍ଚବାଟୀ ଜମି ରହିବ, ହୁଏତ ତା' ଘରେ ଖାଇବାକୁ ଦୁଇଜଣ ଲୋକ । ସେ ବିଳାସ, ମାମଲା, ମଜଲିସରେ ଇଚ୍ଛାମତେ ଖର୍ଚ୍ଚ କରୁଛି । ତା' ଘର ପାଖେ ଆଉଜଣକର ଦଶପ୍ରାଣୀ କୁଟୁମ୍ବ ଦ'ମାଣ ଜମି । ପ୍ରାଣାନ୍ତିକ ପରିଶ୍ରମ କରି ମଧ୍ୟ ସେମାନଙ୍କ ପେଟ ପୂରୁ ନାହିଁ । ଜଣେ କାହିଁକି କୋଟୀଶ୍ୱର; ଆଉ ଜଣେ କାହିଁକି ଦିନରାତି ଖଟିଖଟି ପେଟପୂରା ଗଣ୍ଡେ ଖାଇବାକୁ ପାଉ ନାହିଁ । ସମାଜରେ ଏ ବିଷମ ଅବସ୍ଥା ରହିବା ଉଚିତ୍ତ ନୁହେଁ । ଦେଶର ସବୁ ସମ୍ପତ୍ତି ସମଗ୍ର ଜାତିର । ଏହା ସମସ୍ତଙ୍କର କୋଠସମ୍ପତ୍ତି । (୪) ସମାଜ ଓ

---

(୪) ୨ । ୧ । ୧୯୨୭—'ସମାଜ' ସମ୍ପାଦକୀୟ, ସମ୍ପାଦକ ଶ୍ରୀ ଗୋପବନ୍ଧୁ ଦାସ

ରାଜନୈତିକ କ୍ଷେତ୍ରରେ ଏହି ଚିନ୍ତାଧାରାର ଉପଯୋଗିତାକୁ ଲେନିନ୍ ପ୍ରମାଣିତ କରିଦେଲା ପରେ ସମଗ୍ର ପୃଥିବୀର ଅଗ୍ରଗାମୀ ଚିନ୍ତାଶୀଳ ଲେଖକମାନଙ୍କୁ ପ୍ରଭାବିତ କରିଥିବ । ଏଥିରେ କୌଣସି ସନ୍ଦେହ ନାହିଁ । ଭାରତୀୟ ଚିନ୍ତା ରାଜ୍ୟରେ ଆଲୋଡ଼ନ ସୃଷ୍ଟି କରିବା ପୂର୍ବରୁ ଏହି ଚିନ୍ତାଧାରା ଯେ ପ୍ରଥମେ ୟୁରୋପର ପ୍ରଗତିକାମୀ ସାହିତ୍ୟିକଙ୍କ ଭାବଚେତନାକୁ ଅନୁପ୍ରାଣିତ କରିଛି ଏହା ସ୍ୱାଭାବିକ ।

ପ୍ରଥମ ବିଶ୍ୱଯୁଦ୍ଧ (୧୯୧୪-୧୮) ମଣିଷ ମନରେ ଯେଉଁ ପ୍ରତିକ୍ରିୟା ସୃଷ୍ଟି କରିଥିଲା ତା'ର ଅନୁରଣନ T. S. Eliotଙ୍କ The Waste Landରେ ପ୍ରତିଫଳିତ । ୟୁରୋପୀୟ ଫମ୍ପା ସଭ୍ୟତାକୁ ଲକ୍ଷ୍ୟକରି ତାଙ୍କର ବିଖ୍ୟାତ କାବ୍ୟ "The Waste Land"ର 'London bridge falling falling' ପ୍ରଭୃତି ପଂକ୍ତିମାନଙ୍କରେ ସାମ୍ରାଜ୍ୟବାଦୀ ଯୁଦ୍ଧଖୋର ଲୋକଙ୍କ ପ୍ରତି ବିଦ୍ରୂପୋକ୍ତି ପ୍ରକାଶିତ ହୋଇଛି । ଫରାସୀ କବି ଲୁଇ ଆରାଗଁଙ୍କ କଣ୍ଠରେ "The Redtrain Starts and nothing shall stop it"ର ସ୍ୱର ସାମ୍ୟବାଦର ଧ୍ୱନିରେ ମୁଖର ହୋଇଉଠିଛି ।

ପ୍ରଥମ ମହାଯୁଦ୍ଧ ପରବର୍ତ୍ତୀ ସମୟରେ ରୁଷୀୟ ଓ ୟୁରୋପୀୟ କବିମାନଙ୍କ ରଚନାବଳୀ ତଥା ଫାସିଷ୍ଟ ଯୁଦ୍ଧଖୋରମାନଙ୍କ ବିରୁଦ୍ଧରେ ନାଟ୍ୟକାର ବର୍ଣ୍ଣାଡ଼ ଶଙ୍କ ବିଦ୍ରୂପ ଦ୍ୱାରା ପରବର୍ତ୍ତୀ କବିମାନେ ଅଧିକ ପ୍ରଭାବିତ ହୋଇଥିବାର ଜଣାଯାଏ । ଏହି ବାସ୍ତବବାଦୀ ସମାଜନିର୍ଭର ପ୍ରଗତିବାଦୀ କାବ୍ୟ ବିପ୍ଳବ ପରେ ମଣିଷର ଅବଚେତନ ମନର ପ୍ରତିକ୍ରିୟାକୁ ବହନ କରି ସରିଅଲିଜମ୍ ବା ଅତି ବାସ୍ତବବାଦ ନାମରେ ପ୍ରତିପାଦିତ ହୋଇଛି । ଅଡ଼େନ୍, ସ୍ପେଣ୍ଡର ଗୋଷ୍ଠୀର ଲେଖକମାନଙ୍କ ସୃଷ୍ଟି ଓ ଅତି ବାସ୍ତବବାଦୀ କାବ୍ୟ ଆନ୍ଦୋଳନର ପ୍ରତିଷ୍ଠାତା ଆଁନ୍ଦ୍ରେ ବ୍ରେତୋଁ, ମାଲାର୍ମେ, ର୍ୟାଁବୋ, ପଲ୍‌ଭାଲେରି ପ୍ରମୁଖ କବିମାନଙ୍କ କାବ୍ୟ ଚେତନାକୁ ଲକ୍ଷ୍ୟ କଲେ ଏହି ପ୍ରଗତିବାଦୀ କାବ୍ୟସ୍ୱରର ବୈଶିଷ୍ଟ୍ୟ ଉପଲବ୍ଧି କରିହେବ । "ବିଚିତ୍ର ଏ କବିତା । ଆଇନଷ୍ଟାଇନ ଓ ଫ୍ରଏଡ୍, ହୋମାରଲେନ୍ ଓ ଡାଏଡ଼ନ୍, କୁଲିବସ୍ତି ଓ କମ୍ୟୁନିଜମ୍ ସବୁ ମିଶି ଏକ ଅଦ୍ଭୁତ ସୃଷ୍ଟି । କ୍ଷୟିଷ୍ଣୁଶୀଳ ପରମ୍ପରା ପୀଡ଼ିତ ସମାଜ ବ୍ୟବସ୍ଥା ବିରୁଦ୍ଧରେ ବିଦ୍ରୋହ, ବର୍ତ୍ତମାନର ରୁଦ୍ଧ କାରା ମଧ୍ୟରେ ମୁକ୍ତିର ଏକ ବିରାଟ ଅଭୀପ୍‌ସା, ସ୍ପେଣ୍ଡର ଓ ଅଡ଼େନ୍ ପ୍ରମୁଖ କବିମାନଙ୍କ କାବ୍ୟ ସୃଷ୍ଟିର ମୂଳ ପ୍ରେରଣା ଥିଲା । ତେଣୁ ସମସ୍ତ ପ୍ରଥା, ପରମ୍ପରା ଓ ବନ୍ଧନ ଦଳି ସମସ୍ତ ୟୁରୋପୀୟ ସାହିତ୍ୟରେ ଆସିଥିଲା ଏକ ନୂତନ କବିତାର ପ୍ଳାବନ ।" (୫) ଏହାହିଁ ଯଥାର୍ଥରେ ପ୍ରଗତିବାଦୀ କାବ୍ୟ

(୫) ନୀଳଚନ୍ଦ୍ରର ଉପତ୍ୟକା ମୁଖବନ୍ଧରେ ଶ୍ରୀ ସୁରେନ୍ଦ୍ର ମହାନ୍ତି ।

ଆନ୍ଦୋଳନ । ଏହି ଭାବଧାରାର ମୁଖ୍ୟ ପୁରୋଧା ସ୍ୱର୍ଗତଃ ଭଗବତୀ ଚରଣ ପାଣିଗ୍ରାହୀଙ୍କ ନେତୃତ୍ୱରେ ଯୁଗଚେତନାକୁ ଲକ୍ଷ୍ୟ ରଖି ୧୯୩୫ରେ 'ନବଯୁଗ ସାହିତ୍ୟ ସଂସଦ' ନାମରେ ଏକ ସାହିତ୍ୟାନୁଷ୍ଠାନ ଗଢ଼ି ଉଠିଥିଲା । ଦେଶରେ ନବ ସଂସ୍କୃତି ଓ ନବ ସଭ୍ୟତାର ସ୍ରୋତ ଖେଳାଇ ଦେବାହିଁ ସଂସଦର ଉଦ୍ଦେଶ୍ୟ ଥିଲା । ସାହିତ୍ୟରେ ବୈପ୍ଳବିକ ପରିବର୍ତ୍ତନ ଆଣିବା ନିମନ୍ତେ ପ୍ରଗତିବାଦୀ ଲେଖକମାନେ ବଦ୍ଧପରିକର ଥିଲେ । ବିଭିନ୍ନ ପ୍ରକାର କୁସଂସ୍କାର, ଅନ୍ଧବିଶ୍ୱାସ ଏବଂ ରୋମାଣ୍ଟିକ୍ ପ୍ରେମପ୍ରଣୟକୁ ତ୍ୟାଗକରି ରୁଚିପୂର୍ଣ୍ଣ ବୈଜ୍ଞାନିକ ଚିନ୍ତାସମ୍ବଳିତ ପ୍ରଗତିଶୀଳ ସାହିତ୍ୟ ସୃଷ୍ଟି କରିବା ସେତେବେଳେ ସାହିତ୍ୟିକଙ୍କ ମନକୁ ଖୁବ୍ ଆଚ୍ଛନ୍ନ କରିଥିଲା । ଉତ୍କଳ ସାହିତ୍ୟ, ସହକାର, ନବଭାରତ ଇତ୍ୟାଦିରେ 'ନବଯୁଗ ସାହିତ୍ୟ ସଂସଦ'ର ଆଭିମୁଖ୍ୟ ସମ୍ପର୍କରେ ବ୍ୟାପକ ଆଲୋଚନା ସ୍ଥାନିତ ହୋଇଛି । କବିତା କ୍ଷେତ୍ରରେ ସଚ୍ଚିଦାନନ୍ଦ ରାଉତରାୟ, ଅନନ୍ତ ପଟ୍ଟନାୟକ ଓ କାଳନ୍ଦୀଚରଣ ପାଣିଗ୍ରାହୀଙ୍କଠାରୁ ଏହି ମାନବବାଦୀ ବୈପ୍ଳବିକ ଚିନ୍ତାଧାରା ଆରମ୍ଭ ହୋଇ ୧୯୪୦-୫୦ ମଧ୍ୟରେ ଶ୍ରୀ ମନମୋହନ ମିଶ୍ର, ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ, ଶ୍ରୀ କୁଞ୍ଜବିହାରୀ ଦାଶ ଏବଂ ଶ୍ରୀ ସୁନନ୍ଦ କର ପ୍ରଭୃତିଙ୍କ ସୃଷ୍ଟିରେ ଏହି ପ୍ରଗତିବାଦୀ ଚିନ୍ତାଧାରା ତ୍ୱରାନ୍ୱିତ ହୋଇଛି । ସଚ୍ଚିଦାନନ୍ଦ ରାଉତରାୟଙ୍କର କବିତା ସଙ୍କଳନ 'ଅଭିଯାନ' 'ବାଜିରାଉତ', କାଳନ୍ଦୀଚରଣଙ୍କ କବିତା 'ଜୀବନର ସ୍ୱର୍ଣ୍ଣ', 'ଜୟ ଭଗବାନ', 'ଯାଦୁଘର', 'ଛୁରିଟିଏ ଲୋଡ଼ା' ଏବଂ 'ଆଗାମୀ' ଆଦିରେ ଓ ଅନନ୍ତ ପଟ୍ଟନାୟକଙ୍କର 'ରକ୍ତଶିଖା' ଓ 'ଶାନ୍ତିଶିଖା' ଆଦି ଅନେକ କବିତାରେ ପ୍ରଗତିବାଦୀ ଚେତନା ସ୍ପଷ୍ଟ ହୋଇଉଠିଛି । ସମସାମୟିକ କବି ମାନସିଂହ ନିଜ କବିତାରେ ଏହି ପ୍ରଗତିଶୀଳ ଭାବନାକୁ ଏକାନ୍ତଭାବେ ଆବୋରି ବସି ନ ଥିଲେ ବି ତାଙ୍କ କବିତା ଏହି ଚେତନାକୁ ସଂପୂର୍ଣ୍ଣ ପରିହାର କରିନାହିଁ, ଏହାହିଁ ଆଲୋଚନାର ବିଷୟ ।

## ମାନସିଂହଙ୍କ କବିତାରେ ପ୍ରଗତିବାଦୀ ସ୍ୱରର ଝଙ୍କାର—

ମାନସିଂହ ନିଜେ ସ୍ୱୀକାର କରିଛନ୍ତି, "ମାନବ ସମାଜର ସେବାଲାଗି ବିଧାତା କବି ହସ୍ତରେ ଅପାର ଯେଉଁ ବ୍ୟାପକ ଅସ୍ତ୍ର ଦେଇଛି, କବି ତାର ସଦ୍-ବ୍ୟବହାର କରିବା ଉଚିତ × × × ।" ପୁନଶ୍ଚ ସେ କହିଛନ୍ତି, "ଅନ୍ୟାୟ ବିରୁଦ୍ଧରେ ପ୍ରତିବାଦ କରି ଯାତନା ବରଣ କରିବା ସେମାନଙ୍କର ଜନ୍ମଗତ ଗୌରବ, ସେମାନଙ୍କର ପ୍ରାକୃତିକ ଧର୍ମ × × × କବି ଓ ଲେଖକ କେବଳ ଅନ୍ୟାୟର ପ୍ରତିବାଦ କରିବେ ନାହିଁ ; ସେମାନେ ଜାତିକୁ ନ୍ୟାୟର, ଧର୍ମର,

ଆଦର୍ଶର ପନ୍ଥା ମଧ୍ୟ ଦେଖାଇଦେବେ ।” (୬) ମାନସିଂହ ଯାହା କହୁଥିଲେ ତାହା କାର୍ଯ୍ୟରେ ପରିଣତ କରି ଦେଖାଇ ଦେଉଥିଲେ । ଏହାହିଁ ଥିଲା ତାଙ୍କ ବ୍ୟକ୍ତିତ୍ୱର ଅନ୍ୟତମ ବୈଶିଷ୍ଟ୍ୟ ।

ମାନସିଂହଙ୍କ ଏହି ପ୍ରଗତିବାଦୀ ଚିନ୍ତାଧାରା ତାଙ୍କର ୧୯୨୬ଠାରୁ ୧୯୩୫ ମଧ୍ୟରେ ଲେଖା ହୋଇଥିବା ‘ସେଦିନର କବିତା’ ପୁସ୍ତକରେ ଲିପିବଦ୍ଧ ହୋଇଛି । କବି ମାନସିଂହ ଆମ ସମାଜର ଦଳିତ, ନିଷ୍ପେଷିତ ଶ୍ରେଣୀ ପ୍ରତି ଅଧିକ ଆକୃଷ୍ଟ ହୋଇଛନ୍ତି । ରିକ୍ସାବାଲା, ମଜଦୁର, କୃଷକ, ବଢ଼େଇ, କିରାଣୀ, କଳାସେବକ, ସ୍କୁଲମାଷ୍ଟର ପ୍ରଭୃତି ଆମ ସମାଜରେ ନିଷ୍ପେଷଣ ଭିତରେ ଅସହାୟ ହୋଇ-ପଡ଼ିଛନ୍ତି । ଏ କବିତାରୁ କବି ମାନସିଂହଙ୍କର ପ୍ରଗତିବାଦୀ କାବ୍ୟଚେତନାର ଜ୍ୱଳନ୍ତ ପ୍ରମାଣ ମିଳିଥାଏ । ଯେପରିକି ‘ରିକ୍ସାବାଲା’ କବିତାରେ “କେ ଦିନ ବଂଚେ କେ ଦିନ ନାହିଁ/ନ ଥିଲେ ଉପବାସ । ଉପାସରେ ବି ରିକ୍ସା ଭିଡ଼େ/ ନ ହେଲେ କାହୁଁ ଗ୍ରାସ ।” (୭) କିମ୍ବା “ଜଣେ ଲୋକର ଏତେ ଯେ ଧନ, ଶୂନ୍ୟ କୋଟି ଲୋକ/ଜଣେ ଲୋକର ଭୋଗବିଳାସ ଆଉ ସବୁରି ଭୋକ ।” (୮) ଏକ ବିସ୍ତିର ଲୋକ ହଜାର ଖଟି ଖଟିକା ମରେ/ଗୋଟିଏ ଲୋକ ବସି ବସି ତା ବାକ୍ସ ଭର୍ତ୍ତିକରେ । (୯) ଖଟି ଖଟି ଖଟି/ମନରେ ହୁଏ ପଡ଼ିବ ଅବା ଅଣ୍ଟା ମୋର ଫାଟି ।” (୧୦) ଲେଖକ ନିମାପଡ଼ାରେ ଶିକ୍ଷକ ଥିବାବେଳେ ଧାରାବାହିକ ଭାବରେ ‘ସହକାର’ ୨୩।୬, ୨୩।୭, ୨୩।୮, ୨୩।୯ ସଂଖ୍ୟାରେ ପ୍ରକାଶିତ । ଅର୍ଥାତ୍ ନଭେମ୍ବର ୧୯୪୨ଠାରୁ ଜାନୁୟାରୀ ୧୯୪୩—ଏକ ସାମୟିକ ଉଚ୍ଛ୍ୱାସ ଭାବରେ ଏହି ଭାବଧାରା କବିଙ୍କ ମନରେ ଦେଖାଦେଇ ହଠାତ୍ ଲିଭି ଯାଇଛି । ହୁଏତ ଏହା ତାଙ୍କର ଯୁବମାନସର ପ୍ରତିକ୍ରିୟା ହୋଇପାରିଥାଏ । ଏହି ପ୍ରଗତିବାଦୀ କାବ୍ୟମାନସ ପ୍ରତି ଆକୃଷ୍ଟ ହେବା ଯେପରି କବିଙ୍କର ସ୍ୱେଚ୍ଛାକୃତ ବାସନା ନ ଥିଲା । ଏହାଦ୍ୱାରା କବିଙ୍କର ସମାଜ ସଚେତନତା ଅଧିକ ସ୍ପଷ୍ଟ । ସମାଜର ଏହି ବୈଷମ୍ୟ ବିରୁଦ୍ଧରେ କବି ସ୍ୱର ଉତ୍ତୋଳନ କରିବାକୁ ଚାହିଁ ନ ଥିଲେ ବି ଏହି ତଳିଆ ଜୀବମାନଙ୍କ ସହିତ କବିତାରେ ଗଭୀର ଅନ୍ତରଙ୍ଗତା ସ୍ଥାପନ କରିପାରିଛନ୍ତି । କିରାଣୀ, ସ୍କୁଲ ଶିକ୍ଷକ ଏବଂ ମଜଦୁର ପ୍ରଭୃତିଙ୍କ ପାଇଁ ତାଙ୍କ

---

(୬) କବି ଓ କବିତା—ମାନସିଂହ ଗ୍ରନ୍ଥାବଳୀ, ଦ୍ୱିତୀୟଭାଗ, ପୃ-୫୬୦
(୭) ରିକ୍ସାବାଲା (ତଳିଆ ଜୀବର ବିଳାପ)—ଗ୍ରନ୍ଥାବଳୀ, ପୃ-୫୬
(୮) ମଜଦୁର (ତଳିଆ ଜୀବର ବିଳାପ)—ଗ୍ରନ୍ଥାବଳୀ, ପୃ-୫୭
(୯) କିରାଣୀ—ଗ୍ରନ୍ଥାବଳୀ, ପୃ-୬୧

ମନରେ ଗଭୀର ସମବେଦନା ଭରପୂର ହୋଇ ରହିଛି । ଆମ ସମାଜର ଦୁର୍ବଳ ଶ୍ରେଣୀମାନଙ୍କ ପାଇଁ ସେତେବେଳେ ହୁଏତ ତାଙ୍କ ଅନ୍ତର୍ଦହନର ସୀମା ନ ଥିଲା । କିନ୍ତୁ ଏହି ଚେତନା ପରବର୍ତ୍ତୀ କାବ୍ୟକବିତାରୁ ସମ୍ପୂର୍ଣ୍ଣ ବିଦାୟ ନେଇଛି । ତେଣୁ ସେ ମୁଖ୍ୟତଃ ପ୍ରଗତିବାଦୀ କବି ଭାବରେ ଆଖ୍ୟାତ ନ ହୋଇ ରୋମାଣ୍ଟିକ୍ କବି ମାନସିଂହ ଭାବରେ ବେଶ୍ ସୁପରିଚିତ ।

ନିମାପଡ଼ାରେ ଶିକ୍ଷକତା କରୁଥିବାବେଳେ କବି ଏକ ବିଚିତ୍ର ଆତ୍ମଜ୍ଞାନର ଉପଲବ୍‌ଧି କରିବାର ସୁଯୋଗ ପାଇଥିଲେ । "କବି ହିଁ ଜାତିର ପ୍ରକୃତ ଶିକ୍ଷକ । ଜୀବନର ସ୍ପଷ୍ଟ ମତ ଦେଇ ଅକୁତୋଭୟ ଭାବରେ ସତ୍ୟକଥା କହିବାକୁ ଯାଇ କର୍ତ୍ତୃପକ୍ଷଙ୍କ ହାତରୁ ମୁଁ ଯେ ମୋର ନ୍ୟାଯ୍ୟ ପ୍ରାପ୍ୟରୁ ବଞ୍ଚିତ ହୋଇ ବାରମ୍ବାର ଲାଞ୍ଛନା ଭୋଗ କରିଛି ; ତା ପଛରେ ମୋର ପ୍ରେରଣାର ଉତ୍ସ ସେହି ଅଜ୍ଞାତ ଗର୍ଭଲୀନ ନିମାପଡ଼ା—ଜୀବନରେ ଆତ୍ମପରୀକ୍ଷାଜନିତ ପ୍ରତିଜ୍ଞା × × × ମୋର ସମଗ୍ର ସାମାନ୍ୟ ବ୍ୟକ୍ତିତ୍ୱ ଅଙ୍କ କେବଳ ସେହି ବୀଜର ଲତା ।" (୧୦) ହୁଏତ ନିମାପଡ଼ାରେ ଶିକ୍ଷକତା କରିବା ସମୟରେ କବିଙ୍କର ସାମାଜିକ ଚେତନା ଉଦ୍ବୁଦ୍ଧ ହୋଇଛି । ସମସାମୟିକ ପ୍ରଗତିବାଦୀ କାବ୍ୟ ଆନ୍ଦୋଳନ ତାଙ୍କର 'ଢଳିଆ ଜୀବର ବିଳାପ' ସୃଷ୍ଟିର ମୂଳ ଉତ୍ସ ହୋଇପାରିଥାଏ । ଏହି କାବ୍ୟ-ଚେତନାର ପରବର୍ତ୍ତୀ ପର୍ଯ୍ୟାୟରେ ମାନସିଂହଙ୍କ କବିତାକୁ ରୋମାଣ୍ଟିକ୍ ଭାବବିଳାସ ଓ ପ୍ରଣୟସୁଲଭ ଅନୁଚିନ୍ତା ଅଧିକାର କରି ବସିଛି ଓ କ୍ରମଶଃ ଏହାକୁ ଇନ୍ଦ୍ରିୟଗ୍ରାହ୍ୟ ଜଗତରୁ ଏକ ଅତୀନ୍ଦ୍ରିୟ ରାଜ୍ୟକୁ ଆଗେଇ ନେଇଛି । ତେଣୁ ମାନସିଂହଙ୍କୁ ସାମ୍ୟବାଦୀ କବି ଭାବରେ ଆଖ୍ୟାୟିତ ନ କରି ରୂପ ଏବଂ ପ୍ରଣୟର କବି ଭାବରେ ଓଡ଼ିଆ ସାହିତ୍ୟର ଇତିହାସ ପରିଚିତ କରାଇଛି ।

ସମୟର ସ୍ପଷ୍ଟ ପ୍ରତିବିମ୍ବ ସାହିତ୍ୟ ମଧ୍ୟରେ ପ୍ରତିବିମ୍ବିତ ହୋଇଥାଏ । ପ୍ରତ୍ୟେକ ଯୁଗରେ ଯୁଗମାନସର ସ୍ପନ୍ଦନ ସେ ଦେଶର ସାହିତ୍ୟରେ ସ୍ପନ୍ଦିତ ହୋଇଥାଏ । ଓଡ଼ିଆ ପ୍ରଗତିବାଦୀ କାବ୍ୟ ଆନ୍ଦୋଳନରୁ ତାହାର ସ୍ପଷ୍ଟ ସୂଚନା ମିଳିଥାଏ । ଯେଉଁ ସମସ୍ତ ସଂଗ୍ରାମର ସ୍ତର ଓ ପରିବର୍ତ୍ତନର ଭିତର ଦେଇ ବର୍ତ୍ତମାନ ଭାରତ ଗଢି କରିଛି, ଓଡ଼ିଆ ସାହିତ୍ୟରେ ସେ ସମସ୍ତ ପରିସ୍ଥିତିଜନିତ ଆଶା, ଆକାଂକ୍ଷା, ସ୍ୱପ୍ନ ଓ ବିଫଳତା ଲିପିବଦ୍ଧ ହୋଇ ରହିଛି । ଅନ୍ୟାନ୍ୟ ପ୍ରାଦେଶିକ ସାହିତ୍ୟ ପରି ଓଡ଼ିଆ ସାହିତ୍ୟ ଯେ ଜୀବନ୍ତ, ଗତିଧର୍ମୀ ଓ ପ୍ରଗତିଶୀଳ ; ତାହା ମଧ୍ୟ ପ୍ରମାଣିତ ହୋଇପାରିଛି । କବିର ଚେତନା ସମାଜର ବହିରଙ୍ଗ ଓ କାଳ୍ପନିକ ରୂପକୁ ସମ୍ବଳ ନ କରି ଜୀବନର ଗଭୀର ଚେତନା ଓ ଦେଶକାଳପାତ୍ରର

(୧୦) ଶିକ୍ଷାବିତ୍‌ର ଗାଥା—ଡକ୍ଟର ମାୟାଧର ମାନସିଂହ, ପୃ-୬୮

ପ୍ରକୃତ ଉପରେ ପ୍ରତିଷ୍ଠିତ ହେବା ହିଁ ପ୍ରଗତିବାଦୀ ସାହିତ୍ୟର ଲକ୍ଷଣ । ସାହିତ୍ୟକୁ ପ୍ରଗତିଶୀଳ ଓ ବସ୍ତୁବାଦୀ ହେବାକୁ ହେଲେ ତାହାକୁ ଅଧିକ ସହିଷ୍ଣୁ, ସଂଗ୍ରାମଶୀଳ ଓ ବଳିଷ୍ଠ ଆଶାବାଦୀ ହେବାକୁ ପଡ଼ିବ । ସେଥିପାଇଁ କାଳନ୍ଦୀଚରଣଙ୍କ ଭାଷାରେ କହିବାକୁ ହେବ—

"ଯେ ବାଣୀ ନ କହେ ମଣିଷ ଜାତିର ଶୋଣିତ ବ୍ୟଥା/ସେ ନୋହୁ ମୋ ଭାଷା ସେ ବାଣୀ ମୋହର ନ ହେଉ କଥା × × × ସେ ବାଣୀ ମୋହର ଲେଖନୀ ଧରମ ସେ ମୋର ତୃଷ୍ଣା/ଦୁନିଆ ଗୋଟାର ଅଗତି ଉପରେ ବସାଉ କ୍ରୁଦ୍ଧ/ପଶୁ ପ୍ରବୃତ୍ତି ଚିର ପିଶାଚ ଘାଇଲେ ମଣିଷ ଗଢ଼ୁ / ସେହି ବାଣୀ ମୋର ଦୁନିଆ ମଧ୍ୟରେ କାନରେ ପଡ଼ୁ । (୧୧)

କିନ୍ତୁ ପ୍ରାକ୍ ସ୍ୱାଧୀନତା କାଳରେ କବି ମାନସିଂହ ତାଙ୍କ ରଚିତ 'କମଳାୟନ' କାବ୍ୟରେ ପୁଣିଥରେ ମଣିଷର ଶୋକ ଦୁଃଖ ଓ ହତାଶାର ବୃତ୍ତିରେ ପ୍ରାଣ ସଞ୍ଚାର କରିଛନ୍ତି । ତାଙ୍କ କାବ୍ୟ ଚିନ୍ତାରେ ଅବଦମିତ ଏହି ସ୍ୱର ପ୍ରକାଶ ପାଇବାରେ କିଛି ବୈଚିତ୍ର୍ୟ ନ ଥିଲେ ବି ତାହା ଓଡ଼ିଆ ସାହିତ୍ୟ ପାଇଁ କିଛି ନୂତନ ସନ୍ଦେଶ ଦେଇନାହିଁ । ଭାରତର ମୁକ୍ତି ସଂଗ୍ରାମର ପୀଠିକା ଭାବରେ ଆଧାରିତ ଏହି କାବ୍ୟ ସତ୍ୟବାଦୀ କାବ୍ୟସ୍ୱରର ଏକ ପ୍ରତିଫଳନ ବ୍ୟତୀତ ଅନ୍ୟକିଛି ନୁହେଁ । କାଳିଦାସଙ୍କ ରଘୁବଂଶ ବା ସେକ୍‌ସପିୟରଙ୍କ ନାଟକାବଳୀ ପରି ମାନସିଂହଙ୍କର 'କମଳାୟନ' କାବ୍ୟ କାଳୋତ୍ତୀର୍ଣ୍ଣ ହୋଇପାରିଛି । ଏଥିରେ ମାନବୀୟ ନିଃସ୍ୱାର୍ଥପରତା, ସାମ୍ୟ, ମୈତ୍ରୀର କରୁଣା ଅନୁରଣିତ ହୋଇଉଠିଛି । ସମଗ୍ର ପୃଥିବୀକୁ ଏକ ପରିବାର ରୂପେ ପରିକଳ୍ପନା କରି ଅହିଂସା ମନ୍ତ୍ରରେ ଦୀକ୍ଷିତ କରିବାକୁ ଚେଷ୍ଟା କରିଛନ୍ତି । ଦଳ ଅପେକ୍ଷା ମଣିଷ ବଡ଼ । ସେଥିପାଇଁ କମଳ ତା'ର ରାଜନୈତିକ ଦଳ ଛାଡ଼ି ମାନବ ଜାତିର ସେବାରେ ବାହାରି-ପଡ଼ିଛନ୍ତି । 'କମଳାୟନ' କାବ୍ୟ ମାନସିଂହଙ୍କର ପରିପକ୍ୱ ଲେଖନୀର ମୁଦ୍ରାଙ୍କ ବହନ କରିଛି । ଏହାର ପରିକଳ୍ପନା, ଗଠନଶୈଳୀ ଓ ଦିଗ୍‌ଦର୍ଶନ କବିଙ୍କର ଅନ୍ୟାନ୍ୟ କାବ୍ୟ କବିତାଠାରୁ ଭିନ୍ନ । ପାଶ୍ଚାତ୍ୟ ସଭ୍ୟତାର ସାମ୍ପ୍ରତିକ ସଙ୍କଟ ଓ ମାନସିକ ବିପର୍ଯ୍ୟୟକୁ ଏକ ନୂତନ ବୌଦ୍ଧିକ ବିଚାର ଓ ଶକ୍ତିଶାଳୀ ଭାଷା ମାଧ୍ୟମରେ ପ୍ରକାଶ କରି ଇଲିଅଟ୍ ଓ ଅନ୍ୟମାନେ ପୃଥିବୀର କାବ୍ୟ ଜଗତରେ ଏକ ଯୁଗାନ୍ତର ସୃଷ୍ଟି କରିଛନ୍ତି । ଆମ ଦେଶର ସମସ୍ୟା ଓ ପରିବେଶ ପାଶ୍ଚାତ୍ୟ ଜଗତଠାରୁ ଅନେକାଂଶରେ ଭିନ୍ନ । 'କମଳାୟନ' କାବ୍ୟରେ କେତେକ ଆନ୍ତର୍ଜାତିକ ଚରିତ୍ର ଓ ଘଟଣାର ସମାବେଶ ହୋଇଥିଲେ ହେଁ ମୁଖ୍ୟତଃ ଏହା

---

(୧୧) ମୋର ବାଣୀ—କାଳିନ୍ଦୀ ରଚନାବଳୀ

ସ୍ୱାଧୀନତାର ପ୍ରାକ୍‌କାଳ ଓ ପରବର୍ତ୍ତୀ କାଳ ଓଡ଼ିଶାର ଏକ ଚିତ୍ର । ସମସାମୟିକ ପରିବେଶ ଓ ଘଟଣାବଳୀର ବର୍ଣ୍ଣନା ସଙ୍ଗେ ସଙ୍ଗେ ଏକ ଅଭିଜ୍ଞ ଓ ଆଦର୍ଶପ୍ରବଣ କବିମାନସର ପ୍ରତିଫଳନ କାବ୍ୟର ଛନ୍ଦେ ଛନ୍ଦେ ଦେଖିବାକୁ ମିଳେ । "କୌଣସି ଗୋଷ୍ଠୀ, ଦଳ ବା ଇଜମ୍‌ର ପ୍ରଚାରକ ରୂପେ ଠିଆ ହେବା ମୋର ସ୍ୱଭାବ ବିରୁଦ୍ଧ । ମୁଁ ମୋର କମଳାୟନ କାବ୍ୟରେ ଏହାହିଁ ଦେଖାଇବାକୁ ଯାଇଛି ଯେ, ଦଳ ଓ ଦେଶ ଅପେକ୍ଷା ବ୍ୟକ୍ତି ଓ ମାନବ ବଡ଼ । ସେଥିପାଇଁ କମଳ ତାର ରାଜନୈତିକ ଦଳ ଛାଡ଼ି ବିରାଟ ମାନବ ଜାତିର ସେବାରେ ବାହାରି ପଡ଼ିଛି । କୌଣସି ସ୍ଲୋଗାନ ମନୁଷ୍ୟର କଲ୍ୟାଣ ଆଣିପାରିବ ନାହିଁ ଯେପରି ଆଣିବ ବ୍ୟକ୍ତିର ଚାରିତ୍ରିକ ଶୁଚିତା, ନିଃସ୍ୱାର୍ଥପରତା, ସତ୍ୟପ୍ରତି ବିଶୁଦ୍ଧ ଅନୁରାଗ ।" (୧୨)

କାବ୍ୟନାୟକ କମଳର ଜୀବନାଦର୍ଶ କାବ୍ୟର ମୁଖ୍ୟ ଉପଜୀବ୍ୟ ହୋଇଥିବାରୁ କାବ୍ୟର ନାମକରଣ 'କମଳାୟନ' ରଖାଯାଇଛି । ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନେଇ ଯେ କାବ୍ୟଟି ଲେଖାଯାଇଛି ତାହା ଆରମ୍ଭରୁ ଅନୁମାନ କରିହୁଏ । କାବ୍ୟର ପ୍ରଥମ ସର୍ଗ 'ଉତ୍କଳ ଓ ଗୋପବନ୍ଧୁ' ଏହି ଅନୁମାନକୁ ଅଧିକ ସ୍ପଷ୍ଟ କରିଛି । ଉତ୍କଳର ଦୁର୍ଭିକ୍ଷ ପ୍ରପୀଡ଼ିତ ନିରନ୍ନ ଜନତାଙ୍କ ସେବାରେ ପ୍ରାଣପାତ କରୁଥିବା "ସଖା ଦୀନ ଜନତାର/ପରଦୁଃଖେ ଲାଗି ହୃଦ ହୋଇ ଅଶ୍ରୁଧାର, ବହେ ଯାର ଅବିରତ" ସେହି ଉତ୍କଳମଣି ଗୋପବନ୍ଧୁଙ୍କର ଭାବମୂର୍ତ୍ତି କାବ୍ୟର ଅନ୍ତର୍ନିହିତ ସ୍ୱର । ଗୋପବନ୍ଧୁଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ କାବ୍ୟର ନାୟକ କମଳ ଦେଶ ଓ ଦୀନ ଜନତାର ସେବାକୁ ନିଜ ଜୀବନର ଗତିପଥ ରୂପେ ବାଛି ନେଇଛି ଏବଂ ବହୁ ବାଧାବିଘ୍ନ ସତ୍ତ୍ୱେ ଶେଷ ଜୀବନ ପର୍ଯ୍ୟନ୍ତ ଏହି ଆଦର୍ଶରେ ଅଟଳ ରହିଛି । ଜୀବନର ବହୁ ସମସ୍ୟା ଓ ଦ୍ୱନ୍ଦ୍ୱର ସମ୍ମୁଖୀନ ହୋଇ ସ୍ୱକୀୟ ବିଚାର-ବୁଦ୍ଧିରେ ସେ ସବୁର ସମାଧାନ କରିବା କମଳ ଚରିତ୍ରର ଏହି ବିଶେଷତ୍ୱ । ଦରିଦ୍ର ପିତାମାତା ଓ ବିଧବା ଭଗିନୀ ପ୍ରତି ସାଂସାରିକ କର୍ତ୍ତବ୍ୟବୋଧ ଓ ଦେଶସେବା ମଧ୍ୟରେ ଯେତେବେଳେ ତା' ମନରେ ଦ୍ୱନ୍ଦ୍ୱ ଦେଖାଦେଇଛି, ସେ ଶିକ୍ଷକତା ଗ୍ରହଣ କରି ପରିବାର ପୋଷଣ ଦାୟିତ୍ୱକୁ ଅଗ୍ରାଧିକାର ଦେଇଛି । ପରେ ରାଜନୈତିକ ଜୀବନର ନୀଚ ସ୍ୱାର୍ଥାନ୍ୱେଷଣ, ପରସ୍ପର ପ୍ରତି ଈର୍ଷା ଓ ଶଠତାରେ କ୍ଷୁବ୍ଧ ହୋଇ ଜନସେବା ଉଦ୍ଦେଶ୍ୟରେ ରାଜନୈତିକ ଦଳ ତ୍ୟାଗ କରିବା ପଛରେ ଏହି ମାନବିକତାର ପ୍ରେରଣା ବିଦ୍ୟମାନ । କମଳ ଓ କରୁଣାଙ୍କର ନ୍ୟୁୟର୍କ ଅବସ୍ଥାନ କାଳରେ ବହୁ ଦେଶ ଓ ଜାତିର ଲୋକଙ୍କ ସମ୍ପର୍କରେ ଆସିବା ଦ୍ୱାରା ଦୃଷ୍ଟିକୋଣ ପ୍ରସାରିତ ହୋଇଛି ଏବଂ ବିଶ୍ୱମୈତ୍ରୀ ଭାବରେ ସେମାନେ ଉଦ୍‌ବୁଦ୍ଧ

(୧୨) ମୁଁ କାହିଁକି ଲେଖେ—ମାନସିଂହ ସୃଷ୍ଟି ସମୀକ୍ଷା—ପୃ. ୭

ହୋଇଛନ୍ତି । ଦ୍ୱିତୀୟ ମହାଯୁଦ୍ଧ ସମୟରେ ଭାରତୀୟ ଜାତୀୟ କଂଗ୍ରେସର ଅସହଯୋଗ ସତ୍ତ୍ୱେ କମଳ ଓ କରୁଣାଙ୍କର ସ୍ୱେଚ୍ଛାସେବକ ଭାବେ ଯୁଦ୍ଧରେ ଯୋଗଦାନ ମୂଳରେ ଏହି ବିଶ୍ୱମୈତ୍ରୀ ଭାବ ହିଁ ପ୍ରାଧାନ୍ୟ ଲାଭ କରିଛି ।

"ଦେଶରୁ ମାନବ ବଡ଼/ମାନବର ଦୁଃଖ
ଡାକୁଛି ଆଶ୍ରୟ ପାଇଁ/ହୋଇ ଲକ୍ଷ ମୁଖ ।"

'କମଳାୟନ' – ପୃ. ୨୭୩

ଦେଶ, ଜାତି, ଧର୍ମ ସବୁରି ଉପରେ ମାନବ ହିଁ ସତ୍ୟ । ଏହା ହେଉଛି 'କମଳାୟନ' କାବ୍ୟର ଅନ୍ତର୍ନିହିତ ବାଣୀ । କାବ୍ୟର ଦ୍ୱିତୀୟ ଭାଗରେ ଦେଶ ବିଦେଶରେ ଶିକ୍ଷିତା ଓ ଆମେରିକାନ ଧାତ୍ରୀ ମିସ୍ ଓ୍ୱାଟସନ୍ ଦ୍ୱାରା ପ୍ରତିପାଳିତା କମଳ ଓ କରୁଣାର ଏକମାତ୍ର ସନ୍ତାନ ବିଶ୍ୱମିତ୍ରାର ରୁଷୀୟ ଯୁବକ ସେପିଲକ୍ ଓ ଇଂରେଜ ବାରନ ମାଲ୍‌କମ୍ ସହ ଘନିଷ୍ଠ ଆତ୍ମୀୟତା—ଏହି ବିଶ୍ୱ ମାନବିକତାର ଭାବକୁ ଅଧିକ ପଲ୍ଲବିତ ଓ ପ୍ରସାରିତ କରିଛି । ହଙ୍ଗେରୀ ଉପରେ ରୁଷର ସାମ୍ରାଜ୍ୟବାଦୀ ଆକ୍ରମଣ କାଳରେ ହଙ୍ଗେରୀ ପକ୍ଷ ସମର୍ଥନ କରି ରୁଷ ଯୁବକ ସେପିଲକ୍‌ର ଆତ୍ମାହୁତି ଓ ହଙ୍ଗେରୀୟ ସାମରିକ ନେତାଙ୍କର ସ୍ତ୍ରୀ ମେରୀୟାର ବିଶ୍ୱମିତ୍ରା ନିକଟକୁ ସହାନୁଭୂତି ସୂଚକ କରୁଣ ପତ୍ର ଏହି ବିଶ୍ୱକୁଟୁମ୍ବିତା ଭାବକୁ ଅଧିକ ପ୍ରକଟିତ କରିଛି ।

କାବ୍ୟନାୟିକା କରୁଣା ମଧ୍ୟ ଏକ ଆଦର୍ଶ ଚରିତ୍ର । ସଂତ୍ରାସିକା ଦଳଭୁକ୍ତ ହୋଇ ଗିଓ୍ୱାଟ୍‌ମନଙ୍କୁ ହତ୍ୟାକରି ଦଶବର୍ଷ କାରାବରଣ କରିବା ପଛରେ କରୁଣାର କୌଣସି ରାଜନୈତିକ ବା ଦେଶପ୍ରେମର ପ୍ରେରଣା ଅପେକ୍ଷା ପିତୃ ଅପମାନର ପ୍ରତିଶୋଧ ମନୋବୃତ୍ତି ହିଁ ମୁଖ୍ୟ । ପିତାଙ୍କର ମୃତ୍ୟୁପରେ ଉତ୍ତରାଧିକାର ସୂତ୍ରେ ପାଇଥିବା ବିପୁଳ ସମ୍ପତ୍ତି ସ୍ୱାମୀଙ୍କ ପଦତଳେ ଅର୍ପଣ କରି ତାଙ୍କର ପଦାଙ୍କ ଅନୁସରଣ କରିବାରେ ହିଁ ସେ ଜୀବନର ପରମ ତୃପ୍ତି ଓ ସାର୍ଥକତା ଅନୁଭବ କରିଛି । କରୁଣାକୁ ପାରଂପରିକ ଭାରତୀୟ ନାରୀ ଚରିତ୍ରର ଏକ ପ୍ରତୀକ ରୂପେ ଗ୍ରହଣ କରାଯାଇପାରେ ।

ସ୍ୱଦେଶପ୍ରୀତି ଏବଂ ଜାତୀୟ ସଂସ୍କୃତି ପରମ୍ପରା ପ୍ରତି ଏକ ସଂସ୍କାରଶୀଳ ମନର ଗଭୀର ମମତାବୋଧ ମାନସିଂହଙ୍କର ଅଧିକାଂଶ ସାହିତ୍ୟ କୃତିରେ ଦେଖିବାକୁ ମିଳେ । କବିଙ୍କର ଏହି ଦେଶପ୍ରୀତି କିନ୍ତୁ ସ୍ୱଦେଶର ଅନ୍ଧ ସ୍ତାବକତା ନୁହେଁ । 'କମଳାୟନ' କାବ୍ୟରେ ନିଜ ଦେଶର ନାନା କୁସଂସ୍କାର, ଜାତିଗତ ଓ ଧର୍ମଗତ ବିଭେଦ ବିରୁଦ୍ଧରେ କବି ତୀବ୍ର ମନ୍ତବ୍ୟ ପ୍ରକାଶ କରିବା ସଙ୍ଗେ ସଙ୍ଗେ ପାଶ୍ଚାତ୍ୟ ସଭ୍ୟତାରେ ଯାହାକିଛି ସୁନ୍ଦର ଓ ମହିମାମୟ ମୁକ୍ତକଣ୍ଠରେ ତାହାର

ପ୍ରଶଂସା କରିଛନ୍ତି । କବିଙ୍କର ମୁକ୍ତ ମନ ଓ ଉଦାର ମାନବବାଦୀ ଦୃଷ୍ଟିକୋଣ 'କମଳାୟନ' କାବ୍ୟରେ ବିଶେଷଭାବେ ଲକ୍ଷଣୀୟ । କିନ୍ତୁ ନିଜ ଦେଶର ମହାନ ସଂସ୍କୃତି ଓ ଆଧ୍ୟାତ୍ମିକ ପରମ୍ପରା ସମ୍ପର୍କରେ ସେ ସର୍ବଦା ସଚେତନ । "ଏହି ଭାରତବର୍ଷ ଓ ଓଡ଼ିଶା ମାଟିରେ ଭୂମିଷ୍ଠ ହୋଇଥିଲି । ତେଣୁ ଏ ମୋର ମାତୃଭୂମି । କିନ୍ତୁ ମୋର ଚିତ୍ତବୃତ୍ତି ଓ ଆତ୍ମାର ମାତୃଭୂମି ରୂପେ ମୁଁ ଯେ ବହୁକାଳ ଧରି ଇଂଲଣ୍ଡ ବା ୟୁରୋପୀୟ ବା ସେହି ସୂତ୍ରରେ ବିଶ୍ୱସଭ୍ୟତାକୁ ବରିନେଇଛି ଏହା କହିବାରେ ମୋର ସଂକୋଚ ନାହିଁ ।" (୧୩) ବିଶ୍ୱ ଜୀବନ ପ୍ରତି ଗଭୀର ପ୍ରୀତି ଓ ବିଶ୍ୱସତ୍ତା ସହିତ ଗଭୀର ପରିଚୟ, ଆନ୍ତର୍ଜାତିକ ସମାଜ ଚେତନା ଏବଂ ନିରାସକ୍ତ ମୋହମୁକ୍ତ ଦୃଷ୍ଟି 'କମଳାୟନ' କାବ୍ୟର ମୁଖ୍ୟ ସ୍ୱର ।

ନିଜର ଐତିହ୍ୟକୁ ଭୁଲିଯାଇ ପାଶ୍ଚାତ୍ୟ ଶିଳ୍ପ ଓ ଯାନ୍ତ୍ରିକ ସଭ୍ୟତାର ବହିରଙ୍ଗରେ ଆତ୍ମବିସ୍ମୃତ ପ୍ରାଚ୍ୟ ଯୁବକଙ୍କ ପ୍ରତି କବିଙ୍କର କଟାକ୍ଷ ତୀବ୍ର ଓ ଶ୍ଳେଷାତ୍ମକ ।

"ବିଚଳିତ ମନ ଏବେ ଏସିଆ ଯୁବକେ
ନ ପଶୁରି ନିଜ ରତ୍ନେ ଧାଆନ୍ତି ପୁଲକେ
ଦେଖିବାକୁ ଇଷ୍ଟାତୀୟ କୁତ୍ସିତ ସଭ୍ୟତା
ଇଉରୋପର ଦେଖେ ଫେରି ବର୍ଣ୍ଣି ସେହି କଥା ।"

କମଳାୟନ—୯ମ ସର୍ଗ

'ଧୂପ' ଓ 'ହେମଶସ୍ୟ' ପରେ କବିଙ୍କର ଲେଖନୀମୂନ ଯେ ଶୁଷ୍କ ହୋଇ ଯାଇନାହିଁ ତାର ପ୍ରମାଣ ମିଳେ ସୁନ୍ଦରୀ ବିଶ୍ୱମିତ୍ରାର ରୂପ ଓ ଚଳକାର ପ୍ରକୃତି ଚିତ୍ରଣରୁ । ଆଧୁନିକ ଜୀବନର ଚିତ୍ର ଦେଲାବେଳେ କେତେକ ଇଂରେଜୀ ଶବ୍ଦର ବ୍ୟବହାର ସ୍ୱାଭାବିକ ମନେହେଲେହେଁ କମଳାୟନ କାବ୍ୟରେ ଏହାର ବହୁଳ ପ୍ରୟୋଗ ହେତୁ କାବ୍ୟର ଭାଷା ସ୍ଥାନେ ସ୍ଥାନେ ଶ୍ରୁତିକଟୁ ମନେହୁଏ । କିନ୍ତୁ ଓଡ଼ିଆ କାବ୍ୟ ପରମ୍ପରାରେ ନୂତନତ୍ୱ ସୃଷ୍ଟିକରି ଆଧୁନିକ ଯୁଗର ପଟ୍ଟଭୂମିରେ ଏକ ପୂର୍ଣ୍ଣାଙ୍ଗ କାବ୍ୟ ରଚନା କରିବାରେ କବି ଯେଉଁ ସାହସିକ ପଦକ୍ଷେପ ନେଇଛନ୍ତି ସେ ତୁଳନାରେ ଏ ତ୍ରୁଟି ସାମାନ୍ୟ ମାତ୍ର । ସାମୟିକ ଯୁଗ ଓ ଜୀବନ ପ୍ରବାହକୁ ନେଇ ଏକ କାବ୍ୟ ଲେଖିବା କବିଙ୍କର ବହୁବର୍ଷ କଳ୍ପନାର ଫଳ ବୋଲି ସେ 'କମଳାୟନ' କାବ୍ୟର ଭୂମିକାରେ ଉଲ୍ଲେଖ କରିଛନ୍ତି "The great poet in writing himself, write his time.

(୧୩) ଶିକ୍ଷାବିତ୍‌ର ଗାଥା—ଡକ୍ଟର ମାୟାଧର ମାନସିଂହ, ପୃ-୪୬

(ପ୍ରତିଭାବାନ କବି ନିଜ ବିଷୟ ଲେଖୁ ଲେଖୁ ହୁଏ ତା ଯୁଗର ଶ୍ରେଷ୍ଠ ଲିପିକାର)" ଦାନ୍ତେ ଓ ସେକ୍ସପିୟରଙ୍କ ସମ୍ପର୍କରେ ଜଣେ ବିଶିଷ୍ଟ ସମାଲୋଚକଙ୍କର ଏହି ଉକ୍ତି କମଳାୟନ କାବ୍ୟ ପ୍ରତି ମଧ୍ୟ ପ୍ରଯୁଜ୍ୟ ।

'କମଳାୟନ'କୁ ଓଡ଼ିଆ ସାହିତ୍ୟରେ ଶ୍ରେଷ୍ଠ ସ୍ଥାନ ଦେବାକୁ ହୁଏ ତ ଅନେକ ଏକମତ ହୋଇ ନ ପାରନ୍ତି । ମାତ୍ର କାବ୍ୟ ଦୃଷ୍ଟିରୁ ଏହା ଅନନ୍ୟ-ସାଧାରଣ । ରଚନାକ୍ରମ ଓ ଭାବବସ୍ତୁ ଉଭୟ ଦିଗରୁ ଓଡ଼ିଆ ସାହିତ୍ୟରେ ଏହା ଏକ ସ୍ୱତନ୍ତ୍ର ମହିମାରେ ପ୍ରତିଷ୍ଠିତ । ଆଧୁନିକ ମନ ଓ ମନନର ସ୍ୱାକ୍ଷର ଇତିହାସ ଚେତନା ଘେନି ଏହା ଯେଉଁ ଗୌରବର ଅଧିକାରୀ ; ତାହା ଅସ୍ୱୀକାର କରି ହେବନାହିଁ । କବି ମାନସିଂହ ତାଙ୍କର ଓଡ଼ିଆ ସାହିତ୍ୟର ଇତିହାସରେ ସ୍ୱୀକାର କରିଛନ୍ତି—"କବିଙ୍କର ପ୍ରତ୍ୟେକଟି ବିଶିଷ୍ଟ କବିତା ଯେପରି ଏକ ଏକ ନୂତନ ଏକ୍ସପେରିମେଣ୍ଟ ବା ଉଦ୍ୟମ, 'କମଳାୟନ' ମଧ୍ୟ ସେହିପରି ଆଧୁନିକ ଯୁଗର ମହାକାବ୍ୟ ରଚନାର ଏକ ଚେଷ୍ଟା ।"

ମାନସିଂହ କେବଳ ପ୍ରେମ ଓ ପ୍ରଣୟର କବି ନ ଥିଲେ । ସେ ଆମର ପ୍ରାଚୀନ ସଂସ୍କୃତି ଓ ପରମ୍ପରାର ଧାରାକୁ ଏକ ଶୃଙ୍ଖଳିତ ନୂତନ ମାର୍ଗରେ ଚଳାଇ ନେଇଥିଲେ । ତାଙ୍କ ପରମ୍ପରାର ବୈଶିଷ୍ଟ୍ୟ ଥିଲା ଐତିହ୍ୟର ପୁନରୁତ୍ଥାନ । ଅତୀତ ପ୍ରତି ଏକ ମୋହମୁଗ୍ଧ ଚାହାଣୀ । 'କମଳାୟନ'ରେ ଜାତୀୟ ଆତ୍ମାର ଏକ ସର୍ବକାଳୀନ ଅଖଣ୍ଡ ସତ୍ତା ବିରାଜମାନ ଲାଭ କରିଛି । ମନୁଷ୍ୟ ଜୀବନରେ ପ୍ରେମ ଓ ମାନବିକ ସମ୍ପ୍ରୀତିର ଆଦର୍ଶ ଏଥିରେ ଆତ୍ମପ୍ରକାଶ କରିଛି । ମହାକାବ୍ୟର ଶୃଙ୍ଗାର, ବୀର, ଶାନ୍ତ ଆଦି ରସର ଅଭିବ୍ୟକ୍ତି, କମଳର ମହାନୁଭବ ଚରିତ୍ର ଚିତ୍ରଣ, ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନା, ବିବାହ, ଜନ୍ମ, ମୃତ୍ୟୁ ଆଦି ସାମାଜିକ କ୍ରିୟା ବା ବିରହ ମିଳନ ଆଦି ମାନବିକ ସୁଖଦୁଃଖର ବର୍ଣ୍ଣନା ଏଥିରେ ମୁଖ୍ୟ ସ୍ଥାନ ଅଧିକାର କରିଛି । ଜାତୀୟ ଜୀବନ ଯେତେବେଳେ କ୍ଳାନ୍ତ ହୋଇପଡ଼େ, ସେତେବେଳେ ନୂତନ ପ୍ରାଣ ସଞ୍ଚାର କରିବା ପାଇଁ ଜାତିର ଦୁର୍ଦ୍ଦିନରେ ମହାକାବ୍ୟ ରଚିତ ହୁଏ ।

ଓଡ଼ିଶା ତଥା ଭାରତ ଇତିହାସରେ କମଳାୟନ ରଚନାର କାଳ ଥିଲା ଏକ ଦୁର୍ଦ୍ଦିନର ସମୟ । ତତ୍କାଳୀନ ଜାତୀୟ ସଂଗ୍ରାମକୁ ପୃଷ୍ଠଭୂମି କରି ସେ କେତୋଟି ବାସ୍ତବ ଓ କାଳ୍ପନିକ ଚରିତ୍ରର ଅବତାରଣା କରିଛନ୍ତି । 'କମଳାୟନ' ସମ୍ପର୍କରେ ତାଙ୍କର ନିଜର ସ୍ପଷ୍ଟୋକ୍ତି ହେଲା—"ଯେ ପର୍ଯ୍ୟନ୍ତ ମୁଁ ସ୍ୱାର୍ଥର ଉପରକୁ, ସାମାଜିକ ଓ ବ୍ୟକ୍ତିଗତ ଜୀବନର ନାନା କ୍ଷୁଦ୍ର ଲାଳସାର ଉପରକୁ ଉଠିପାରି ନାହିଁ, ସେ ପର୍ଯ୍ୟନ୍ତ କେବଳ କୌଣସି ସ୍ଲୋଗାନ ଟାଇ,

କୌଣସି ଇଜମ୍‌ର ପଣ୍ଡା ହୋଇ ଜନସାଧାରଣଙ୍କୁ ସେହି ଲକ୍ଷ୍ୟରେ ମତାଇବା ଏକାନ୍ତ ଗର୍ହିତ କର୍ମ ବୋଲି ମୋର ମତ । ବ୍ୟକ୍ତିର ସମାଜକୁ ପ୍ରଧାନତମ ଦାନ ହେଉଛି ତାର ଅକଳୁଷ ଚରିତ୍ର, ଅନିନ୍ଦ୍ୟ ସାଧୁତା ଓ ସ୍ୱାର୍ଥଲେଶହୀନ ଉପଚିକୀର୍ଷା । ଯେତେ ଇଜମ୍, ଯେତେ ସ୍ଲୋଗାନ ତାହାସବୁ ଏ ପ୍ରକାର ଶୁଭ ନିଷ୍କଳଙ୍କ ବ୍ୟକ୍ତିତ୍ୱର ପଛକୁ । ତେଣୁ ହିଁ ମୁଁ ଗାନ୍ଧୀ, ଗୋପବନ୍ଧୁଙ୍କର ସ୍ତାବକ । × × × ଦେଶ ଅପେକ୍ଷା ବ୍ୟକ୍ତି ଓ ମାନବ ବଡ଼ ।"

"ବ୍ୟକ୍ତି ପ୍ରଥମ ଓ ଶେଷ, ବ୍ୟକ୍ତି ହିଁ ପ୍ରଧାନ
ବ୍ୟକ୍ତି ଶୁଚିତା ହିଁ ଦେବ ଗୋଷ୍ଠୀର ସମ୍ମାନ
ଦଳର ମର୍ଯ୍ୟାଦା ପାଇଁ ବ୍ୟକ୍ତିର ଗଳତି
ଘୋଡ଼ାଇଲେ ଆତ୍ମହତ୍ୟା ମାତ୍ର ପରିଣତି ।" (୧୪)

ଆଧୁନିକ ଓଡ଼ିଆ କାବ୍ୟଧାରାରେ ମହାଯାତ୍ରା ହିଁ ପ୍ରଥମ ଜ୍ଞାନକଳ୍ପିତ ସର୍ଗନାତ୍ମକ ମହାକାବ୍ୟ । ମହାକାବ୍ୟ ରଚନାରେ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ପରମ୍ପରାର ପୁଷ୍କଳ ସମନ୍ୱୟ ଏଥିରେ ଘଟିଛି । ଜାତୀୟ ଆତ୍ମାର ଏକ ଅଖଣ୍ଡ ସତ୍ତା ଏଥିରେ ବିରାଜିତ ହୋଇଥାଏ । ଆମ ଓଡ଼ିଆ ସାହିତ୍ୟ ପ୍ରତି ଲକ୍ଷ୍ୟକଲେ, ଆଦି-ଯୁଗରେ ସ୍ୱତଃସ୍ଫୂର୍ତ୍ତି ମହାକାବ୍ୟ ରୂପେ ସାରଳା ଓ ବଳରାମ ଦାସଙ୍କ ମହାଭାରତ ଓ ରାମାୟଣ ଭଳି ମହାଗ୍ରନ୍ଥ ରଚିତ ହୋଇଛି । ପରବର୍ତ୍ତୀ କାଳରେ ସଂସ୍କୃତ ଆଲଙ୍କାରିକମାନଙ୍କ ନିର୍ଦ୍ଧାରିତ ରୀତିରେ ଭଞ୍ଜ, ଅଭିମନ୍ୟୁ ପ୍ରଭୃତି କବିମାନେ ମହାକାବ୍ୟ ରଚନା କରିଛନ୍ତି । ପ୍ରାଚୀନ ଭାରତୀୟ ଆଦର୍ଶ କୌଣସି ଖଣ୍ଡ ଓ କ୍ଷୁଦ୍ରରେ ବିଭକ୍ତ ନ ଥିଲା । ଏକ ଅଖଣ୍ଡ ମାନବିକ ଆଦର୍ଶ ଦୃଷ୍ଟିରୁ ଏହି କବିମାନେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳର ଧାରଣା କରୁଥିଲେ । ଏଥିରେ ଜାତୀୟ ଚେତନା ସ୍ଥାନରେ ମାନବିକ ଚେତନା ପ୍ରତିଷ୍ଠିତ ଥିଲା । ସାର୍ବଜନୀନ, ସାର୍ବଭୌମ ମୈତ୍ରୀ ଓ ସହିତର ଅକୁଣ୍ଠ ଆବେଦନ ଏହାର ଅନ୍ତର୍ଗତ ବାଣୀ ଥିଲା । ଯୁଗମାନସ ଓ କବିମାନସ ସମ୍ପୂର୍ଣ୍ଣ ରୂପେ ଏକୀଭୂତ ନ ହେଲେ ସାର୍ଥକ ମହାକାବ୍ୟର ଉଦ୍ଭବ ସମ୍ଭବ ହୁଏ ନାହିଁ ।

ମହାକାବ୍ୟ ରୂପେ 'କମଳାୟନ' କେତେଦୂର ସଫଳତା ହାସଲ କରିଛି ତାହା ବିଚାର୍ଯ୍ୟ । ଜୀବନବୋଧ ଓ ମାନବାତ୍ମାର ବେଦନାବୋଧର ବୃହତ୍ତର ଚିତ୍ର କବିଙ୍କର 'କମଳାୟନ' କାବ୍ୟରେ ଆମେ ବିଶେଷ ଭାବରେ ଲକ୍ଷ୍ୟ କରୁ । କମଳ ଓ କରୁଣାର ଜୀବନାୟନ ମଧ୍ୟରେ କବି ଭାରତର ସ୍ୱାଧୀନତା ସଂଗ୍ରାମର ଅଜ୍ଞାତ

(୧୪) କମଳାୟନ—ମାନସିଂହ ଗ୍ରନ୍ଥାବଳୀ ଦ୍ୱିତୀୟ ଭାଗ ପୃ ୧୬୦ ।

ଓ ବର୍ତ୍ତମାନ ଏବଂ ବିପର୍ଯ୍ୟସ୍ତ ବିଶ୍ୱଜୀବନର ବର୍ତ୍ତମାନ ଓ ଭବିଷ୍ୟତ ଏହି କାବ୍ୟରେ ପ୍ରଦର୍ଶନ କରିଛନ୍ତି । ମାନବିକ ଆଦର୍ଶ 'କମଳାୟନ'ରେ ପ୍ରଧାନ ସ୍ଥାନ ଲାଭ କରିଛି । ଆଦର୍ଶ ମନୁଷ୍ୟର ତିନୋଟି ବିଶିଷ୍ଟ ଗୁଣ ହେଲା—ଦେଶପ୍ରେମ ବା ଏକ ନିର୍ଦ୍ଦିଷ୍ଟ ଭୂଖଣ୍ଡ ସେବାରେ ଆଗ୍ରହ ଓ ଆତ୍ମୋତ୍ସର୍ଗ ।

'କମଳାୟନ'ରେ ମୁଖ୍ୟତଃ ବୀର, କରୁଣ ଏବଂ ଶୃଙ୍ଗାର ରସ ପ୍ରାଧାନ୍ୟ ଲାଭ କରିଛି । ଗାନ୍ଧିଜୀଙ୍କର ଅହିଂସା ନୀତି, ବିଶ୍ୱମାନବିକତା ହୃଦୟକୁ ସମ୍ମୋହିତ ଓ କରୁଣାର୍ଦ୍ର କରେ । ମାନବର ଅପମାନ ବିବେକକୁ ଜାଗ୍ରତ କରେ । 'କମଳାୟନ' ପ୍ରଗତିବାଦର ଅଭ୍ୟୁଦୟ ନୂତନ ଆଦର୍ଶବୋଧ ଓ ଜାଗ୍ରତ ଚେତନାର ପ୍ରତୀକ ।

**କମଳାୟନ କାବ୍ୟର ଛନ୍ଦ ବିଚାର—**

ଛନ୍ଦ ଓ ଲିଖନ ପଦ୍ଧତିରେ ନୂଆ ନୂଆ ବ୍ୟବହାର ଫଳରେ ରାଧାନାଥ ଯେପରି ଓଡ଼ିଆ କବିତାରୁ ଭଞ୍ଜୀୟ ଶୈଳୀକୁ ବିଦାୟ ଦେଇଥିଲେ ଠିକ୍ ସେହିପରି ରାଧାନାଥୀୟ ଶୈଳୀ ଓ ଛନ୍ଦରୀତି ଆଜି ଓଡ଼ିଆ କବିତାରୁ ଉପପ୍ଳୁତ ହୋଇଅଛି । ଅମିତ୍ରାକ୍ଷର ଛନ୍ଦରେ ରାଧାନାଥଙ୍କ ନୈପୁଣ୍ୟ ସର୍ବସମ୍ମତ । ମହାଯାତ୍ରା, ବୃତ୍ତାରେ ଏକାଧାରରେ ଏହି ଛନ୍ଦର ବିକାଶ ଓ ପରିଣତି ଦେଖାଦେଇଛି । ଏଥିରେ ମିଲ୍‌ଟନ୍‌ଙ୍କ ଆଦର୍ଶ ରାଧାନାଥଙ୍କୁ ପ୍ରଭାବିତ କରିଥିବା ଅସମ୍ଭବ ନୁହେଁ । ଅମିତ୍ରାକ୍ଷର ଛନ୍ଦର ପ୍ରକୃତି ସାଧାରଣତଃ ଦୁଇ ଦିଗରୁ ବିଚାର କରାଯାଇପାରେ । ପ୍ରଥମରେ ଧ୍ୱନି ଶୃଙ୍ଖଳା ଓ ଦ୍ୱିତୀୟରେ ବିରତି ବା ଯତିପାତର ସ୍ୱାଧୀନତା । ମାନସିଂହଙ୍କର କମଳାୟନ କାବ୍ୟର ପ୍ରଥମ ଓ ଦ୍ୱିତୀୟ ସର୍ଗରେ ରାଧାନାଥୀୟ ଉପଧା ମିଳନ ଏବଂ ଉତ୍ତରଖଣ୍ଡର ପ୍ରାୟ ସବୁ ସର୍ଗରେ ଅମିତ୍ରାକ୍ଷର ଛନ୍ଦର ପ୍ରୟୋଗ କରାଯାଇଛି । ଯଥା—

"ଶୀତ ଶାନ୍ତ ହେମନ୍ତର ହେମ ଅପରାହ୍ନେ
ହୋଇଅଛି ଚିଲିକାର ତରଳ ଚଦ୍ଦର
ପୁଣି ତାର କୁଟ୍ଟିମ୍ବିକ ଶୈଳଟଙ୍କ ବନ
ଶ୍ୟାମଳ ଶବଳ ତାର ଦ୍ୱୀପ ଶତ ଶତ
ନିମ୍ନ ଊର୍ଦ୍ଧ୍ୱ ଚଉଦିଗ, ବର୍ତ୍ତି ମହିମାରେ
ପରିବ୍ୟାପ୍ତ ସ୍ୱର୍ଣ୍ଣାଂଶୁକେ, ଅସ୍ତ ତପନର । (୧୫)

ଅମିତ୍ରାକ୍ଷର ଛନ୍ଦର ପ୍ରୟୋଗ ଦ୍ୱାରା କବିଙ୍କର ବ୍ୟକ୍ତିତ୍ୱ ଅନ୍ତରର ଭାବଚେତନାର ଉଚ୍ଛଳତା ଇତ୍ୟାଦି ଅଧିକ ସ୍ପଷ୍ଟ ହୋଇ ଉଠିଛି । କବିତାର କୋମଳ ମଧୁର ଲୟ

(୧୫) କମଳାୟନ

ଆବଦ୍ଧ ଧ୍ୱନି ତଥା ଭାବ ମୂର୍ଚ୍ଛନାର ଆରୋହ ଅବରୋହ ଭିତରେ ଆତ୍ମବିସ୍ମୃତ ଘଟେ । ପ୍ରାଚୀନ କବିତାର ଭାରାକ୍ରାନ୍ତ ଯମକ, ଅନୁପ୍ରାସ, ଅଳଙ୍କାରମାନ ମାନସିଂହ ଯଥାସମ୍ଭବ ବର୍ଜନ କରିଛନ୍ତି । ସେଥିପାଇଁ ମାନସିଂହଙ୍କ କବିତା ଯଥାସମ୍ଭବ ସରଳ ଓ ସର୍ବଜନବୋଧ୍ୟ ।

ପ୍ରଚଳିତ ପଦ୍ୟରେ ବାକ୍‌ରୀତି ସହିତ କାବ୍ୟରୀତିର ମିଳନ ପାଇଁ ଯେଉଁ ଛନ୍ଦ ପ୍ରଶସ୍ତ ତାହା ପୟାର ଜାତୀୟ ଛନ୍ଦ ଭାବରେ ପ୍ରଚଳିତ । ଏପରି କୌଣସି ବିଷୟ ନାହିଁ ଯାହା ପୟାର ସାହାଯ୍ୟରେ ପ୍ରକାଶ କରାଯାଇ ନ ପାରେ । ମାନସିଂହଙ୍କର ଅଧିକାଂଶ ସୃଷ୍ଟି ଏହି ପୟାର ଜାତୀୟ । ତାଙ୍କ ଭାଷାର ସରଳତା ବେଳେବେଳେ ଜଗନ୍ନାଥ ଦାସଙ୍କର ଭାଗବତର ସରଳ ଅଥଚ ଶକ୍ତିଶାଳୀ ବର୍ଣ୍ଣନା ଶୈଳୀକୁ ସ୍ମରଣ କରାଇ ଦିଏ । କାବ୍ୟିକ ଭାଷା ଏବଂ କଥିତ ଭାଷାର ମଧୁର ସମନ୍ୱୟ 'କମଳାୟନ' କାବ୍ୟରେ ଦେଖିବାକୁ ମିଳିଥାଏ ।

"ଯେ ବିଜ୍ଞାନ ଶ୍ୱେତାଙ୍ଗଙ୍କୁ କରିଅଛି ବଳୀ
ସେହି ହିମେ ତାକୁ କରିପାରେ ହିନ ବଳ
ମେଘରୂପେ ସୃଜି ପୁଣି ବାଷ୍ପରୂପେ ଖାଏ
ଯେମନ୍ତେ ରବି ସେହିପରି ସଂସାର ଖେଳାଏ
ସେ ଅଦୃଷ୍ଟ ମହାଶକ୍ତି ରଚଇ ନାଶଇ
ଏ ସଭ୍ୟତା ଭବିଷ୍ୟତ କିଏ ପାରେ କହି ।"

—କମଳାୟନ, ୧ମ ସର୍ଗ

କମଳାୟନ କାବ୍ୟରେ ରୂପକ ଏବଂ ଚିତ୍ରକଳ୍ପର ବ୍ୟବହାର ଅପ୍ରତୁଳ ନୁହେଁ । ଚିତ୍ରକଳ୍ପ ଏବଂ ରୂପକ ବକ୍ତବ୍ୟର ଆବେଦନର ଦୈର୍ଘ୍ୟକୁ ଅନେକ ଦୂର ପ୍ରସାରିତ କରି ବୁଦ୍ଧିର ସ୍ତରକୁ ନେଇଯାଏ । ଚିତ୍ରକଳ୍ପ ଏବଂ ରୂପକ ସାହାଯ୍ୟରେ ବାସ୍ତବତାର ଅପେକ୍ଷାକୃତ ପୂର୍ଣ୍ଣତର ସ୍ୱରୂପ ଉଦ୍‌ଘାଟିତ ହୋଇଥାଏ ।

"ପଛେ ଗିରିଶ୍ରେଣୀ, ଅଗ୍ରେ ଦିଗ୍‌ବଳୟ ମଧ୍ୟେ
ପରିବ୍ୟାପ୍ତ ଚିଲିକାର ତରଳ ମର୍କତ,
ରଞ୍ଜିତ ଏକ୍ଷଣି କୋଟି କନକ ଚନ୍ଦ୍ରକେ,
କୋଟି କୋଟି ସ୍ୱର୍ଣ୍ଣହାରେ/ଲହରୀର ଛନ୍ଦେ,
ଢଳ ଢଳ ଦେଖାଉଛି ସୁନ୍ଦରୀ ଚିଲିକା
କେଉଁ ସେ ପ୍ରେମିକ ଯେମନ୍ତେ ନୀଳଗଣ୍ଡେ ତାର
କୌତୁକେ ଦେଇଛି ବୋଲି ସ୍ନେହାକ୍ତ ଅଧର ।"

କମଳାୟନ—(ଉତ୍ତରଖଣ୍ଡ), ଗ୍ରନ୍ଥାବଳୀ—ପୃ ୨୧୬

## କମଳାୟନ କାବ୍ୟରେ ଆନ୍ତର୍ଜାତିକ ଓ ଲୌକିକ ପ୍ରତିମା—

କବି ମାନସିଂହ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ସମ୍ପର୍କରେ ସମ୍ବଲପୁରରେ ୧୯୪୩ରେ ଆୟୋଜିତ ରବୀନ୍ଦ୍ର ବାର୍ଷିକୋତ୍ସବରେ ପୁରୋଧାରୂପେ ଯେଉଁ ଭାଷଣ ଦେଇଥିଲେ ପରବର୍ତ୍ତୀ ସମୟରେ ତାହା 'ରବୀନ୍ଦ୍ର ପୂଜା' ନାମରେ ତାଙ୍କର 'କବି ଓ କବିତା' ପ୍ରବନ୍ଧରେ ପ୍ରକାଶ ହୋଇଛି । ସେ ପ୍ରକାଶ କରିଛନ୍ତି ଯେ, "ରବୀନ୍ଦ୍ରନାଥ ଯେ ବିଶ୍ୱକବି ତାହା ଯଥାର୍ଥ । ତାଙ୍କ ଲେଖା ପୃଥିବୀର ସବୁ ପ୍ରାନ୍ତରରେ ପଠିତ ଓ ଆଦୃତ ହୋଇଛି ବୋଲି ଯେ ସେ ବିଶ୍ୱକବି ତାହା ନୁହେଁ ; ସେ ପ୍ରକୃତରେ ବିଶ୍ୱକବି ଏହି କାରଣରୁ ଯେ ତାଙ୍କର ଉଦାର କଳ୍ପନାରେ ସାରା ବିଶ୍ୱ ହିଁ ଥିଲା ତାଙ୍କର ଜନ୍ମଭୂମି ଏବଂ ମନୁଷ୍ୟ ହିଁ ଥିଲା ତାଙ୍କର କଳ୍ପନାର ବିଷୟ । ସେ ମନୁଷ୍ୟର ସୀମା ଭିତରେ ଅସୀମକୁ ଖୋଜିଛନ୍ତି ଓ ପାଇଛନ୍ତି ।" (୧୭)

'କମଳାୟନ' କାବ୍ୟରେ କବି ମାନସିଂହ ସେହି ବିଶ୍ୱଭାବନାରେ ଉଦ୍‌ବୁଦ୍ଧ ହୋଇଛନ୍ତି । ମାନବିକତାର ଆଦର୍ଶରେ ଅନୁପ୍ରାଣିତ ହୋଇଛନ୍ତି । ୟୁରୋପରୁ ରୁଷ୍ ଏବଂ ରୁଷ୍‌ରୁ ହଙ୍ଗେରୀ, ନେଭା ଏବଂ ମସ୍କୋଭା (ରୁଷିଆର ନଦୀ) ପ୍ରଭୃତି ମାନସିଂହଙ୍କ ଲେଖନୀରେ ମୂର୍ତ୍ତିମନ୍ତ ହୋଇ ଉଠିଛି । କବିଙ୍କର ଲୌକିକତା ଏପରିକି ତାର ଦେଶୀୟତା ମଧ୍ୟ ଏକ ଆନ୍ତର୍ଜାତିକ ଚେତନାରେ କ୍ରମେ ଏକାକାର ହୋଇଯାଇଛି । 'କମଳାୟନ' କାବ୍ୟରେ ସେ ପ୍ରଥମେ ପୃଥିବୀ ଓ ମାନବ ଜାତିକୁ ସମଗ୍ର ଭାବରେ ଦେଖି କବିତାରେ ରୂପାୟିତ କରିଛନ୍ତି । ଆନ୍ତର୍ଜାତିକତା, ବିଶ୍ୱ ମାନସିକତା ଆଜି ଆମର ବିରାଟ ବାସ୍ତବତାରେ ପରିଣତ ହୋଇଛି । ଏହାକୁ ବୈଦେଶିକ କହିବା ଅସଙ୍ଗତ ।

'କମଳାୟନ'ରେ ହଙ୍ଗେରୀର ରାଜଧାନୀ ବୁଦାପେସ୍ତ ସହରର ବର୍ଣ୍ଣନା ଅତି ଚମତ୍କାରିତା ସୃଷ୍ଟି କରେ ।

"ମରକତ ଲତା ଦେହେ ସ୍ଫଟିକର ଦୁଇ
ଶୁଭ୍ର ପୁଷ୍ପସମ ଦିଶେ ଡାନିଉବ୍ ନଦୀ
ଦୁଇକୂଳେ ଯୁଗ୍ମପୁରୀ ବୁଦା ଆଉ ପେସ୍ତ
ଏକପାଶେ ପୁଞ୍ଜିଭୂତ ଶୁଭ୍ର ମେଘସମ
ନୀଳାକାଶେ ଦିଶେ ବୁଦା-ସୌଧାବଳୀ ସ୍ତର
× × × ନଦୀ ଅନ୍ୟ ତଟେ
ଉର୍ବର କୋମଳ ମାଟି ପରେ ହଙ୍ଗେରୀର

(୧୭) କବି ଓ କବିତା—ମାନସିଂହ ଗ୍ରନ୍ଥାବଳୀ, ତୃତୀୟଭାଗ, ପୃ ୪୮୦ ।

ଶୁଭ୍ର ଦୁକୂଳତା, ହେଲା ଶୀଳାସ୍ଥିତା ରମ୍ୟା
ଶୋଭଙ୍ଗୀ ରୂପସୀ ସମ ପେସ୍ତ ପୁରଶ୍ରେଷ୍ଠା ।”

କମଳାୟନ—ଉତ୍ତରଖଣ୍ଡ, ପୃ ୩୫୨

କମଳାୟନ କାବ୍ୟ ମାନସିଂହଙ୍କର ବିଦଗ୍ଧ କବି ମାନସର ଆତ୍ମଲିପି ହେବା ସଙ୍ଗେ ସଙ୍ଗେ ସମସାମୟିକ ଜାତୀୟ ଏବଂ ଆନ୍ତର୍ଜାତୀୟ କ୍ଷେତ୍ରରେ ଏକ ବିଶ୍ୱସ୍ତ ପ୍ରତିଲିପି ଭାବରେ ମହାକାବ୍ୟର ଗୌରବ ଅଧିକାର କରେ ।

**ପ୍ରଗତିବାଦୀ କାବ୍ୟ କବିତାର ଆଙ୍ଗିକ—**

ପ୍ରଗତିବାଦୀ ଆଭିମୁଖ୍ୟ କେବଳ ଆତ୍ମିକ ଦିଗରେ ସୀମାବଦ୍ଧ ନ ଥିଲା । ଏହି ସମୟରେ କବିତାରେ ବାକ୍‌ରୀତି, ଗଦ୍ୟ କବିତା, ମୁକ୍ତଛନ୍ଦ ଇତ୍ୟାଦି ପ୍ରବେଶ କରିଛି । “ପୂର୍ବେ ଗୀତି କବିତା ରଚୟିତା ଯେପରି ନିଜ ଖିଆଲରେ ବାହାର ଜଗତକୁ ଭୁଲିଯାଇ ପାରୁଥିଲା ; ସେ ପ୍ରକାର ଦାୟିତ୍ୱହୀନତା ବର୍ତ୍ତମାନ କବି ଜୀବନରେ ସମ୍ଭବ ହେଉନାହିଁ । ଏ ଯୁଗର କବି ତାର ପୂର୍ବବର୍ତ୍ତୀମାନଙ୍କ ପରି ନିଜ ଛନ୍ଦରେ ନିଜେ ବିହ୍ୱଳ । ଏକ ଭାବେଭୋଳା ପାଗଳ ପରି ସ୍ୱପ୍ନରସରେ ମଉଆଳ ହୋଇପାରୁନାହିଁ—ତାର ବରଂ ପ୍ରତି ମୁହୂର୍ତ୍ତରେ ମନେହେଉଛି ଯେ ସେଇ ଏକା ଏ ଜଗତରେ ଠିକ୍ ଅଛି ବାକି ସମସ୍ତେ ପାଗଳ ହୋଇଯାଇଛନ୍ତି × × × ବର୍ତ୍ତମାନ ଦ୍ୱିଧାଗ୍ରସ୍ତ ସମାଜ ଭିତରେ କବିଙ୍କର ଆତ୍ମସଚେତନ ମନ ଖଣ୍ଡିତ ହେବାକୁ ବାଧ୍ୟ । ସମାଜର ସଂହତି ଭାଙ୍ଗିଯାଇଛି । ଏଇ ପରିବର୍ତ୍ତିମାନ ପରିପ୍ରେକ୍ଷୀରେ ନାନା ସାମାଜିକ ଅବସ୍ଥା ଆଉ ପରିବେଶ ଉପରେ କବିର ସମାଜବୋଧ କେଉଁଠି ତୀକ୍ଷ୍ଣ ଆଉ ଶାଣିତ ହୋଇଉଠୁଛି ତ କେଉଁଠି ପୁଣି କବିର ଆହତ ଆତ୍ମା ପ୍ରତିହିଂସାର କ୍ଲାନ୍ତିର ନେତୃତ୍ୱରେ ପୁରାତନର ଲୁପ୍ତ ଐତିହ୍ୟ ଭିତରକୁ ପଳାଇବା ପାଇଁ ବ୍ୟଗ୍ର ହୋଇଉଠିଛି । (୧୭) ଜୀବନ ନିଜ ଗତିରେ ଚଞ୍ଚଳ । ମନୁଷ୍ୟର ସବୁ ସୃଷ୍ଟିଧର୍ମୀ ପ୍ରତିଭା ଆଭ୍ୟନ୍ତରୀଣ ସଂଘର୍ଷ ଓ ସ୍ୱବିରୋଧ ଭିତରେ ଏଇ ବିକାଶର ଧାରା କିପରି ଭବିଷ୍ୟତ ଆଡ଼କୁ ଗତି କରୁଛି ତାର ସ୍ପଷ୍ଟ ଧାରଣା ଦେବା ଅଭ୍ୟୁଦୟ ସାହିତ୍ୟର ଲକ୍ଷଣ । ସମଗ୍ର ଭାରତୀୟ କାବ୍ୟ କବିତା କ୍ଷେତ୍ରରେ ଅମିତ୍ରାକ୍ଷର ଛନ୍ଦର ପ୍ରଚଳନ ଏବଂ ମୁକ୍ତଛନ୍ଦର ପ୍ରଚଳନ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଘଟଣା । ବାକ୍‌ରୀତି ସହିତ କାବ୍ୟିକ ରୀତିର ସମନ୍ୱୟ ଘଟାଇବା ଅଭ୍ୟୁଦୟ ସାହିତ୍ୟର ଆଭିମୁଖ୍ୟ ଥିଲା ।

ରୂପକଳ୍ପ, ରୂପକ ଓ ପ୍ରତୀକର ପ୍ରୟୋଗରେ ପ୍ରଗତିବାଦୀ ସାହିତ୍ୟ ସମୃଦ୍ଧ କାବ୍ୟରୂପ ଗ୍ରହଣ କରିଛି । ପ୍ରଥମ ବିଶ୍ୱଯୁଦ୍ଧ ଯେପରି ଇଲିୟଟ୍‌ଙ୍କ କାବ୍ୟିକ

(୧୭) ପାଣ୍ଡୁଲିପିର ମୁଖବନ୍ଧ, ପୃ ୪—ଡ. ସଚ୍ଚିଦାନନ୍ଦ ରାଉତରାୟ ।

ଦୃଷ୍ଟିଭଙ୍ଗୀରେ ଘୋର ପରିବର୍ତ୍ତନ ଆଣିଥିଲା ; ଦ୍ୱିତୀୟ ବିଶ୍ୱଯୁଦ୍ଧର କ୍ଷୟକ୍ଷତି କବି ସଚ୍ଚି ରାଉତରାୟଙ୍କ କାବ୍ୟିକ ଚେତନାକୁ ପରିବର୍ତ୍ତନ କରିଥିଲା । ଫଳରେ ମଧ୍ୟଯୁଗୀୟ ଉପମା, ରୂପକ ଓ ପ୍ରତୀକାଦି ପ୍ରଥମେ ରାଉତରାୟଙ୍କ ଲେଖାରେ ଏକ ନୂତନ ବୌଦ୍ଧିକ ରୂପାନ୍ତର ଲାଭକଲା । ପରବର୍ତ୍ତୀ କାଳରେ ଏହି ଚେତନା କବି ଅନନ୍ତ ପଟ୍ଟନାୟକ, ବିନୋଦଚନ୍ଦ୍ର ନାୟକ, ଗୁରୁପ୍ରସାଦ ମହାନ୍ତି ଓ ରମାକାନ୍ତ ରଥଙ୍କ ଦୃଷ୍ଟିଭଙ୍ଗୀକୁ ପ୍ରଭାବିତ କରିଥିବାର ଜଣାଯାଏ । କେବଳ ମାର୍କସୀୟ ବୈପ୍ଳବିକ ଚେତନା ଯେ ପ୍ରଗତିବାଦୀ କାବ୍ୟଧାରାର ବାର୍ତ୍ତାବହ ତାହା ନୁହେଁ ; ସେଥିରେ ଆତ୍ମିକ ଓ ଆଙ୍ଗିକ ସବୁପ୍ରକାର ନୂତନ ଆଭିମୁଖ୍ୟକୁ ଯୋଗ କରିବା ଅଧିକ ଯୁକ୍ତିଯୁକ୍ତ ହେବ ।

ମାନସିଂହଙ୍କ ସମସାମୟିକ କବି ସଚ୍ଚି ରାଉତରାୟଙ୍କ କବିତାରେ ଏହି ପ୍ରଗତିବାଦୀ କାବ୍ୟଚେତନା ଅଧିକ ସ୍ପଷ୍ଟ । ପ୍ରାୟ ୧୯୩୯ ରୁ ୪୭ ମଧ୍ୟରେ ରଚିତ ପାଣ୍ଡୁଲିପିରେ ସଚ୍ଚି ରାଉତରାୟଙ୍କର ଏକ ସମାଜବାଦୀ ବ୍ୟକ୍ତିତ୍ୱର ସତ୍ତା ଅଧିକ ଅନୁଭବ କରିହୁଏ । ତାଙ୍କ ମନରେ ମଣିଷ ପ୍ରତି ଶ୍ରଦ୍ଧା, ସହାନୁଭୂତି, ଶାନ୍ତି ପାଇଁ ଜାଗ୍ରତ ଆକୁଳତା, ଯୁଦ୍ଧ ବିରୁଦ୍ଧରେ ପ୍ରତିକ୍ରିୟାଶୀଳ ଚେତନା, ସମାଜରେ ଜଣେ ହୋଇ ବଞ୍ଚିବାର ଆଗ୍ରହୀ ବିଶ୍ୱାସରେ ତାଙ୍କ କାବ୍ୟମାନସ ସଫଳ ହୋଇ-ପାରିଛି । "ଆଧୁନିକ ଜୀବନର ସମସ୍ତ ଦ୍ୱନ୍ଦ୍ୱ ସଙ୍ଘର୍ଷ, ଜଟିଳତା ଓ ବିଫଳତା ରାଉତରାୟଙ୍କ ଶିଳ୍ପରେ ରୂପାୟିତ ହେବା ସଙ୍ଗେ ସଙ୍ଗେ ତାଙ୍କ ସୃଷ୍ଟି ଅନ୍ତରାଳରେ ରହିଛି ଏକ ପ୍ରଚ୍ଛନ୍ନ ଶିଳ୍ପୀ, ଯେ କି ମନୁଷ୍ୟର ଦୁଃଖ ବିପାକ ପ୍ରତି ସମ୍ବେଦନଶୀଳ ହେବା ସଙ୍ଗେ ସଙ୍ଗେ ତାକୁ ମୁକ୍ତ ଓ ସ୍ୱାଧୀନ କରିବା ପାଇଁ ସତତ ସଂଗ୍ରାମରତ । ଶିଳ୍ପୀ ପ୍ରାଣର ମନୁଷ୍ୟ ପ୍ରତି ସହଜାତ ଶ୍ରଦ୍ଧା, ସହାନୁଭୂତି ରାଉତରାୟଙ୍କ ସୃଷ୍ଟିରେ ଯେପରି ଲକ୍ଷଣୀୟ ପ୍ରଗତିଶୀଳ ଶିଳ୍ପୀର ବଳିଷ୍ଠ ସମାଜ ସଚେତନତା ତାଙ୍କ ଶିଳ୍ପ ମଧ୍ୟରେ ସେହିପରି ଲକ୍ଷଣୀୟ ।" (୧୮) 'ପ୍ରତିମା ନାୟକ' ଯେପରି ଅଗଣିତ ବାସ୍ତବିକତାର ପ୍ରତିନିଧି । ଯେଉଁମାନଙ୍କ ମନ ବିକ୍ଷୁବ୍ଧ, ଓଠରେ ଖାଲିର ହସ, ମାତୃତ୍ୱର ସକଳ ସମ୍ଭାବନା ଯେଉଁମାନଙ୍କର ବିପର୍ଯ୍ୟସ୍ତ ସେହିମାନଙ୍କ ସ୍ୱରରେ ରାଉତରାୟ ସାହିତ୍ୟ ଅନୁରଣିତ । (୧୯)

---

(୧୮) କାବ୍ୟ ଓ କଳାକାର—ଶ୍ରୀ ଚିନ୍ତାମଣି ବେହେରା—ପୃ. ୧୪୬

(୧୯) ମୁହଁରେ ଖାଲିର ହସ, ଆଖିରେ ତା' ରାତିର ଇସାରା,
ଦୁଇପାଖେ ଦ୍ରୁତବନ, ଗତିବାନ ନକ୍ଷତ୍ରର ଧାରା ।
ପାଣ୍ଡୁଲିପି—ପୃ. ୧୧୭, (ପ୍ରତିମା ନାୟକ)

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଭାରତ ସ୍ୱାଧୀନ ହୋଇଥିଲା । ତା'ପଛରେ ରହିଥିଲା ଶତାବ୍ଦୀ ବର୍ଷ ବ୍ୟାପି ଏକ ସଂଗ୍ରାମର ଇତିହାସ । ଅଗଣିତ ବ୍ୟକ୍ତିର ବିଶ୍ୱାସ ଥିଲା ଅଭାବ ଅନାଟନ ଦୂର ହୋଇଯିବ । ସମସ୍ତେ ସୁଖରେ ବଞ୍ଚିବାର ଅଧିକାର ପାଇବେ । କିନ୍ତୁ ସବୁ ସ୍ୱପ୍ନ ମିଳାଇ ଯାଇଛି । ଭାରତୀୟ ଦୁଃସ୍ଥ ଜନତାର ଦୁଃଖର ଅବସାନ ହୋଇନାହିଁ । ସ୍ୱାଧୀନତା ପରବର୍ତ୍ତୀ ଏଇ ଭଗ୍ନମାନସର ସ୍ୱର ଏବଂ ସମାଜର ଅର୍ଥନୈତିକ ଚିତ୍ର ପ୍ରଗତିବାଦୀ କବିମାନଙ୍କ ଲିଖିତ ବିଭିନ୍ନ କବିତାରେ ପ୍ରତିଧ୍ୱନିତ । ପୃଥିବୀର ସବୁ ସ୍ଥାନରେ ଶ୍ରମିକ, କିଷାନ, କୁଲି ଓ ଖଲାସିର ସମସ୍ୟା ସମାନ । ଏ ସାହିତ୍ୟ ଜନତାର ସ୍ୱାର୍ଥଲାଗି ସଂଗ୍ରାମ କରିପାରିଛି । ତେଣୁ ସମସାମୟିକ ସାହିତ୍ୟିକ ମାନଚିତ୍ରରେ ଏଗୁଡ଼ିକ ପ୍ରଗତିବାଦୀ କବିତା ଭାବରେ ଚିହ୍ନିତ କରାଯାଇପାରେ । ମାନସିଂହଙ୍କ 'ତଳିଆଜୀବର ବିଳାପ' ଏହି ମାନସିକତାର ପ୍ରତିନିଧିତ୍ୱ କରେ ।

ପ୍ରାୟ ୧୯୨୬ ଠାରୁ ୧୯୩୫ ମଧ୍ୟରେ ତାଙ୍କର ରଚିତ କେତେକ କବିତା 'ସେ ଦିନର କବିତା' ନାମରେ ପ୍ରକାଶିତ ହୋଇଛି । ଏହି କବିତା ଗୁଡ଼ିକର ଭାବଧାରାରେ ବିବିଧତା ଓ ବୈଚିତ୍ର୍ୟ ପରିଲକ୍ଷିତ ହୁଏ । କେଉଁଠି ତରୁଣ ସୁଲଭ ପ୍ରେମ, ପ୍ରଣୟ ଓ ଯୌବନର ଚିନ୍ତା ତ କେଉଁଠି ସାମାଜିକ ଅନ୍ୟାୟ ଓ ଅସଙ୍ଗତି ବିରୁଦ୍ଧରେ ପ୍ରତିକ୍ରିୟା ସ୍ପଷ୍ଟ ହୋଇଉଠିଛି । ରିକ୍ସାବାଲା, ମଜଦୁର, କୃଷକ, ବଢ଼େଇ, କିରାଣୀ, କଳା ସେବକ, ସ୍କୁଲ ମାଷ୍ଟର ପ୍ରଭୃତି ସମାଜର ଅର୍ଥନୀତିକ ନିର୍ମମ ପେଷଣ ତଳେ ନିଷ୍ପେଷିତ ସମାଜର ଏଇ ତଳିଆ ଜୀବମାନେ ତାଙ୍କ କବିତାରେ ମୂର୍ତ୍ତିମନ୍ତ ହୋଇଛନ୍ତି । ସେମାନଙ୍କ ପ୍ରତି କବିଙ୍କର ଆତ୍ମୀୟତା ଦେଖିଲେ ମନେହୁଏ ତାହା ଯେପରି କୌଣସି ବାସ୍ତବବାଦୀ ଲେଖକର ସ୍ୱର । ସମାଜର ଏଇ ଉତ୍କଟ ବିଷମ ବ୍ୟବସ୍ଥା ବିରୁଦ୍ଧରେ ମାନସିଂହଙ୍କର ସ୍ୱରରେ ଆଗ୍ନେୟ ଆହ୍ୱାନ ନ ଥିଲେ ବି ରହିଛି ଗଭୀର ମାନବିକ ଦୃଷ୍ଟିଭଙ୍ଗୀର ଅଙ୍ଗୀକାର । ତେଣୁ ଚିରଦିନ ଅଭାବ ଓ ଅନାଟନର ଶିକାର ହେଉଥିବା କିରାଣୀ, ସ୍କୁଲ ଶିକ୍ଷକ, କଳାକାରମାନଙ୍କ ପାଇଁ ତାଙ୍କ ସ୍ୱରରେ ଦରଦ ପୂରି ରହିଛି । ଏହା ବାସ୍ତବିକ ରୋମାଣ୍ଟିକ କବି ମାନସିଂହଙ୍କର ପ୍ରଗତିବାଦୀ ଚେତନାର ସ୍ୱାକ୍ଷର ବହନ କରେ । ମାନବିକତାର ଏହି ଆହ୍ୱାନ ହୁଏତ ତାଙ୍କର ପରବର୍ତ୍ତୀ କବିତାମାନଙ୍କରେ ଦେଖାଯାଇନାହିଁ । ଓଡ଼ିଆ ସାହିତ୍ୟ ମାନସିଂହଙ୍କୁ ସାମ୍ୟବାଦୀ ଆଖ୍ୟା ନ ଦେଲେ ମଧ୍ୟ ତାଙ୍କର ଏହି ମାନବବାଦୀ ଚେତନାର ଝଲକ, ତାଙ୍କ ବ୍ୟକ୍ତିତ୍ୱର ଏକ ଅବିସ୍ମରଣୀୟ ଅଧ୍ୟାୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।



# ଷଷ୍ଠ ପରିଚ୍ଛେଦ

## ମାନସିଂହ କାବ୍ୟକବିତାର ଶିଳ୍ପଦୃଷ୍ଟି ଓ ଶିଳ୍ପାଦର୍ଶ

"ବିଦ୍ରୋହୀ ହୁଅନ୍ତୁ ସଂସ୍କାରକ ହୁଅନ୍ତୁ, ସ୍ୱପ୍ନଦ୍ରଷ୍ଟା ହୁଅନ୍ତୁ, ଦାର୍ଶନିକ ହୁଅନ୍ତୁ ବା ପ୍ରଚାରକ ହୁଅନ୍ତୁ କବି ଓ ଲେଖକ ମନେ ରଖିବେ ଯେ ସେ ଆନନ୍ଦ ଓ ସୌନ୍ଦର୍ଯ୍ୟ ଏଇ ଯୁଗ୍ମ ଦେବତାର ମାନସପୁତ୍ର । ସୌନ୍ଦର୍ଯ୍ୟ ହିଁ ଆନନ୍ଦ ଦାନ କରେ; ଧନ ପଦ ସମ୍ମାନରୁ ଏକ ବିକୃତ ସୁଖ ମିଳିପାରେ କିନ୍ତୁ ଆନନ୍ଦ ମିଳେନା ନିଶ୍ଚୟ । ଆନନ୍ଦ ଆଧ୍ୟାତ୍ମିକ ସୁଖବାହ୍ୟ । ସୌନ୍ଦର୍ଯ୍ୟ ଅର୍ଥାତ୍ ବିଷାର, ଖିବର, ଚନ୍ଦ୍ରାର ଅନୁଭୂତର ଆଦର୍ଶର ସୌନ୍ଦର୍ଯ୍ୟ ହିଁ ଏହି ଆନନ୍ଦର ବାହକ । ଯାହା ସୁନ୍ଦର, ତାହା ହିଁ ସତ୍ୟ ଅର୍ଥାତ୍ ସ୍ଥାୟୀ × × × ସେଥିପାଇଁ ଭଗ୍ନଜୀର୍ଣ୍ଣ କୋଣାର୍କ ଜାତିର ହୃଦୟରେ ଚିରଜୀବନ୍ତ । × × କବି ବା ଲେଖକ ଯାହା କହେ ତାହା ଆମରି ଭିତରର, ଆମରି ମନର କଥା; କିନ୍ତୁ ତାହା ଦେବବାଣୀର ଆସନ ଗ୍ରହଣ କରେ କେବଳ ଏହି ସୌନ୍ଦର୍ଯ୍ୟର ଆଶୀର୍ବାଦରୁ × × ପ୍ରତ୍ୟେକ କବି ଓ ଲେଖକର ପନ୍ଥା ସ୍ୱତନ୍ତ୍ର । ସେହି ସ୍ୱାତନ୍ତ୍ର୍ୟ ହିଁ ତାଙ୍କର ମହତ୍ତ୍ୱ ।" (୧) ଏହାହିଁ ମାନସିଂହଙ୍କର ଶିଳ୍ପମାନସର ଦୃଷ୍ଟିଭଙ୍ଗୀ । ଏହି ଆନନ୍ଦ ଓ ସୌନ୍ଦର୍ଯ୍ୟ ମାନସିଂହଙ୍କୁ ଅମୃତତ୍ୱର ଅଧିକାରୀ କରିଥିଲା । ପ୍ରତ୍ୟେକ କବି ଏବଂ ଶିଳ୍ପୀ ଜୀବନର ବିଷ ପାନ କରି ଅମୃତତ୍ୱର ସନ୍ଧାନ ଦିଅନ୍ତି । ମାନସିଂହଙ୍କ କବିତା ତାଙ୍କ ଆତ୍ମଲିପି କହିଲେ ଅତ୍ୟୁକ୍ତି ହେବ ନାହିଁ । କବି ମାନସିଂହଙ୍କ ଶିଳ୍ପ-ମାନସ ଏବଂ ବ୍ୟକ୍ତିତ୍ୱ ସମ୍ପର୍କରେ ଲେଖକ ଶ୍ରୀଯୁକ୍ତ ନିତ୍ୟାନନ୍ଦ ମହାପାତ୍ର କହନ୍ତି—"କବି କଇତବ ବର୍ଜିତ । କପଟତାର କପାଟ ନ ଖୋଲିଲେ କାବ୍ୟର ପ୍ରାଣଶ୍ରୀବ ପ୍ରବେଶ କରିପାରେ ନାହିଁ । ଲେଖକର ହୃଦପଟରେ ପ୍ରକୃତିର ପ୍ରକୃତ ଛବି ଫୁଟେ ନାହିଁ ଆବର୍ଜନାରେ ମଳିନ ଚିତ୍ତବୃତ୍ତିରେ × × ମାନସିଂହ ଥିଲେ ପ୍ରକୃତ କବି । କପଟତାର ବହୁ ଦୂରରେ । ସାରଲ୍ୟ ତାଙ୍କର ଭୂଷଣ । ଭୂଷଣରେ ମଧ୍ୟ ସେ ସରଳ । ହୃଦୟରେ ନିର୍ମଳତା ଯେପରି ଫୁଟି ପଡ଼ୁଥିଲା ମୁଖମଣ୍ଡଳରେ × × ମାୟାଧରଙ୍କ କାବ୍ୟର ଅକ୍ଷର ଯେପରି, ଅକ୍ଷୟତାର ଦାବୀ ଘେନି ଉପସ୍ଥିତ । ଗୋଟାଏ

---

(୧) କବି ଓ ଲେଖକର ଲକ୍ଷ୍ୟ—କବି ଓ କବିତା—ମାନସିଂହ ଗ୍ରନ୍ଥାବଳୀ—ପୃ-୫୬୧ ।

ଆଘାତପ୍ରବଣ ପ୍ରାଣ । ବଡ଼ ସ୍ପର୍ଶକାତର ସେ, ସାମାନ୍ୟ ଆନନ୍ଦରେ ଉଲ୍ଲସିତ, ବିଷାଦରେ ବିଷଣ୍ଣ, ସ୍ନେହରେ ସ୍ନିଗ୍ଧ, ହତାଦରରେ ଆହତ । ଗୁଣରେ ମୁଗ୍ଧ × × ହୃଦୟ ସବୁବେଳେ ଉଦ୍‌ବେଳ ଉଚ୍ଛଳ । ଭାବର ଗମ୍ଭୀରତା ସଙ୍ଗେ ପ୍ରକାଶର ଉଚ୍ଛ୍ୱାସ ଘେନି ସେ ଚଳନ୍ତି ଦୁନିଆରେ ପାର୍ଶ୍ୱଦେବତା ହୋଇ ରହିଗଲେ । (୨)

ମାନସିଂହଙ୍କ କବିତା ମଧ୍ୟ ତାଙ୍କ ହୃଦୟ ପରି ଅତି ବେଶୀ ସ୍ପର୍ଶକାତର । କବିତାର ଆଭିମୁଖ୍ୟ ବା କବିର ଆଭିମୁଖ୍ୟ ଏକ ହେବା ଉଚିତ । ମାନସିଂହ ସବୁବେଳେ ଲେଖକ ଏବଂ କବିମାନଙ୍କୁ କହୁଥିଲେ, "ତମେମାନେ ସଂକୋଚ ତ୍ୟାଗ କର, ଭୀରୁତା ପରିତ୍ୟାଗ କର × × ତମେ ଅବିନାଶୀ । ତେଣୁ ତମେ ହୁଅ ଅକୁତୋଭୟ । ଅନ୍ୟାୟର ମୁକ୍ତ ପ୍ରତିବାଦ କର । ଲାଞ୍ଛିତ, ନିର୍ଯାତିତ ହେବାକୁ ଭୟ କରନା, ଇହ ଜୀବନର ସମସ୍ତ ଧୂଳି ମଳିନତା ତମର ପ୍ରତିଭାର ଜ୍ୟୋତ୍ସ୍ନାରେ କେବଳ ଆବୃତ ହେବ ନାହିଁ, ରହସ୍ୟମୟ ଓ ବିସ୍ମୟକର ହୋଇ ଉଠିବ ।" (କବି ଓ କବିତା — ମାନସିଂହ ଗ୍ରନ୍ଥାବଳୀ—ପୃ-୫୬୧)

କାବ୍ୟ ସୃଷ୍ଟି କ୍ଷେତ୍ରରେ କବିଙ୍କର ମୂଳ ପ୍ରେରଣା ଉଚ୍ଚ ଚିନ୍ତା ନୁହେଁ କି ଗମ୍ଭୀର ଭାବ ନୁହେଁ—ମୂଳ ପ୍ରେରଣା ହେଉଛି ବିଶ୍ୱ ସୃଷ୍ଟି ସହିତ କବି ଅନ୍ତରର ଆତ୍ମୀୟତା । ଯେପରି ରବୀନ୍ଦ୍ରନାଥଙ୍କ "ମରିତେ ଚାହିନା ଆମି ସୁନ୍ଦର ଭୂବନେ/ ମାନବେର ମାଝେ ଆମି ବାଁଚିବାରେ ଚାଇ" କବିଙ୍କର ବିଶ୍ୱ ସୃଷ୍ଟି ପ୍ରତି ଗମ୍ଭୀର ଆତ୍ମୀୟତା ପ୍ରକାଶ ପାଇଛି । ରବୀନ୍ଦ୍ରନାଥଙ୍କ ଉପରୋକ୍ତ କବିତା ପରି ଓଡ଼ିଆ ସାହିତ୍ୟରେ ମଧୁସୂଦନ, ଗୋପବନ୍ଧୁ, କୁନ୍ତଳା କୁମାରୀ ଏବଂ ମାନସିଂ ଆଦି ବହୁ କବିଙ୍କର ଅଧିକାଂଶ କବିତାରେ ଏହି କାବ୍ୟାଦର୍ଶ ଅଭିବ୍ୟକ୍ତ ହୋଇଛି । ତେଣୁ ମାନସିଂହଙ୍କର କବିତାରେ Subjectivity ବା ମନ୍ମୟତା ଅପେକ୍ଷା Objectitity ବା ତନ୍ମୟତା ଉତ୍କର୍ଷ ଲାଭ କରିଛି । ମାନସିଂହଙ୍କ ଶିଳ୍ପଗତ ଦୃଷ୍ଟିଭଙ୍ଗୀ କେତେ ବେଶୀ ତାଙ୍କ କବିତାର ଭାଷାରେ ଏବଂ ଛନ୍ଦରେ ପ୍ରତିଫଳିତ ହୋଇଛି ତାହା ବିଗ୍ଧର୍ଯ୍ୟ ।

**କାବ୍ୟ ସୃଷ୍ଟିରେ ଭାଷାର ଭୂମିକା—**

"କବିତା ସ୍ୱୟଂପ୍ରକାଶ, ତଥାପି ପ୍ରକାଶର ଅପେକ୍ଷା ରଖେ"

"A good poem for instance, is not an outburst of

(୨) ଈଶ୍ୱର ଶ୍ରୀ ମାୟାଧର ମାନସିଂହ — ଶ୍ରୀ ନିତ୍ୟାନନ୍ଦ ମହାପାତ୍ର—ମାନସିଂହ ସ୍ମରଣିକା—ପୃ-୮୨

pure feeling, but is the result of a more than common power of controlling and manipulating feelings.'' (୩) କବିଙ୍କୁ ତାଙ୍କର ଅନୁଭୂତି ବସ୍ତୁପ୍ରତୀକ (ପ୍ରତୀକ କମ୍ବା ଚିତ୍ରକଳ୍ପ) ମାଧ୍ୟମରେ ପରିସ୍ଫୁଟ କରିବାକୁ ପଡ଼ିବ । ସେ ଏକ ପକ୍ଷରେ ଭାବାନୁଭୂତିର କୁହୁଳାକୁ ରୂପସ୍ଥାନତାର ସଙ୍କୋଚରୁ ରକ୍ଷା କରିବେ, ଅପରପକ୍ଷରେ ବସ୍ତୁଜଗତର ପାଷାଣୀ ଅହଲ୍ୟାକୁ ପ୍ରାଣଭରା ଜୀବନ୍ତସତ୍ତାକୁ ଉତ୍ତୀର୍ଣ୍ଣ କରିନେବେ । କବିତାର ରୂପ ଜ୍ୱଳନ୍ତ ଓ ଜୀବନ୍ତ ରୂପ ପ୍ରଭାବରେ ଭାସ୍ୱର ହୋଇଉଠିବ । କବିତା ହେବ—a cage of from. କବି ମାନସିଂଙ୍କ ସମ୍ବେଦନାର ଫୁଟିଲି ଫୁଲ × × × ଭଗବାନଙ୍କ ପରେ କବି ହେଉଛନ୍ତି ଦ୍ୱିତୀୟ ସ୍ରଷ୍ଟା—ସ୍ୱୟଂ ସୃଷ୍ଟି ତାଙ୍କର ଅର୍ଥବାନ × × × କବିତାର ଭାଷା ସୃଷ୍ଟିକ୍ଷମ । ଏହି ଭାଷା ସାହାଯ୍ୟରେ ସେ କବିତାର ବିଷୟବସ୍ତୁ ମଧ୍ୟରେ ନିଜର ସହାନୁଭୂତିକୁ ଅଭିନିବିଷ୍ଟ କରାଇପାରନ୍ତି ।'' (୪) ପ୍ରତିଦିନର ଜୀବନରୁ ବିଭିନ୍ନ ଉପାଦାନ ସଂଗ୍ରହ କରି କବି ଭାଷାରେ ମୂର୍ତ୍ତି ଗଢ଼ନ୍ତି । ତେଣୁ ସେ ସ୍ରଷ୍ଟା । ବିଭିନ୍ନ ରଙ୍ଗରେ ଯେପରି ଭାବରେ ଚିତ୍ରଟିଏ ରୂପ ଲାଭ କରେ, କବିଙ୍କର ଶିଳ୍ପଗତ ବୈଚିତ୍ର୍ୟ ମଧ୍ୟରେ ଭାଷାରୁ ଫୁଲ ଫୁଟେ । ଏ ସମ୍ପର୍କରେ 'କୁନ୍ତକ୍' ଅତି ଚମତ୍କାର ଭାବରେ ପ୍ରକାଶ କରିଛନ୍ତି—

''ମନୋଜ୍ଞ ଫଳ କୋଲ୍ଲେଖ ବର୍ଣ୍ଣଚ୍ଛାୟାଶ୍ରିୟଃ ପୃଥକ୍
ଚିତ୍ରସ୍ୟେବ ମନୋହାରି କର୍ତ୍ତୁଃ କମପି କୌଶଳମ୍ ।''
(ବକ୍ରୋକ୍ତି ଜୀବିତମ୍, ୩/୪)

କବିତା ପ୍ରାୟ ନୂଆ କଥା କିଛି କହେ ନାହିଁ । ପୁରୁଣା କଥାକୁ ନୂଆ ରୂପ ଦିଏ ମାତ୍ର । କବିତାରେ ଶବ୍ଦର ଗୁରୁତ୍ୱ ବହୁତ ବେଶୀ । ଶବ୍ଦର ଧ୍ୱନିରୁ ଜନ୍ମ ଘେନେ ଛନ୍ଦ ଓ ଯତିପାତ । ଏସବୁର ସାମଗ୍ରିକ ଆବେଦନ ଅନ୍ୟାନ୍ୟ ଭାଷା ରଚନାଠାରୁ କବିତାକୁ ସ୍ୱତନ୍ତ୍ର କରି ରଖେ । କବିତାର ରୂପ ସୃଷ୍ଟି ଶବ୍ଦ ପ୍ରୟୋଗ କୌଶଳ ଉପରେ ନିର୍ଭର କରେ । ମାନସିଂହଙ୍କ କବିତାରେ ଏହି ଯତିପାତ, ଛନ୍ଦ ଏବଂ ବାକ୍‌ଭଙ୍ଗୀ ସହିତ କାବ୍ୟଭାଷାର କିପରି ଅପୂର୍ବ ସମନ୍ୱୟ ହୋଇଛି; ତାହା ପରବର୍ତ୍ତୀ ପର୍ଯ୍ୟାୟରେ ଆଲୋଚିତ ହେବ । କାବ୍ୟ କବିତା ପାଇଁ କଳ୍ପନା-ଶକ୍ତିର କେବଳ ଆବଶ୍ୟକତା ରହିଛି ତାହା ନୁହେଁ; ଛନ୍ଦର ଭୂମିକା ମଧ୍ୟ ଅସ୍ୱୀକାର କରିହେବ ନାହିଁ । ମନେହୁଏ ଯେପରି କବିଙ୍କର ମନ୍ତ୍ର ବଳରେ ବହୁକାଳର ପୁରୁଣା ଭାଷା ନୂଆ ହୋଇଯାଏ ।

---

(୩) The New Republic, LVIII, 1928, Page-10
(୪) ଆଧୁନିକ କାବ୍ୟ ଜିଜ୍ଞାସା : ଚିତ୍ରକଳ୍ପ—ଶ୍ରୀ ଦାଶରଥି ଦାସ, ପୃ. ୧୭/୧୮

**ମାନସିଂହ କବିତାର ଛନ୍ଦ—**

ରାଧାନାଥ ଏବଂ ନବଯୁଗର ପଥିକ କବିମାନେ ପ୍ରାଚୀନ ଓଡ଼ିଆ ଛନ୍ଦ ପ୍ରତି ସମ୍ପୂର୍ଣ୍ଣ ଅବହିତ ଥାଇ ମଧ୍ୟ ନାନା ଭାବରେ ପାଶ୍ଚାତ୍ୟ ଛନ୍ଦ ରୀତି ଆହରଣ କରିଛନ୍ତି । ସତ୍ୟବାଦୀ, ସବୁଜ ଓ ଅତ୍ୟାଧୁନିକ କବିମାନଙ୍କ ଲେଖନୀରେ କାବ୍ୟରୀତି ଓ ଲିଖନ ଶୈଳୀର ପରିବର୍ତ୍ତନ ଘଟିବା ସଙ୍ଗେ ସଙ୍ଗେ ନୂତନ ଛନ୍ଦର ପ୍ରୟୋଗ ଦେଖାଦେଲା । କବିତାରେ ଛନ୍ଦ ଏକ ପ୍ରାଚୀନ ପରମ୍ପରା । ଯତି, ପଦ ଯୋଜନା, ପ୍ରାନ୍ତିକ ମେଳ ଯେନ ଛନ୍ଦ ଗଠିତ ନୁହେଁ । କବିତା ସହିତ ଛନ୍ଦର ଯୋଗ ଆତ୍ମିକ । ଛନ୍ଦ ଭିତରେ କବିଙ୍କର ସୃଜନଶକ୍ତି ଅନୁମିତ ହୋଇଥାଏ । କବି କେବଳ ସୃଷ୍ଟି କରନ୍ତି ନାହିଁ—ସେ ମଧ୍ୟ ନିର୍ମାଣ କରନ୍ତି । ତାଙ୍କର ଶିଳ୍ପ-ସୌଧ କାଳ ବକ୍ଷରେ ଅମର ହୋଇଉଠେ । କାବ୍ୟରେ ଏହି ଶୈଳ୍ପିକ ବିଭବକୁ ପ୍ରତ୍ୟକ୍ଷୀଭୂତ କରାଇବା ଛନ୍ଦର କାମ । ଇଂରେଜ କବି ଓ୍ୱାର୍ଡ଼ସ୍ୱାର୍ଥ ଛନ୍ଦ ପ୍ରସଙ୍ଗରେ ଅତି ଗଭୀର ଭାବରେ ଚିନ୍ତା କରିଛନ୍ତି । ତାଙ୍କ ମତରେ କବିତାର ମୌଳିକ ଉଦ୍ଦେଶ୍ୟ ଛନ୍ଦ ଦ୍ୱାରା ସାଧିତ ହୁଏ । ପଣ୍ଡିତ ନୀଳକଣ୍ଠଙ୍କ ବିଚାରରେ "ଛନ୍ଦ ଏକ ବହମାନ ପରମ୍ପରା । ଏହାର ପରିସର ବିପୁଳ । କେତେବେଳେ ଜୀବନରେ, ଭାସ୍କର୍ଯ୍ୟରେ ଅଥବା କାବ୍ୟ କଳାରେ ରୂପାୟିତ ହୋଇ ଛନ୍ଦ ନିଜର ପ୍ରବାହରେ ବହୁ ପରମ୍ପରାର ସମନ୍ୱୟ ସାଧନ କରେ । ପ୍ରାଚୀନ ସହିତ ନବୀନର ଯୋଗସୂତ୍ର ରକ୍ଷା କରେ । ପୁଣି ଛନ୍ଦ ସହିତ ଭାଷାର ଉଚ୍ଚାରଣରୀତି ଓ କବିତାର ଭାବପ୍ରକାଶ ଶକ୍ତିର ସମ୍ବନ୍ଧ ନିବିଡ଼ ।" ଏହି ପରିପ୍ରେକ୍ଷୀରେ ମାନସିଂହ କବିତାରେ ଛନ୍ଦ ଆଲୋଚନା କଲେ ଜଣାଯାଏ ସମସ୍ତ ପ୍ରୟୋଗବାଦିତା ଠାରୁ ସେ ଦୂରରେ ରହିଛନ୍ତି । ସେ ଅତି ସଫଳ ଭାବରେ ତାଙ୍କର ବହୁ କବିତାରେ ମାତ୍ରାବୃତ୍ତ ବା ଯୁକ୍ତାକ୍ଷର ଛନ୍ଦର ଅନୁସରଣ କରିଛନ୍ତି । ଯେପରି—

"ବକ୍ଷଭରା ଏ ପ୍ରଣୟ ମୁଁ କାହେ ଦେବି ଗୋ;
ବଡ଼ ଉଚାଟ କରେ ମୋତେ ଦିନରାତି
ଅଶ୍ରୁ ନିଛାଟ କାହାର ଚରଣ ସେବି ଗୋ
ସକଳ ଲୋମ ମୋ ପୁଲକବି ଡାକ ସାଥୀ ।"

(ଧୂପ, 'ପ୍ରଣୟୀ' ଗ୍ର. ପୃ. ୧୦୩)

ଏହି ସମ୍ବୋଧନଶୀଳତା ମାନସିଂହଙ୍କ 'ଧୂପ'ର ଅଧିକାଂଶ କବିତାରେ ଦ୍ରଷ୍ଟବ୍ୟ । ମାନସିଂହଙ୍କ କବିତାରେ ସଂଳାପଧର୍ମୀ ଛନ୍ଦର ବ୍ୟବହାର ଅଧିକାଂଶ କବିତାରେ ଦେଖାଯାଏ । "କବି କହେ ଅୟି କୁସୁମ ସଜନୀ କାହା ପରଶେ/ ଲାଜି ପଡ଼େ ଲୁଚି ଅଧରଟି ଗୁରୁ ତରୁଣ ହସେ ।" (ପୁଷ୍ପର ସ୍ୱପ୍ନ)

ଓଡ଼ିଆ ସାହିତ୍ୟରେ ସବୁଜମାନେ ଏହି ମାତ୍ରାବୃତ୍ତ ଛନ୍ଦର ପ୍ରଥମ ପ୍ରବର୍ତ୍ତକ ହେଲେହେଁ କବି ମାନସିଂହଙ୍କ ହାତରେ ତାହା ପୂର୍ଣ୍ଣତା ପାଇପାରିଛି । ମାତ୍ରାବୃତ୍ତ ଛନ୍ଦରୁ ଅକ୍ଷରବୃତ୍ତ ଛନ୍ଦକୁ ବ୍ୟାପକ ଭାବରେ ଗଢ଼ି କବି ମାନସିଂହଙ୍କର ଛନ୍ଦ ରସିକତାର ଅନବଦ୍ୟ ପରିଚୟ—ଯେପରି "କବିଭୂମି, ଶିଳ୍ପଧାତ୍ରୀ, ତୁହିଟି ମା' ବିଶ୍ୱେଗରବିଣୀ, ବୀରମାତା ଉତ୍କଳ ଜନନୀ ।" 'କମଳାୟନ' କାବ୍ୟସ୍ଥିତ ବିଭିନ୍ନ ସର୍ଗରେ ମୁକ୍ତଛନ୍ଦର (Free verse) ପ୍ରୟୋଗରେ ମଧ୍ୟ ତାଙ୍କର ସଫଳତା ରହିଛି । କିନ୍ତୁ ଏହି ଆଧୁନିକତାକୁ ବର୍ଜନ କରି ପୁନଶ୍ଚ ସ୍ୱକୀୟ ଛନ୍ଦର ମାତ୍ରାବୃତ୍ତ ବିଭବ ଭିତରକୁ ଫେରି ଆସିଛନ୍ତି । ଏହା ତାଙ୍କ ସାଧନାମୟ ଜୀବନର ଇତିବୃତ୍ତ । ବେଳେବେଳେ ମାନସିଂହଙ୍କ ଛନ୍ଦ ନାଟକୀୟ ଭାବରେ ବିଭିନ୍ନ ସଂଳାପ ମଧ୍ୟ ଦେଇ ଗତି କରିଛି । ଏହି ସଂଳାପଧର୍ମୀ ଛନ୍ଦ ଗୀତିନାଟ୍ୟ ମାନଙ୍କରେ ଅଧିକ ପ୍ରାଧାନ୍ୟ ଲଭ କରିଥିବାର ଦେଖାଯାଏ । "ଆଚ୍ଛା ତ କହିଲ ! ତୁମେ କିଏ ଭୂମିନାହିଁ ? କହୁଛନ୍ତି ଜନେ/ତୁମେ ପୁଣି ଅଟ ରାଜା ଭୁବନେ ଭୁବନେ ।" (ପୂଜାରିଣୀ—ଗ୍ର.ପୃ. ୪୬୫) "ଅୟି ପ୍ରିୟେ, ଜାଣ କିଗୋ ପ୍ରେମ ଭବ କିବା ବ୍ୟଥା ଦିଏ ।" (ପ୍ରଣୟବ୍ୟଥା—ଧୂପ ପୃ-୮୪)

ସବୁଜ ସମସାମୟିକ ଏକକ କବି ଭାବରେ ମାନସିଂହ ଯଦିଓ ବ୍ୟତିକ୍ରମ ତଥାପି ସେ ସବୁଜମାନଙ୍କ ପରି ଛନ୍ଦ ପ୍ରୟୋଗରେ ଆମ ପରଂପରାକୁ ଲଙ୍ଘନ କରି ବଙ୍ଗୀୟ ଛନ୍ଦକୁ ଅନୁସରଣ କରିଛନ୍ତି । କବି କାଳନ୍ଦୀଚରଣ ତାଙ୍କର ପୁରୀ ମନ୍ଦିର କବିତାରେ ମୁକ୍ତ ଛନ୍ଦ ପ୍ରୟୋଗ କରି କବି ସଚ୍ଚିଦାନନ୍ଦ ରାଉତରାୟଙ୍କ ବହୁ ଆଗରୁ ଆଧୁନିକ ଓଡ଼ିଆ କବିତାକୁ ଏକ ନୂତନ ଦିଗ୍‌ଦର୍ଶନର ପରିଚୟ ଦେଇଥିବେଳେ କବି ମାନସିଂହ ମଧ୍ୟ ତାଙ୍କର 'କମଳାୟନ' କାବ୍ୟରେ ମୁକ୍ତ ଛନ୍ଦ ପ୍ରୟୋଗ କରି ଏକ ନୂତନ ପରଂପରା ସୃଷ୍ଟି କରିଛନ୍ତି । ଏହା ବ୍ୟତୀତ କବି ମାନସିଂହ ବିଷମ ବୃତ୍ତ ଛନ୍ଦ ଏବଂ ଧାବମାନ ଛନ୍ଦର ପ୍ରୟୋଗ ମଧ୍ୟ କରିଛନ୍ତି । ଧାବମାନ ଛନ୍ଦ ଭାବରେ 'ଦୂରେ ରହି', 'ଭଲପାଅ' ଏବଂ ବିଷମବୃତ୍ତ ଛନ୍ଦ ଭାବରେ 'ମା ଓଡ଼ିଶା' କବିତାକୁ ଗ୍ରହଣ କରାଯାଇପାରେ ।

ମାନସିଂହଙ୍କ କାବ୍ୟଶୈଳୀର ଅନ୍ୟ ଏକ ବିଭବ ହେଲା ସନେଟ ରଚନା । ମାନସିଂହଙ୍କ ବହୁ କବିତାରେ ପରିଣୀତା ବଧୂଙ୍କ ପ୍ରତି ଗଭୀର କୃତଜ୍ଞତା ଓ ସମ୍ମାନବୋଧ ଜ୍ଞାପିତ ହୋଇଛି । ଏହି ପର୍ଯ୍ୟାୟର ପ୍ରେମ କବିତାରେ ପରିବର୍ତ୍ତିତ ଭାବକୁ ପ୍ରକାଶ କରିବା ପାଇଁ କବି ସନେଟ୍‌ର ଆଙ୍ଗିକକୁ ଗ୍ରହଣ କରିଛନ୍ତି । ଏହା ସନେଟ୍ ନୁହେଁ ବୋଲି କବି ମୁଖବନ୍ଧରେ ଯେତେ କହିଲେ ମଧ୍ୟ; ଓଡ଼ିଆ ସାହିତ୍ୟରେ ଏ ଗୁଡ଼ିକ ବେଶ୍ ମୂଲ୍ୟବାନ୍ ସନେଟ୍ ଭାବରେ ଗୃହୀତ । ଯୁଗେ ଯୁଗେ ପ୍ରତ୍ୟେକ କବି ନିଜର ବ୍ୟକ୍ତିଗତ ପ୍ରେମାନୁଭୂତିକୁ ସନେଟ୍‌ର ଆଙ୍ଗିକ ମଧ୍ୟରେ

ପ୍ରକାଶ କରିଛନ୍ତି । "ପ୍ରଣୟିନୀ (Loura)ଙ୍କ ଉଦ୍ଦେଶ୍ୟରେ ରଚିତ ପ୍ରେଟ୍ରାର୍କଙ୍କ ସନେଟ୍‌ଠାରୁ ସାର୍ ଫିଲିପ୍ ସିଡ୍‌ନୀଙ୍କ 'Astrophel and Stella' ବାଟ ଦେଇ କବି ଓ୍ୱାର୍ଡ଼ସ୍‌ଓ୍ୱାର୍ଥଙ୍କ ସନେଟ୍ ପର୍ଯ୍ୟନ୍ତ ଇଂରେଜୀ ସାହିତ୍ୟର ଯେଉଁ ଗତିଶୀଳତା ପରିଲକ୍ଷିତ ହୁଏ, ଓଡ଼ିଆ କବିତାରେ ଶ୍ରୀ ମାନସିଂହ ହିଁ, ଯଥାର୍ଥରେ ତାହାର ଯୋଗସୂତ୍ର ରକ୍ଷାକରି ପାରିଛନ୍ତି । ଜୀବନର ସୁଖ ଦୁଃଖର ଭେଳା ଭାବରେ ଅନ୍ତରର ଅନନ୍ତ ଆକୁଳତାକୁ ଆମ ଆଗରେ ପ୍ରକାଶ କରିବା ପାଇଁ ଏ ସନେଟ୍ ଗୁଡ଼ିକରେ ରହିଛି ଜାଗ୍ରତ ବ୍ୟାକୁଳତା" (୫)

ଭକ୍ତକବି ମଧୁସୂଦନ ହେଉଛନ୍ତି ଓଡ଼ିଆରେ ସନେଟ୍ କାବ୍ୟରୂପର ବିକାଶକର୍ତ୍ତା । ତାଙ୍କ ପ୍ରଦତ୍ତ ନାମ ଯେଉଁ ସନେଟ୍ ଅଦ୍ୟାବଧି 'ଚତୁର୍ଦ୍ଦଶପଦୀ' କବିତା ରୂପେ ପରିଚିତ । ମଧୁସୂଦନ ଇଂରେଜୀ ସେକ୍‌ସପିୟରିଆନ୍ ସନେଟ୍ ସ୍ତବକର ଆଦର୍ଶ ଅନୁସରଣ କରିଛନ୍ତି ଓ କେତେକ କ୍ଷେତ୍ରରେ ମିଶ୍ରିତ ସ୍ତବକ ବ୍ୟବହାର କରିଛନ୍ତି । ଇଂରେଜୀ ସନେଟ୍ ପରି ମଧୁସୂଦନଙ୍କର ସନେଟ୍ ଗୁଡ଼ିକର ବିଷୟକ୍ଷେତ୍ର ବ୍ୟାପକ । କ୍ଲାସିକ ବା ପେଟ୍ରାର୍କାନ୍ ସନେଟ୍ ପରି ଏହା କେବଳ ମାନବିକ ପ୍ରେମଭାବସର୍ବସ୍ୱ ନୁହେଁ । କିନ୍ତୁ ମାନସିଂହଙ୍କ 'ସନେଟ୍'ରେ ମାନବୀୟ ପ୍ରୀତିର ଆତ୍ମିକ ପରିଚୟ ଉତ୍ତୀର୍ଣ୍ଣ । ଅବଶ୍ୟ 'ଅକ୍ଷତ'ର ଆଠଟି ସନେଟ୍ ଓ 'ଜୀବନଚିତା'ର ଦୁଇଟି ସନେଟ୍‌ରେ ଈଶ୍ୱରାନୁରକ୍ତି ଅଧିକ ସ୍ପଷ୍ଟ । କିନ୍ତୁ ପ୍ରେମ ହିଁ ମାନସିଂହଙ୍କ ସନେଟର ମୂଳ ଉତ୍ସ । ସେଥିପାଇଁ ମହାପାତ୍ର ନୀଳମଣି ସାହୁ କହନ୍ତି "ଆପଣଙ୍କ ବ୍ୟକ୍ତିତ୍ୱ କି ଅଦ୍ଭୁତ । କେତେ ବିରୋଧାଭାଷ ବିଚିତ୍ର ଗତିବୃତ୍ତିରେ ଗୋଳାଆମିଶା ବ୍ୟକ୍ତିତ୍ୱ ଆପଣଙ୍କର କେତେ ସୁମଧୁର × × ଆପଣ ଆଗ କବି ନା ଆଗ ପ୍ରେମିକ । ବୋଧେ ଆଗ ପ୍ରେମିକ । ପ୍ରେମ ହିଁ ଆପଣଙ୍କ କବିତାର ଉତ୍ସ ।" (୬) ପ୍ରେମ ଓ ଅତିଭୌତିକ ଭାବଧାରାର ଏକ ମୁଗ୍ଧ ସମନ୍ୱୟ ମାନସିଂହଙ୍କ ସନେଟ୍ ଗୁଡ଼ିକରେ ସଙ୍ଗଠିତ ହୋଇଥିବା ଲକ୍ଷ୍ୟ କରାଯିବ । "ଦେବତାର ମହାପ୍ରାଣ ପଶେ ଏ ଶରୀରେ/ଚେତନା ମୋ ଅତୀନ୍ଦ୍ରିୟ ହୁଏ ଧୀରେ ଧୀରେ" (ହେମଶସ୍ୟ—ସୋହାଗ—ପୃ-୧୮୫) । କଠୋର ଜୀବନଯୁଦ୍ଧରେ କ୍ଷତବିକ୍ଷତ କବି ଭଗବାନଙ୍କ ପ୍ରତି ଆସ୍ଥାବାନ୍ ହୋଇ ଉଠିଛନ୍ତି — "ଜୀବନେ ଜୀବନେ ଜନ୍ମି ରକ୍ତ ମୋର ଦେଇ/ମେଣ୍ଟିବି ମାନବ ଦୁଃଖ, ଋଣ ଅଙ୍ଗେ ନେଇ ।" (ମୁକ୍ତି ନାହିଁ ମାଗେ—ହେମଶସ୍ୟ—ଗ. ପୃ.-୧୯୯)

---

(୫) ସବୁଜରୁ ସାଂପ୍ରତିକ — ଡକ୍ଟର ନିତ୍ୟାନନ୍ଦ ଶତପଥୀ—ପୃ-୧୩୪

(୬) ଗୁଣ ସୁମର ହୁଅନ୍ତି ବିକଳ — ଅଧ୍ୟାପକ ମହାପାତ୍ର ନୀଳମଣି ସାହୁ—ମାନସିଂହ ସ୍ମରଣିକା, ପୃ-୬୫

'ହେମଶସ୍ୟ'(୧୯୩୬)ର ସନେଟ୍ ଗୁଡ଼ିକ ଦାମ୍ପତ୍ୟ ଜୀବନର ସୁଖ-ଦୁଃଖରେ ବର୍ଣ୍ଣୋଜ୍ଜ୍ୱଳ ହେବା ସଙ୍ଗେ ସଙ୍ଗେ ଆତ୍ମାର ସୌନ୍ଦର୍ଯ୍ୟରେ ଏହା ଅଧିକ ଗମ୍ଭୀର । 'ଧୂପ'ର କବିତା ଥିଲା ଗିରିନଦୀ ପରି ବେଗବାନ; କିନ୍ତୁ ଭାବ, ଭାଷା ଓ ଛନ୍ଦ ଦୃଷ୍ଟିରୁ 'ହେମଶସ୍ୟ' ସଂଯମ ଗୌରବର ଅଧିକାରୀ ହୋଇଥିଲେ ହେଁ, ଧୂପର ଉଚ୍ଛଳ ପ୍ରାଣପ୍ରବାହ ଏଥିରେ ସନ୍ଧାନ କରି ହୁଏ ନାହିଁ । ସେଥିପାଇଁ ସମାଲୋଚକ ଅଧ୍ୟାପକ ଚନ୍ଦ୍ରାମଣି ବେହେରା କହନ୍ତି—"ପ୍ରଣୟର ସରସପୀୟୂଷ ରହି ଏଇ ଯେ କବି ହରାଇ ବସିଲେ ତା'ର କ୍ଷତିପୂରଣ ପରବର୍ତ୍ତୀ ସୃଷ୍ଟିରେ ବହୁ ଦାଗରୁ କରିଥିଲେ ହେଁ, ପ୍ରେମାମୃତର ସ୍ୱାଦୁ ଲାଭ କରିବାକୁ ଏହି ରୂପପ୍ରାଣ କବି ଆଉ ସମର୍ଥ ହୋଇପାରି ନାହାନ୍ତି । ଏହାର ଏକ ମୁଖ୍ୟ କାରଣ, ରୂପଜ ପ୍ରେମ ପ୍ରତି କବିଙ୍କ ଶିଳ୍ପଚେତନାର ସଚେତନ ବିଦ୍ରୋହ ।" (୭) ମାନସିଂହ ପରବର୍ତ୍ତୀ ପର୍ଯ୍ୟାୟରେ ନାରୀକୁ କେବଳ ପ୍ରଣୟିନୀ ବୋଲି ପରିକଳ୍ପନା ନ କରି, କଲ୍ୟାଣମୟୀ ସର୍ବଂସହା ଧରଣୀ ବୋଲି କଳ୍ପନା କରି ତା'ର ପାଦତଳେ ପ୍ରଣତି ବାଢ଼ିଛନ୍ତି—

"ଜନୟିତ୍ରୀ ମାନବ ଜାତିର/ହେ ନାରୀ କରଇ ନମସ୍କାର"—(ନବଜନନୀ—ହେମଶସ୍ୟ—ପୃ-୬୬୦) । ଏହାର ମଧ୍ୟରେ ପାଠକ ଏକ ଆତ୍ମାନୁସନ୍ଧାନୀ ଉତ୍କଣ୍ଠ ମନର ସନ୍ଧାନ ପାଇପାରେ । ମାନସିଂ ନିଜେ ସ୍ୱୀକାର କରିଛନ୍ତି "ପ୍ରୀତିର ଆଦି ଅଛି କିନ୍ତୁ ଶେଷ ନାହିଁ । ପ୍ରତ୍ୟେକ ଦିନର ଉଷା ପରି ପ୍ରୀତି ନିତ୍ୟ ନୂତନ । ବନ୍ଧନରେ ତା'ର ମୁକ୍ତି ଏବଂ ଏହି ବନ୍ଧନ ବା ସ୍ୱେଚ୍ଛାସ୍ତ୍ରୀ ହିଁ ସ୍ୱର୍ଗର ଆନନ୍ଦ ଆଣିଦିଏ । "ପ୍ରୀତିର ଆଦି ଅଛି ଶେଷ ତ ନାହିଁ ନିତି ସେ ନୂଆ ଉଷା-ପରିରେ/ବନ୍ଧନେ ତହିଁ ଏକା ମୁକତି ପାଇ ସ୍ୱରଗ-ଅନୁଭୂତି ଶରୀରେ" (ନିତ୍ୟ ସ୍ୱୟମ୍ବର—ପୃ-୬୧୮) ଏଇଥିପାଇଁ ରୂପପିପାସୁ କବି ଯୁଗେ ଯୁଗେ 'ଧରାବତରଣ' କରିଛି । ଜୀବନର ସବୁର ଊର୍ଦ୍ଧ୍ୱରେ ସେହି ପ୍ରଣୟାନୁଭୂତି । ବାସ୍ତବିକ ଓଡ଼ିଆ ସାହିତ୍ୟରେ ଏଭଳି ସ୍ୱର ସଂପୂର୍ଣ୍ଣ ଭାବରେ ନୂତନ । ରବୀନ୍ଦ୍ରନାଥଙ୍କ ଚିନ୍ତା ସହିତ ଏହା ସଖ୍ୟ ସ୍ଥାପନ କରେ । ନାରୀ ଏବଂ ପୁରୁଷର ପ୍ରେମ ମଧ୍ୟରେ ରବୀନ୍ଦ୍ରନାଥ ଅନୁଭବ କରିଛନ୍ତି ନିଖିଳର ସ୍ପନ୍ଦନ । ଅନନ୍ତର ଅନୁଭୂତି । ବିଚ୍ଛେଦରେ ସେ ପ୍ରେମର ଅବସାନ ନାହିଁ । କାଳୋତ୍ତୀର୍ଣ୍ଣ ହୋଇଯାଇଛି ସେ ପ୍ରେମ ।

"ଆମରା ଦୁଜନେ ଭାସିୟା ଏସେଛେ ଯୁଗର ପ୍ରେମେର ସ୍ରୋତେ
ଅନାଦି କାଲେର ହୃଦୟ ଉତ୍ସ ହତେ/ଆମରା ଦୁଜନେ

(୭) କାବ୍ୟ ଓ କଳାକାର — ମାନସିଂହଙ୍କ କାବ୍ୟପ୍ରତିଭା — ଅଧ୍ୟାପକ ଚନ୍ଦ୍ରାମଣି ବେହେରା — ପୃ-୧୧୬

କରଅଛୁ ଖେଳ କୋଟି ପ୍ରେମିକର ମାଝେ
ବିରହ ବଧୂର ନୟନ ସଲିଳେ । ମିଳନ ମଧୁର ଲାଜେ
ପୁରାତନ ପ୍ରେମ ନିତ୍ୟ ନୂତନ ସାଜେ”—
(ଅନନ୍ତ ପ୍ରେମ—ସଞ୍ଚୟିତା)

ପ୍ରେମର ଏହି ଚିରନ୍ତନତାକୁ ମାନସିଂହ ବହୁ କବିତାରେ ସ୍ୱୀକାର କରି ଯାଇଛନ୍ତି--

“ଅୟୁତ ଅୟୁତ ଜନମ ବିତାଇ
ପୁଣି ଗୋ ପୁରୁଣା ଧରଣୀ ତଳେ,
ଜନମ କି ଆମ ଯୁଗଳ ପରାଣ
ମାନବ ଶରୀରେ ମାନବ ଘରେ ।
(ବିରହିଗାଥା—ହେମଶସ୍ୟ—ପୃ ୨୧୦)

ମାନସିଂହ କେବଳ ପ୍ରେମାନୁଭୂତିକୁ ଅବଲମ୍ବନ କରି ଯେ ସନେଟ୍ ଲେଖିଛନ୍ତି ତାହା ନୁହେଁ; ଈଶ୍ୱର, ପ୍ରକୃତି, ସ୍ୱଦେଶପ୍ରୀତି ଏବଂ ପ୍ରତିଭା ସ୍ମରଣ ଇତ୍ୟାଦି ବିଷୟର ବ୍ୟାପକତା ତାଙ୍କ ସନେଟ୍ ସମୂହରେ ଲକ୍ଷଣୀୟ । ‘ଗୋପବନ୍ଧୁ’, ‘ଚନ୍ଦ୍ରଶେଖର’ ଇତ୍ୟାଦି ପ୍ରତିଭା ସ୍ମରଣରେ ସେ ଯେପରି ଦକ୍ଷତା ପ୍ରଦର୍ଶନ କରିଛନ୍ତି; ‘ହେମନ୍ତ ପ୍ରଭାତ’ ‘ବସନ୍ତ ଅଭିସାର’, ‘ଚିଲିକା’ ‘ଗ୍ରାମ ସନ୍ଧ୍ୟା’ ଇତ୍ୟାଦିରେ ନିସର୍ଗ ପ୍ରକୃତି ପ୍ରତି କବିଙ୍କର ମମତ୍ୱବୋଧ ସେହିପରି ଭାବରେ ପ୍ରକାଶ ପାଇଛି । ‘ହେମନ୍ତ ପ୍ରଭାତ’ରେ ନିସର୍ଗ ପ୍ରକୃତି ଚମତ୍କାରିତା ସୃଷ୍ଟି କରିଛି । “ହେମନ୍ତ ପ୍ରଭାତକାଳ, ନବୋଦିତ ରବି/ସୃଜିଅଛି ସ୍ୱର୍ଣ୍ଣିକରେ ଅନୁପମ ଛବି । ଶ୍ୟାମଳ ପ୍ରକୃତି ଅଙ୍ଗେ/ବନସ୍ପତି ଶିରେ/ସ୍ୱର୍ଣ୍ଣିଆବରଣ ସମ ପଡ଼ିଛି ଲୁଚିରେ ।” (ହେମନ୍ତ ପ୍ରଭାତ—ହେମଶସ୍ୟ—ପୃ. ୧୮୩) । ରୂପପ୍ରାଣ ରାଧାନାଥ ‘ଚିଲିକା’ ପ୍ରତି ଯେଉଁଭଳି ବିମୁଗ୍ଧ ହୋଇଥିଲେ, ମାନସିଂହ ମଧ୍ୟ ସେହିପରି ଭାବରେ ତାଙ୍କର ବହୁ କବିତାରେ ‘ଚିଲିକା’ ପ୍ରତି ଆକୃଷ୍ଟ ହୋଇଛନ୍ତି, “ରହିରେ ଆଗ୍ନେୟରଥ, ଦେଖିବି ସୁନ୍ଦରୀ, ତା ନୀଳ ଲୋଚନେ ନୀଳ ଚକ୍ରବାଳ ଧରି/ନୀଳ ଜଳରାଶି କେଉଁ ଉନ୍ମୁକ୍ତ ଶୋଭାରେ/ ଉଦ୍ଭାନେ ରହିଛି ଶୋଇ ।” (ଚିଲିକା-ହେମଶସ୍ୟ, ପୃ. ୧୭୯) । “ପ୍ରାକୃତିକ ସୁଷମା ସହ ଦୁର୍ଲ୍ଲଭ ମିଳନ ଘଟିଛି ଏକ ତରୁଣ, ସରସ, ରୂପ-ବୁଭୁକ୍ଷୁ, ସୂକ୍ଷ୍ମ ଦୃଷ୍ଟିବନ୍ତ ପ୍ରତିଭାର—ଯେପରିକି ଶହେ ବର୍ଷ ତଳେ ଘଟିଥିଲି ‘ଚିଲିକା’ ଓ ରାଧାନାଥଙ୍କ ଭିତରେ ।” (ଦାଶରଥି ଦାସ—ମାନସିଂହ ସୃଷ୍ଟି ଓ ସମୀକ୍ଷା, ପୃ. ୩୯ ।)

ଏଲିଜି—

'ହେମଶସ୍ୟ'ର ସନେଟ୍‌ମାନଙ୍କରେ ବ୍ୟକ୍ତ ନିଗ୍ରଜନା, ସ୍ୱଦେଶପ୍ରୀତି, ନିସର୍ଗ ପ୍ରକୃତି ସହିତ ଅତିଭୌତିକ ଅନୁଚିନ୍ତା ଯେପରି ଭାବରେ ପ୍ରାଧାନ୍ୟ ଲାଭ କରିଛି 'କୃଷ୍ଣ'ରେ ସେହିପରି ଜୀବନର ବହୁ ସୁଖ ଦୁଃଖର ଅନୁଭୂତିକୁ ନେଇ କଳ୍ପିତ ଈଶ୍ୱରଙ୍କ ନିକଟରେ ସମର୍ପଣ କରିଦେବାକୁ କବି ବ୍ୟାକୁଳ ହୋଇ-ଉଠିଛନ୍ତି । ମାନସିଂହଙ୍କ କାବ୍ୟଜୀବନର ଉତ୍ତର କାଳରେ, ମୁଖ୍ୟତଃ ଉତ୍ତର ପରିଣତରେ, ରଚିତ 'କୃଷ୍ଣ'ର ସନେଟ୍‌ଗୁଡ଼ିକରେ ଏହି ଭାବଧାରା ସମ୍ପ୍ରସାରିତ ହୋଇପାରିଛି । "ପ୍ରାଣର କେତେକ ଗଭୀର ଅନୁଭୂତି ଓ ଜିଜ୍ଞାସା ଅନ୍ୟ ରୀତି ଅପେକ୍ଷା ସନେଟ୍‌ରେ ଅଧିକତର ପରିଚ୍ଛନ୍ନ ଭାବରେ ପ୍ରକାଶିତ ହୋଇପାରୁଛି ବୋଧକରି କିଛି କାଳ ଧରି ମୁଁ ସନେଟ୍ ରଚନାର ଅଭ୍ୟାସ କରି ଆସିଛି । × × × ପ୍ରତ୍ୟେକଟି ସନେଟ୍ ସ୍ୱୟଂସମ୍ପୂର୍ଣ୍ଣ ହେଲେ ହେଁ ସବୁଗୁଡ଼ିକୁ ସମ୍ପର୍କିତ କରି ଏକ ଶୋକ ବିକ୍ଷୁବ୍ଧ, ଅଶ୍ରୁଦଗ୍ଧ ପ୍ରାଣର କାତର ବାଣୀ ଓ ତତ୍ତ୍ୱଜିଜ୍ଞାସା ଓତପ୍ରୋତ ଭାବରେ ସୂତ୍ରରୂପେ କାର୍ଯ୍ୟ କରୁଥିବାର ସହୃଦୟ ପାଠକ ଅନୁଭବ କରିପାରିବେ ବୋଲି ମୋର ବିଶ୍ୱାସ ।" (୮) କବି ମାନସିଂହଙ୍କ ପରିଣତ କାବ୍ୟସ୍ୱରରେ ଈଶ୍ୱରାନୁଭୂତି ଓ ଆଧିଭୌତିକ ଭାବବିଳାସ ଲକ୍ଷ୍ୟ କଲେ ବିସ୍ମୟାଭିଭୂତ ହେବାକୁ ହୁଏ । ଉଦ୍ଦାମ ଦେହଜ ପ୍ରଣୟରୁ ଏହି ଅତୀନ୍ଦ୍ରିୟ ଅନୁଚିନ୍ତା ଆଡ଼କୁ ଦ୍ରୁତ ପଳାୟନ ହିଁ ଏତ ତାଙ୍କ ପାଇଁ ଏକମାତ୍ର ସମାଧାନ । ଏହି ପର୍ଯ୍ୟାୟରେ ରଚିତ ତାଙ୍କର 'ଜୀବନଚିତା' (୧୯୪୭) 'କୃଷ୍ଣ' (୧୯୪୪ରୁ ୧୯୫୬) ଏବଂ 'ଅକ୍ଷତ'ରେ ଅତୀନ୍ଦ୍ରିୟ ଜଗତର ନିବିଡ଼ ରହସ୍ୟାନୁଭୂତି ଓ ଅତିଭୌତିକ ଭାବ ବିଳାସ ଭିତରେ ସେ ଜୀବନ ଓ ଜଗତ ପ୍ରତି ଶିଳ୍ପୀପ୍ରାଣର ମୌଳିକ ସମ୍ବେଦନଶୀଳତାକୁ କେଉଁଠି କ୍ଷୁଣ୍ଣ ହେବାକୁ ଦେଇନାହାନ୍ତି । ରୋମାଣ୍ଟିକ ବିଷାଦବାଦ କବିଙ୍କ ଚେତନାକୁ ବହୁସ୍ଥଳରେ ଆକ୍ରାନ୍ତ କରିଥିବାର ଦେଖାଯାଏ । 'କୃଷ୍ଣ'ରେ ସଙ୍କଳିତ କବିଙ୍କ ଅଧିକାଂଶ କବିତାରେ ଦୁଃଖ, ବିଷାଦ ଜର୍ଜରିତ ଅନ୍ତରର ପ୍ରତିଛବି ଦେଖିବାକୁ ମିଳେ ।

"ସେ କେବଳ ଦେଇଯାଇଛନ୍ତି କିଛି ପାଇନାହାନ୍ତି × × × ମୁଖ୍ୟତଃ ପ୍ରେମ ପ୍ରଣୟକୁ ଘେନି ତାଙ୍କ କବିତା । ସମଗ୍ର ଉତ୍କଳରେ ଦିନେ ଚହଲ ପକାଇଥିଲା, ବାସ୍ତବ ଜୀବନରେ ଖୁବ୍ ଝଡ଼ ବି ଉଠାଇଥିଲା । ପରିଣତି ଦ୍ୱନ୍ଦ୍ୱ, ଅନ୍ତର୍ଦ୍ୱନ୍ଦ୍ୱ, ଶେଷରେ ହିସାବ ନିକାଶ, ନିଶାପ । ଏଇ ଦ୍ୱନ୍ଦ୍ୱରେ ହିଁ ମାନସିଂହଙ୍କ କବିତ୍ୱର ଅକାଳ ମୃତ୍ୟୁ ଘଟିଲା । ସେ ହୋଇଗଲେ ଗଦ୍ୟ, × × × ଯେତେ

(୮) କୃଷ୍ଣର ମୁଖବନ୍ଧ—ଡକ୍ଟର ମାୟାଧର ମାନସିଂହ

କୁଆଣଆ ଦଶିଲେ ବି ତାଙ୍କ ହାସ୍ୟ ମଧ୍ୟରେ ସାଗ୍ରଜୀବନ ସେ କାରୁଣ୍ୟର ଦାଗ ଲିଭିପାରି ନ ଥିଲା ।" (୯) ସେଥିପାଇଁ ବୋଧହୁଏ ଅକ୍ଷତର ମୁଖବନ୍ଧରେ ଏହି ପ୍ରକାର ସ୍ପଷ୍ଟୋକ୍ତି ଦେଇଯାଇଛନ୍ତି, "ଏହି ଲେଖକ ଯତି, ଭକ୍ତ ବା ଧାର୍ମିକ ନୁହେଁ । ଧରିତ୍ରୀତଳର କୋଟି କୋଟି ପଥଯାତ୍ରୀମାନଙ୍କ ମଧ୍ୟରୁ ସେ ଏକ ସାମାନ୍ୟତମ ଯାତ୍ରୀ ମାତ୍ର । ସାଧାରଣ ସହଯାତ୍ରୀମାନଙ୍କ ପରି ତାର ଶରୀର ଜୀବନ ସଂଗ୍ରାମର ଅସ୍ତ୍ରକ୍ଷତରେ ବିକଳ । ତାର ଗଣ୍ଡ ଅଶ୍ରୁସ୍ନାତ, ତାର ଅନ୍ତର ଅସନ୍ତୋଷ ଓ ଅଭିମାନରେ ଭରି ।" (୧୦) 'କୃଷ୍ଣ' ଏବଂ 'ଅକ୍ଷତ'ରେ ଥିବା କବିତାମାନଙ୍କରେ କବିଙ୍କ ଜୀବନ ଓ ଚେତନାର ବହୁ ଘଟଣା ବିଦ୍ୟମାନ । ଏହି ରୋମାଣ୍ଟିକ୍ ବିଷାଦବାଦିତା ମାନସିଂହଙ୍କ କାବ୍ୟ ଆଙ୍ଗିକର ଅନ୍ୟତମ ବୈଶିଷ୍ଟ୍ୟ । ଏହା ଏଲିଜି ବା ଶୋକଶ୍ଳୋକ ଭାବରେ ମଧ୍ୟ ଚିହ୍ନିତ ହୋଇପାରିବ । ଜୀବନଯୁଦ୍ଧ କବିଙ୍କୁ ଜୀବନପ୍ରତି ବିମୁଖ କରିଇଛି । କବିଙ୍କର ଏହି ପଳାୟନବାଦୀ ମନୋବୃତ୍ତି ଜୀବନ ଯୌବନ, ପ୍ରେମ ଓ ସୌନ୍ଦର୍ଯ୍ୟ ପିପାସାର ଅସଫଳତାରୁ ଜାତ । ଜୀବନପ୍ରତି କବିଙ୍କର ଏହି କୁଣ୍ଠିତ ମନୋଭାବ 'ସମର ବିମୁଖ' କବିତାରେ ସ୍ପଷ୍ଟ ହୋଇଛି । "କୁଣ୍ଠିତ ଜୀବନ ଯୁଦ୍ଧେ ଜୟଟୀକା ପାଇଁ/ଶ୍ରଦ୍ଧା ଶକ୍ତି କିଛିହେଲେ ମୋର ଥିଲା ନାହିଁ । କେ ଦେଲା କମାଇ ଠେଲି ଏ ମହା କନ୍ଦଲେ/ତେଣୁ ଚୂର୍ଣ୍ଣି ବିକଳ ମୁଁ ବାହାରେ ଅନ୍ତରେ ।" (ସମର ବିମୁଖ—ଜୀବନଚିତା-ଗ., ପୃ-୪୧୨)

କବି ମାନସିଂହଙ୍କର 'ମୋ ଧନରେ', 'ଯାଇଛି ସେ', 'ଶିଶୁର ଦାନ' 'ରୂପାନ୍ତର' ଆଦି କବିତା ସନ୍ତାନବିୟୋଗବିଧୁର ଆହତ ମନର ସାକ୍ଷର ବହନ କରିଛି । ଏହା ତାଙ୍କର ଏକାନ୍ତ ବ୍ୟକ୍ତିଗତ ଓ ମାନବିକ ସ୍ପନ୍ଦନରେ ପରିପୂର୍ଣ୍ଣ । ଆତ୍ମାର ଅଶ୍ରୁଜଳରେ ସିକ୍ତ ଏବଂ ହୃଦୟର ଅନୁରାଗରେ ରଞ୍ଜିତ ଏଇ କବିତା-ଗୁଡ଼ିକ ଇଂରେଜୀ ଶୋକଗୀତିକାର ଟେନିସନ, କୀଟସ୍, ମିଲ୍‌ଟନ୍‌ଙ୍କ ପରି ଏଥିରେ ଆପଣାର ଦାର୍ଶନିକ ଦୃଷ୍ଟିଭଙ୍ଗୀ ଓ ମନନଶୀଳ ଅନ୍ତର୍ଦୃଷ୍ଟିର ସ୍ୱାକ୍ଷର ଅଙ୍କନ କରିଛନ୍ତି । "ଖେଳିବାକୁ ଯାଇଛି ସେ ଫେରିନି ଏଯାଏଁ/ଆଉ କି ଆସିବ ନାହିଁ କପରି କଥା ଏ ।" (୧୧) କିମ୍ବା, "ଘରେ ଫେରୁଁ ପରବାସୁ ପିତା ଦେଖୁନାହିଁ/ଲବଣ୍ୟ ପ୍ରତିମାଟିଏ 'ବାପା' ବୋଲି ଧାଇଁ/ଦ୍ୱାରେ ହସି ହେବା ଠିଆ ସ୍ନେହ

---

(୯) ମାନସିଂହଙ୍କ ଜୀବନୀ ଓ ଜୀବନ—ଡଃ କୃଷ୍ଣବିହାରୀ ଦାଶ (ମାନସିଂହ ପରିକ୍ରମା, ପୃ ୨୪୨-୨୫୧ )

(୧୦) ଅକ୍ଷତର ମୁଖବନ୍ଧ—ଡକ୍ଟର ମାୟାଧର ମାନସିଂହ

(୧୧) ଯାଇଛି ସେ (ଅକ୍ଷତ) ଗ୍ରନ୍ଥାବଳୀ-ପୃ ୩୦୭

ପ୍ରତୀକ୍ଷାରେ/କଏ ତାକୁ ହରିନେଲା ଚକ୍ଷୁ ଅନ୍ତରାଳେ ।” (୧୨) “ସମ୍ବଲପୁରରେ ମାନସିଂହ ଶିକ୍ଷା ପରାମର୍ଶଦାତା ଥିଲାବେଳେ ଆମେ ବ୍ରୁକସହିଲ୍‌ର ପ୍ରଥମ ବଙ୍ଗଳାରେ ରହୁଥାଉ । ଦୁଇବର୍ଷ ଦୁଇମାସର କନ୍ୟା ପଦ୍ମଶ୍ରୀକୁ (ମାନସିଂହଙ୍କ ଉନ୍ନତ ସମୟରେ ଜନ୍ମ ହୋଇଥିବାରୁ ତାକୁ ଉଷା ବୋଲି ଡାକୁଥିଲୁ) ଜ୍ୱର ହେଲା । × × × ସେଇଦିନ ରାତି ବାରଟାରେ ମସ୍ତିଷ୍କ ଜ୍ୱରରେ ତାର ମୃତ୍ୟୁ ହେଲା । × × ଝିଅର ମୃତ୍ୟୁ ପରେ କନ୍ୟାଶୋକକାତର କବି ଯେତେବେଳେ ‘ମୋ ଧନରେ’ କବିତାଟି ଲେଖିଲେ ମୁଁ ତାଙ୍କ ପିତୃ ହୃଦୟର ଗଭୀର ମମତା ଉପଲବ୍ଧି କଲି । ଶୋକାକୁଳ ହୋଇ ସେ ଝିଅର କ୍ଷୁଦ୍ର ପାଦୁକା ଦୁଇଟିକୁ ବହୁଦିନ ଧରି ପୂଜା କରିଛନ୍ତି । ପରେ ପରେ ଝିଅର ସ୍ମୃତିରେ ଲେଖିଛନ୍ତି ‘ଯାଇଛି ସେ’, ‘ରୂପାନ୍ତର’, ‘ଶିଶୁର ଦାନ’ ଆଦି କେତୋଟି କବିତା ।” (୧୩)

କବି ପ୍ରାଣର ଆଶା, ଆକାଂକ୍ଷା ଏବଂ ଅପୂର୍ଣ୍ଣତାରୁ ବିଷାଦ ସୃଷ୍ଟି ହୋଇ ‘ଆକାଂକ୍ଷିତ ଶୂନ୍ୟତା’, ‘ଏକାନ୍ତ ଏକାକୀ’, ‘ଉଦ୍‌ଗମନ’ ଆଦି କବିତାରେ ପ୍ରକାଶ ପାଇଛି । ଏହି ଆଶା ଅଭିଳାଷ କେବେ ଈଶ୍ୱରପ୍ରାପ୍ତି ଦିଗକୁ ପ୍ରଧାବିତ ତ କେବେ ଦେଶର ଅଧୋପତନରେ ମର୍ମାହତ । “ନିଖିଳ ସଂସାର ମଧ୍ୟେ କୁଟୁମ୍ବ ସଙ୍ଗତେ/ ଏକାନ୍ତ ଏକାକୀ ମୁହିଁ ସଙ୍ଗହୀନ ପ୍ରାଣୀ/କାହାର ପରମସଖ୍ୟ ଖୋଜେ ଅନ୍ତର୍ଗତେ/ ଚିର ବିରହିତ ମୁହିଁ କେମନ୍ତେ କେଜାଣି ।” (୧୪)

ମାନସିଂହଙ୍କର ବନ୍ଧୁ ଭଗବତୀ ପାଣିଗ୍ରାହୀଙ୍କ ବିୟୋଗରେ ଲିଖିତ ‘ହେ ବନ୍ଧୁ’ କିମ୍ବା ‘ବନ୍ଧୁ ବିୟୋଗ’ କବିତା ଦୁଇଟି ତାଙ୍କର ଶୋକାକୁଳ ମନର ପରିଚୟ ବହନ କରିଛି । “ନ କହି ଗଲ ଯେ ଚାଲି, ଭବ ଅନ୍ଧକାରେ/ଶିଶୁସମ କବି ଖାଲି ଡାକେ—ଗଲ କାହିଁ ?/ଜୀବନେ ନ ହେଲା ଅବା ଜୀବନ ବାହାରେ/ହେ ମଧୁ ଦୋସର ଦେଖା ହେବ ଅବା ନାହିଁ ।” (ବନ୍ଧୁ ବିୟୋଗ—ମାଟିବାଣୀ—ପୃ ୩୬୪)

‘ହେମଶସ୍ୟ’, ‘କୃଷ୍ଣ’ ସଙ୍କଳନରେ ସନ୍ନିବିଷ୍ଟ ସନେଟ ବା ଚତୁର୍ଦ୍ଦଶପଦୀ କବିତା କିମ୍ବା ଶୋକୋଚ୍ଛ୍ୱାସ ସମ୍ବଳିତ କବିତାଗୁଡ଼ିକ ମାନସିଂହଙ୍କ ଆଙ୍ଗିକ ବୈଶିଷ୍ଟ୍ୟର ପରାକାଷ୍ଠା ବହନ କରେ । ମାନସିଂହଙ୍କ ସୃଷ୍ଟି ସମ୍ଭାରରେ ଓଡ଼୍ ବା ସମ୍ବୋଧଗୀତର ପର୍ଯ୍ୟାପ୍ତ ବର୍ଣ୍ଣନା ନ ଥିଲେ ମଧ୍ୟ ‘ଦକ୍ଷିଣାପଥ’, ‘ପ୍ରାବୃଟ

---

(୧୨) ରୂପାନ୍ତର (ଅକ୍ଷତ) ଗ୍ରନ୍ଥାବଳୀ-ପୃ ୩୦୮

(୧୩) ପ୍ରିୟପରମ—ଶ୍ରୀମତୀ ହେମଲତା ମାନସିଂହ, ମାନସିଂହ ପରିକ୍ରମା, ପୃ-୧୬୭

(୧୪) ଏକାନ୍ତ ଏକାକୀ—କୃଷ୍ଣ—ମାନସିଂହ ଗ୍ରନ୍ଥାବଳୀ, ପୃ-୪୩୭

ସମ୍ଭାଷଣ' କବିତାରୁ ତାଙ୍କର ଆଙ୍ଗିକ ଶୈଳୀର ସୂଚନା ମିଳିଥାଏ । 'ଓଡ୍' ଆଧୁନିକ ଓଡ଼ିଆ କାବ୍ୟଶୈଳୀର ଅନ୍ୟତମ ରୂପ । ପାଶ୍ଚାତ୍ୟ ଗୀତିକାବ୍ୟ ରୂପର ପ୍ରଭାବରୁ ଆମ କାବ୍ୟଜଗତରେ 'ଓଡ୍' ବା ସମ୍ବୋଧଗୀତିର ପ୍ରଚଳନ ହୋଇଛି । ଏହି କବିତାର ଭାବବସ୍ତୁ ଗମ୍ଭୀର ଓ ଉନ୍ନତ । 'ଦକ୍ଷିଣା ପ୍ରତି', 'ପ୍ରାବୃଟ ସମ୍ଭାଷଣ' ଆଦି କବିତାରେ ସାର୍ବଭୌମ ପ୍ରକୃତି ଅତି ଚମତ୍କାର ଭାବରେ ରୂପଲାଭ କରିଛି । ଦକ୍ଷିଣା ପବନ ଏଠାରେ ଏକ ଅଭିସାରିକା ପ୍ରମଦା । ବସନ୍ତର ପ୍ରେମିକା ସେ । ତା' ଉଦ୍ଦେଶ୍ୟରେ କବି ସମ୍ବୋଧନ କରି କହିଛନ୍ତି--

"ଦକ୍ଷିଣରେ ବାସ ତବ, କାହା କନ୍ୟା ? କାହା ଗୃହବଧୂ ?
ବସନ୍ତ ପ୍ରେୟସୀ କିଗୋ ; ସଙ୍ଗେ ତାର ଭ୍ରମ ଯେ ସର୍ବଦା
ଦକ୍ଷିଣ କବାଟ ଫେଇ ସୁକୁମାରୀ ଚାଲିଆସ ଲଘୁ
ସାଗର ପର୍ବତ ଡେଇଁ ଅଭିସାରେ ତା'ପାଇଁ ପ୍ରମଦା ।"

(ଦକ୍ଷିଣା ପ୍ରତି—ଜୀବନ ଚିତା—ଗ୍ରନ୍ଥାବଳୀ,ପୃ ୩୧୪)

ସେହି ଚଞ୍ଚଳା, ଶୀତଳାର ହିଲ୍ଲୋଳରେ କବି ମାନସିଂହ ଚାହିଁଛନ୍ତି ଶ୍ୟାମଳ ତମାଳ-ତାଳୀବନ ଘେରି ସୀମାନ୍ତକୁ ଚାଲିଯିବା ପାଇଁ । Ode to the West Windରେ ଶେଲି ଯେପରି କହିଛନ୍ତି,"Oh ! lift me a wave, a leaf, a cloud" ଠିକ୍ ସେହିପରି ମାନସିଂହ ଦକ୍ଷିଣା ପବନକୁ ଅନୁରୋଧ କରିଛନ୍ତି—"ବକ୍ଷପାତି ନିଅ ମୋତେ ହେ ଚଞ୍ଚଳା ! ହେ ଶୀତଳ ଦେହା/ତୁମର ସେ ଦୂର ଦେଶେ—ମାଳସିନ୍ଧୁ ସ୍ୱର୍ଣ୍ଣବେଳା ପରେ ।"

(ଦକ୍ଷିଣା ପ୍ରତି—ପୃ ୩୧୫)

## ମାନସିଂହଙ୍କ ସନେଟରେ ରବୀନ୍ଦ୍ର ପ୍ରଭାବ—

କବି ମାନସିଂହଙ୍କ କାବ୍ୟସ୍ୱରରେ ରବୀନ୍ଦ୍ର-ପ୍ରଭାବ ସ୍ପଷ୍ଟ ଭାବରେ ହୃଦୟଙ୍ଗମ କରିହୁଏ । ରବୀନ୍ଦ୍ରନାଥ ଯେ ମାନସିଂହଙ୍କର ପ୍ରିୟ କବି ଥିଲେ ତାହା ସେ ସ୍ୱୀକାର କରି କହିଛନ୍ତି, "ରବୀନ୍ଦ୍ରନାଥ ମୋର ପ୍ରିୟତମ କବି × × କବିର ପ୍ରକୃତ ପୂଜା ସ୍ମୃତି ମନ୍ଦିର ବା ମେଳା ମଉଛବରେ ମଧ୍ୟ ନୁହେଁ, ତାର ସ୍ୱର୍ଣ୍ଣ ଆସନ ତାର ପାଠକର ନିଭୃତ ଅନ୍ତରରେ । ସେଇ ସମ୍ବନ୍ଧ ଯେଣି ରବୀନ୍ଦ୍ରନାଥ ମୋର ଅତି ପ୍ରିୟ କବି, ଅତି ମାନ୍ୟ ଓ ପ୍ରଣମ୍ୟ କବି । ସେ ମୋର ପ୍ରିୟ କାରଣ, ସେ ମୋ ନିଜ ଅନ୍ତରର ଅବ୍ୟକ୍ତ ଆଶା, ତୃଷ୍ଣା, ବ୍ୟଥା ବେଦନାକୁ ଏପରି ବ୍ୟକ୍ତ କରିଛନ୍ତି, ଯେପରି କି ମୁଁ ମନେ କରିଥାଏ ରବୀନ୍ଦ୍ରନାଥ ମୋର କଥାଗୁଡ଼ାକ ଯେପରି ଲେଖି ଯାଇଛନ୍ତି ।" (୧୫)

---

(୧୫) କବି ଓ କବିତା—ଗ୍ରନ୍ଥାବଳୀ (ତୃତୀୟ ଭାଗ) ପୃ ୪୬୫

"ରବୀନ୍ଦ୍ରନାଥଙ୍କ ଗୀତ କବିତା ପରି ପରମ ରମଣୀୟ ବସ୍ତୁ ପୃଥିବୀରେ କ୍ୱଚିତ୍ ସାହିତ୍ୟରେ ଥିବ । ତାଙ୍କ କବିତାରେ ନାନା ଭିନ୍ନଭିନ୍ନ କବିଙ୍କର ଭିନ୍ନଭିନ୍ନ ଗୁଣ ଏକାଧାରରେ ସନ୍ନିବିଷ୍ଟ ହୋଇ ରହିଛି । ସେକ୍ସପିଅରଙ୍କ ଚରିତ୍ର ସୃଷ୍ଟି, ଓ୍ୱାର୍ଡ଼ସଓ୍ୱାର୍ଥଙ୍କର ପ୍ରକୃତି ପୂଜା, କୀଟସ୍‌ଙ୍କ ରୂପପିପାସା, ଶେଲିଙ୍କର ବୈଦ୍ୟୁତିକ ଚପଳତା, ଟେନିସନ୍‌ଙ୍କ ଶବ୍ଦ-ସଂଯୋଗ, ଆଉ ସବୁଠି ବ୍ୟାପି ରହିଛି ଆର୍ଲଫରିମ୍ସିଙ୍କର ଦିବ୍ୟଦର୍ଶନ ।" (କବି ଓ କବିତା—ପୃ ୪୩୩) । ମାନସିଂହ ରବୀନ୍ଦ୍ର କାବ୍ୟାଦର୍ଶର ପୂଜାରୀ ଥିଲେ । ଜୀବନର ଉଦୟ ଉତ୍ସବ, ତ୍ରୁଟିବିଚ୍ୟୁତି ସତ୍ତ୍ୱେ ସେ ଜୀବନକୁ ଭଲ ପାଇଛନ୍ତି ।

"ସ୍ୱର୍ଗ ମୁକ୍ତି ନାହିଁ ବାଞ୍ଛେ, ଜୀବନ ମୁଁ ଚାହେଁ/ ସୁଖ ଦୁଃଖମୟ ଏହି ଜୀବନ ପ୍ରବାହେ × × ଜୀବନେ ଜୀବନେ ଜନ୍ମି ରକ୍ତ ମୋର ଦେଇ/ମେଣ୍ଟିବି ମାନବ ଦୁଃଖ, ଋଣ ଅଙ୍ଗେ ନେଇ" । (୧୬) ରବୀନ୍ଦ୍ରନାଥଙ୍କ 'ମୁକ୍ତି' କବିତାରେ ଏହି ଭାବନା ମୂର୍ତ୍ତି ହୋଇ ଉଠିଛି—

"ବୈରାଗ୍ୟ ସାଧନେ ମୁକ୍ତି ସେ ଆମାର ନୟ/
ଅସଂଖ୍ୟ ବନ୍ଧନ ମାଝେ ମହାନନ୍ଦମୟ ।"

ରବୀନ୍ଦ୍ରନାଥଙ୍କ କବିତାରେ ସୁନ୍ଦର ପୃଥିବୀ ପ୍ରତି ଗୋଟାଏ ନିବିଡ଼ ଆକର୍ଷଣ ସବୁବେଳେ ଲକ୍ଷିତ ହୋଇଥାଏ । ପରବର୍ତ୍ତୀ କାଳରେ ମାନସିଂହଙ୍କର ଧରଣୀ-ବାସ, ଦେବପୂଜା ଆଦି କବିତା ରଚିତ ହୋଇଛି । ଏହି ଦୁଇ କବିତାରେ ମାନସିଂହ ରବୀନ୍ଦ୍ରନାଥଙ୍କ ମର୍ତ୍ତ୍ୟପ୍ରୀତି ସହିତ ସଖ୍ୟ ସ୍ଥାପନ କରନ୍ତି । ମାନସିଂହ କାବ୍ୟରେ ରବୀନ୍ଦ୍ର କାବ୍ୟ ପ୍ରଭାବ କଥା କହିଲାବେଳେ ରବୀନ୍ଦ୍ର କାବ୍ୟର ପୂର୍ବବର୍ତ୍ତିତା, ସେହି କାବ୍ୟ ସହିତ ମାନସିଂହଙ୍କର ନିବିଡ଼ ପରିଚୟ ଓ ଉଭୟଙ୍କ ରଚନାର ଭାବସାମଞ୍ଜସ୍ୟ କାରଣଗୁଡ଼ିକୁ ସ୍ମରଣ ରଖିବାକୁ ହୁଏ । 'ଧରଣୀ ବାସ'ରେ ମାନସିଂହ ପ୍ରକାଶ କରିଛନ୍ତି—"ଜୀବନ ସଂଗ୍ରାମେ ଯେବେ, ଭଗ୍ନକାନ୍ତି ଗୃହେ ଆସେ ଫେରି, କାହାର ମୃଣାଳବାହୁ ଶାନ୍ତି ଦିଏ କଣ୍ଠେ ତାରି ଘେରି ।"
(ଧରଣୀ ବାସ - ଜୀବନଚିତା ପୃ ୩୮୯)

ମର୍ତ୍ତ୍ୟର ରୂପ-ରସ-ଗନ୍ଧମୟ ପ୍ରକୃତି ଲୀଳା ଦେଖି ମଣିଷ ଆତ୍ମବିସ୍ମୃତ ହୋଇଯାଏ । ରବୀନ୍ଦ୍ରନାଥ ସେହି ସୌନ୍ଦର୍ଯ୍ୟର ମୁଗ୍ଧ ସ୍ତାବକ । ସୁନ୍ଦରୀ ବସୁନ୍ଧରାକୁ ଚାହିଁ ପ୍ରାଣ ତାଙ୍କର ଉଲ୍ଲସିତ ହୋଇଉଠିଛି ।

"ଅୟି ମର୍ତ୍ତ୍ୟଭୂମି, ଆଜ୍ ବହୁଦିନ ପରେ
କାଁଦିୟା ଉଠେଛେ ମୋର ଚିତ୍ତ ତୋର ତରେ ।"

---

(୧୬) ମୁକ୍ତି ନାହିଁ ମାଗେ (ହେମଶସ୍ୟ) ଗ୍ରନ୍ଥାବଳୀ, ପୃ ୧୯୯

ରବୀନ୍ଦ୍ର ସାହିତ୍ୟରେ ମଣିଷକୁ ଚରମ ସମ୍ମାନ ଦିଆଯାଇଛି । ସାମାନ୍ୟ ଓ ଅସାମାନ୍ୟ—ଉଭୟ ଶ୍ରେଣୀର ମଣିଷ ସମ୍ମାନିତ । ମାନସିଂହ ଲୋକୋତ୍ତର ଚରିତ୍ର ପୂଜା କରିଛନ୍ତି ଯଥେଷ୍ଟ—ବୁଦ୍ଧଦେବ, ମହାତ୍ମା ଗାନ୍ଧୀ, ଗୋପବନ୍ଧୁ, ଚନ୍ଦ୍ରଶେଖର ପ୍ରଭୃତିଙ୍କ ମହିମା ଗାନ କରି ସେ କୃତାର୍ଥ ହୋଇଛନ୍ତି । ସାଧାରଣ ମଣିଷ ପ୍ରତି ରବୀନ୍ଦ୍ରନାଥଙ୍କର ଶ୍ରଦ୍ଧା ଓ ସମବେଦନା ବଡ଼ ଆନ୍ତରିକତାପୂର୍ଣ୍ଣ । ବାରମ୍ବାର ସେ କହିଛନ୍ତି "ମରିତେ ଚାହିନା ଆମି ସୁନ୍ଦର ଭୁବନେ, ମାନବେର ମାଝେ ଆମି ବାଁଚିବାରେ ଚାଇ ।" ରବୀନ୍ଦ୍ରନାଥଙ୍କ ଅନ୍ୟ ଏକ ବୈଶିଷ୍ଟ୍ୟ ହେଲା ଅନ୍ତର ମଧ୍ୟରେ ଦେବତାର ଅନୁଭବ । ଅରୂପକୁ, ଅଚିନ୍ତନୀୟକୁ ଇନ୍ଦ୍ରିୟାତୀତକୁ ନିଜ ଭିତରେ ଉପଲବ୍‌ଧି କରି କବି ପ୍ରାଣବାନ ହୋଇଉଠିଛନ୍ତି । ମୋହ ଆଉ ମୁକ୍ତି, ଆସକ୍ତି ଆଉ ନିର୍ବନ୍ଧତା, ସୀମା ଆଉ ଅସୀମ ସେଠି ସବୁ ଏକାକାର ହୋଇଯାଇଛି । ରବୀନ୍ଦ୍ରନାଥଙ୍କର ଏହି ଚିନ୍ତାଧାରା ସହିତ କବି ଏକାତ୍ମ ହୋଇ-ଯାଇଛନ୍ତି । ରବୀନ୍ଦ୍ରନାଥଙ୍କ ପରି କବି ମାନସିଂହ ମର୍ତ୍ତ୍ୟର ସର୍ବତ୍ର ସେଇ ବିରାଟ ଅଚିନ୍ତନୀୟ ପୁରୁଷର ସ୍ପର୍ଶ ଓ ବିରାଟର ଆକର୍ଷଣ ଅନୁଭବ କରିଛନ୍ତି । ଅପୂର୍ଣ୍ଣ ହୋଇ ପୂର୍ଣ୍ଣତା ପାଇଁ ଆକାଂକ୍ଷିତ ହୋଇଛନ୍ତି ।

"ଅପୂର୍ଣ୍ଣ ମୁଁ ଖୋଜେ ମୋର ମଧୁର ପୂର୍ଣ୍ଣତା
ତୁମ ପାଇଁ ତେଣୁ ପ୍ରାଣେ ଏ ତୀବ୍ର ମମତା ।"

(ବିଶ୍ୱ ଆକର୍ଷଣ—କୃଷି, ଗ୍ରନ୍ଥାବଳୀ ପୃ ୪୩୭)

ଏହିପରି ଅସଂଖ୍ୟ କବିତାରେ କବି ମାନସିଂହ ଯେଉଁ ଅନନ୍ୟ ଅନୁଭୂତିର ଚିତ୍ର ପ୍ରକାଶ କରିଛନ୍ତି, ରବୀନ୍ଦ୍ରନାଥଙ୍କ 'ଗୀତାଞ୍ଜଳି'ର ଭାବଧାରା ଦ୍ୱାରା ତାହା ବହୁଭାବରେ ପ୍ରଭାବିତ ।

ଓଡ଼ିଆ କାବ୍ୟ କବିତା କ୍ଷେତ୍ରରେ ମାନସିଂହଙ୍କ ଅବଦାନ ଯଥେଷ୍ଟ ରହିଛି ; ଏହା ଅସ୍ୱୀକାର କରିହେବ ନାହିଁ । ନୂତନ ଆଙ୍ଗିକ କିମ୍ବା ରୂପକଳ୍ପ ପ୍ରତୀକ ଇତ୍ୟାଦି ପ୍ରୟୋଗ କରିବାରେ ମାନସିଂହ ଯଦିଓ କୌଣସି ନୂତନତ୍ୱ ପ୍ରଦର୍ଶନ କରିନାହାନ୍ତି ; ତଥାପି ଛନ୍ଦ ରଚନାରେ ନୂତନତା ଓ ଦଳିବଧିତାଠାରୁ ଓଡ଼ିଆ କବିତାକୁ କାବ୍ୟ ବିପଣୀରୁ ଆଣି କବିତାର ବିତାନରେ ସମୃଦ୍ଧ ଓ ଆକର୍ଷଣୀୟ କରିବା ପର୍ଯ୍ୟନ୍ତ ମାନସିଂହଙ୍କର ଯଥେଷ୍ଟ ଅବଦାନ ରହିଛି । ସଂଘର୍ଷମୟ ଜୀବନର ଝଞ୍ଜାବିକ୍ଷୁବ୍‌ଧ ହୃଦୟକୁ ଅପୂର୍ବ ଗୀତିମୟତାରେ ପରିପୂର୍ଣ୍ଣ କରିବା ପାଇଁ ମାନସିଂହଙ୍କର ଗୀତିକବିତା ନିଶ୍ଚିତ ଭାବରେ ସାହାଯ୍ୟ କରିବ ; ଏଥିରେ ସନ୍ଦେହ ନାହିଁ ।

ରବୀନ୍ଦ୍ରନାଥ ଏକାଧାରରେ ଥିଲେ କବି ଏବଂ ଦାର୍ଶନିକ । 'ଗୀତାଞ୍ଜଳି'ରେ ଏହି ଜୀବନତତ୍ତ୍ୱ ଗଭୀର ଓ ବ୍ୟାପକଭାବେ ଆମ ଆଗରେ ଉନ୍ମୋଚିତ ହୋଇପାରିଛି । ବ୍ୟକ୍ତିଗତ ଜୀବନ ସହିତ ବିଶ୍ୱଜନୀନ ଜୀବନର, ମାନବାତ୍ମା ସହିତ ଅନନ୍ତଭୂମାଙ୍କ ସମ୍ପର୍କ ଏଥିରେ ନିରୂପିତ ହୋଇଅଛି । 'ଗୀତାଞ୍ଜଳି' ମଧ୍ୟରେ ମଣିଷ ସହିତ ଭଗବାନଙ୍କର ଏହି ଅପରୂପ ସମ୍ପର୍କ ବିଭିନ୍ନ ରୂପରେ କବି ଉଦ୍‌ଘାଟନ କରିବାକୁ ଚେଷ୍ଟା କରିଛନ୍ତି । ରବୀନ୍ଦ୍ରନାଥଙ୍କ ସମ୍ପର୍କରେ କବି ମାନସିଂହ କହନ୍ତି—"ସେ ହେଉଛନ୍ତି ପ୍ରଥମ ଭାରତୀୟ କବି, ଯେ ପୃଥିବୀ ଓ ମାନବ ଜାତିକୁ ସମଗ୍ର ଭାବରେ ଦେଖି କବିତା ରଚନା କରିଛନ୍ତି । 'ବସୁନ୍ଧରା', 'ସ୍ୱର୍ଗ ହଇତେ ବିଦାୟ', 'ଶତାବ୍ଦୀର ସୂର୍ଯ୍ୟାସ୍ତ', 'ଭାରତ ତୀର୍ଥ' ପ୍ରଭୃତି କବିତାରେ ମାନବ ଜାତି ଓ ପୃଥିବୀ ପ୍ରତି ତାଙ୍କ ଅନୁଭୂତି ଅନୁପମ ଭାବରେ ପ୍ରକାଶିତ ହୋଇଛି । ରବୀନ୍ଦ୍ରନାଥ ପୃଥିବୀର ଓ ବିଶ୍ୱମାନବର କବି । × × ତାଙ୍କର ଶବ୍ଦ ଯୋଜନା ସଂସ୍କୃତ କାବ୍ୟର ମାଧୁରୀ ମନେପକାଏ । ତାଙ୍କର କବିତା ପ୍ରାଚୀନ ଭାରତକୁ ସମ୍ମୁଖରେ ଠିଆ କରାଏ ।" (୧୭)

ନିଖିଳର ବେଦନାରେ କବି ବ୍ୟଥିତ ଥିଲେ । ମନୁଷ୍ୟ ପ୍ରତି ସାମାନ୍ୟ ଅବିଚାର ତାଙ୍କୁ ମର୍ମାହତ କରୁଥିଲା । ମହାତ୍ମା ଗାନ୍ଧୀ ହରିଜନ ଆନ୍ଦୋଳନ ଆରମ୍ଭ କରିବାର ବହୁ ପୂର୍ବରୁ କବି ନିଜ ଦେଶବାସୀଙ୍କୁ ତିରସ୍କାର କରି କହିଥିଲେ—

"ହେ ମୋର ଦୁର୍ଭାଗା ଦେଶ୍, ଯାଦେର୍ କରେଛ ଅପମାନ
ଅପମାନେ ହତେ ହବେ ତାହାଦେର୍ ସବାର୍ ସମାନ୍
ମାନୁଷେର୍ ଅଧିକାରେ
ବଞ୍ଚିତ କରେଛ ଯାରେ
ସମ୍ମୁଖେ ଦାଁଡ଼ାୟେ ରେଖେ ତବୁ କୋଲେ ଦାଓ ନାଇ ସ୍ଥାନ ।"
(ଗୀତାଞ୍ଜଳି—ପୃ ୧୩୬)

ଏହି ମାନବବାଦୀ ଚେତନା ମାନସିଂହଙ୍କର 'ଦେବପୂଜା' କବିତା ସହିତ ସାମଞ୍ଜସ୍ୟ ରକ୍ଷାକରେ—"ଦେଖ ଦେଖ ଆଗପଛେ ତବ, ଶତ ଶତ ନରନାରୀଗଣ / ସ୍ୱାଙ୍କୁ ତୁମେ ପଛେ ଦେଇ ପେଲ, ଦେବତାରେ ଲଭିବ ବ୍ରାହ୍ମଣ ? / ଦେବତାକୁ ବାହାରେ ରଖିଲ, ଛୁଇଁବାକୁ ଡରିଲ ତାହାରେ/କାରେ ତୁମେ ଗଲ ପୂଜିବାକୁ ଦେଉଳର କ୍ଷୁଦ୍ର ଅନ୍ଧକାରେ ? / ବନ୍ଦକର ମନ୍ତ୍ରପାଠ ତବ, ବନ୍ଦକର କର୍ପୂର

(୧୭) ରବୀନ୍ଦ୍ରନାଥଙ୍କ କବିତା (କବି ଓ କବିତା) ମାନସିଂହ ଗ୍ରନ୍ଥାବଳୀ ପୃ ୪୩୩

ଆରତି/ଦେଉଳର ବାହାରେ ଦେବତା, ହାତପାତି ଉଭା ରହିଛନ୍ତି ।”
(ଦେବପୂଜା—ଜୀବନ ଚିତା—ଗ୍ରନ୍ଥାବଳୀ ପୃ-୪୦୨) ।

ରବୀନ୍ଦ୍ରନାଥ କେବଳ ସାଧାରଣ ମଣିଷଠାରେ ମଣିଷ ଦେବତାର ସନ୍ଧାନ କରି ନୀରବ ରହି ନାହାନ୍ତି ; ସମାଜର ଘୃଣ୍ୟ ଗଣିକାଠାରେ ମଧ୍ୟ ନିଖିଳର ସେହି ମହାମନ୍ତ୍ର ଶୁଣିଛନ୍ତି । ତାଙ୍କ ଆଖିରେ ଗଣିକା ପାପୀ ବା ଘୃଣ୍ୟ ନୁହେଁ । ରବୀନ୍ଦ୍ରନାଥଙ୍କ 'ପତିତା' କବିତାରେ ନାରୀତ୍ୱର ଯେଉଁ ମର୍ଯ୍ୟାଦା ଆରୋପ କଲେ, ତାହା ପୁରାଣର ବିଭିନ୍ନ ଆଖ୍ୟାୟିକା ଓ କିମ୍ବଦନ୍ତୀକୁ ଅବଲମ୍ବନ କରି ବହୁ ଓଡ଼ିଆ କବିଙ୍କ ହାତରେ ବିଭିନ୍ନ ରୂପରେ ରୂପାନ୍ତରିତ ହୋଇଛି । ମାନସିଂହ ମଧ୍ୟ ଏଥିର ବ୍ୟତିକ୍ରମ ନୁହନ୍ତି । ତାଙ୍କର 'ବିନ୍ଦୁ ଓ ସିନ୍ଧୁ' କବିତା ଗ୍ରନ୍ଥରେ ଆମ୍ରପାଲୀ ପତିତା ନିକଟରେ ମହତ୍ତ୍ୱ ପ୍ରଦର୍ଶନ କରିଛନ୍ତି—"ବୁଦ୍ଧର ବରେଣ୍ୟ ପଦ ପତିତା ରମଣୀ ଆଦ୍ରକର ଅନୁତାପ ଜଳେ/ପୋଛିଦିଏ ଆପଣାର ସୁବାସ କୁନ୍ତଳେ × × ହେ ବୁଦ୍ଧ, ହେ ମାରଜୟୀ ପତିତପାବନ, ମାର ଘୃଣ୍ୟ ପଣ୍ୟ ଆମେ, ପତିତାର ଦଳ, ମହାଭାଗ ତବସ୍ପର୍ଶେ ପାଇଲୁ ଆସ୍ୱାଦ, ନବଜୀବନର ।" (୧୮) ଏହି କାବ୍ୟ ଚେତନାର ଚମତ୍କାର ବିଶ୍ଳେଷଣ କବି ମାନସିଂହଙ୍କ 'ନିଦ୍ରିତ ଭଗବାନ' କବିତାରେ ଉପଲବ୍ଧ କରାଯିବ । ପତିତା ପ୍ରତି କବି ରବୀନ୍ଦ୍ରନାଥଙ୍କର ସହାନୁଭୂତି ମାନସିଂହଙ୍କର ସୃଷ୍ଟିର ମଣିଷ ପ୍ରତି ପ୍ରଯୁକ୍ତ । ନରକଗାମୀ ଦେବଶିଶୁକୁ ପାପପଙ୍କରୁ ଉଦ୍ଧାର କରିବା ପାଇଁ ମହାନ୍ ଶକ୍ତିଠାରେ ତାଙ୍କର ପ୍ରାର୍ଥନା ଅତି ମର୍ମସ୍ପର୍ଶୀ । "ଦେବଶିଶୁ ଚଳେ ନରକର ଅଭିସାରେ/ଭଗବାନ ତୁମେ ନିଦ୍ରିତ କେଉଁଠାରେ ?" (ନିଦ୍ରିତ ଭଗବାନ—ମାନସିଂହ ଗ୍ରନ୍ଥାବଳୀ, ପୃ-୩୮୪ ।) ରବୀନ୍ଦ୍ରନାଥଙ୍କ ପରି ସେ ସତେଅବା ଈଶ୍ୱରପୁତ୍ର ଏଇ ମଣିଷ ପାଇଁ ସାମ୍ୟ ଓ ଅମୃତର ଅବାରିତ କାମନାରେ ·ଅତ୍ୟନ୍ତ ବ୍ୟାକୁଳ । ମାନସିଂହ ରବୀନ୍ଦ୍ରନାଥଙ୍କ ସମ୍ପର୍କରେ ଏହିପରି କହିଛନ୍ତି "ରବୀନ୍ଦ୍ରନାଥ ଯେ ବିଶ୍ୱକବି ତାହା ଯଥାର୍ଥ । ତାଙ୍କ ଲେଖା ପୃଥିବୀର ସର୍ବପ୍ରାନ୍ତରେ ପଠିତ ଓ ଆଦୃତ ହୋଇଛି ବୋଲି ସେ ବିଶ୍ୱକବି ତାହା ନୁହେଁ ; ସେ ପ୍ରକୃତରେ ବିଶ୍ୱକବି ଏହି କାରଣରୁ ଯେ ତାଙ୍କର ଉଦାର କଳ୍ପନାରେ ସାରା ବିଶ୍ୱ ହିଁ ଥିଲା ତାଙ୍କର ଜନ୍ମଭୂମି ଏବଂ ମନୁଷ୍ୟ ହିଁ ଥିଲା ତାଙ୍କର ବର୍ଣ୍ଣନାର ବିଷୟ । ସେ ମନୁଷ୍ୟର ସୀମା ଭିତରେ ହିଁ ଅସୀମକୁ ଖୋଜିଛନ୍ତି ଓ ପାଇଛନ୍ତି × × ଏଇ ଭାରତବର୍ଷ ଯାହା ଆଜି ଆମ ଇତରଙ୍କ ଆଖିରେ ହିନ୍ଦୁ, ମୁସଲମାନ, ବ୍ରାହ୍ମଣ, କରଣ, ଭାରତୀୟ ଓ ଇଂରେଜ ପ୍ରଭୃତିଙ୍କର ପରସ୍ପର ପ୍ରତି ଘୃଣା ନିନ୍ଦା ଦଳାଦଳିର ରଙ୍ଗମଞ୍ଚ ପରି ହୋଇଛି ତାହା ଉଦାର

(୧୮) ପତିତପାବନ ବୁଦ୍ଧ—(ସିନ୍ଧୁ ଓ ବିନ୍ଦୁ) ମାନସିଂହ ଗ୍ରନ୍ଥାବଳୀ, ପୃ-୬୭୭

କବିଙ୍କ ନେତ୍ରରେ ପରମ ପବିତ୍ର ଭାରତ ତୀର୍ଥ ହୋଇଉଠିଛି ।" (୧୯) (ରବୀନ୍ଦ୍ର ପୂଜା—କବି ଓ କବିତା—ଗ୍ରନ୍ଥାବଳୀ ପୃ-୪୪୦)

କବିଙ୍କ ଆଖିରେ ସମସ୍ତେ ସମାନ । ପୃଥିବୀରେ ସ୍ୱର୍ଗର ପ୍ରତିଷ୍ଠା ପାଇଁ ଜାତି-ଭେଦର ସଙ୍କୀର୍ଣ୍ଣତା ଓ ଆତ୍ମସ୍ୱାର୍ଥ ଆଦିକୁ ଭୁଲି ଏକ ବୃହତ୍ତର ପୃଥିବୀର ପରିକଳ୍ପନା କରିଛନ୍ତି । ବୁଦ୍ଧଦେବ ଏକଦା ଏହି ବାଣୀ ପ୍ରଚାର କରି ଏକ ବିଶ୍ୱଭ୍ରାତୃତ୍ୱ ଓ ମୈତ୍ରୀ ବନ୍ଧନର ପରିକଳ୍ପନା କରିଥିଲେ । ମହାତ୍ମା ଗାନ୍ଧୀ ମଧ୍ୟ ଏହି ବାଣୀର ଉପାସକ ଥିଲେ ଏବଂ ରବୀନ୍ଦ୍ରନାଥଙ୍କ ଚିନ୍ତା ସହିତ ଏଇ ଦୃଷ୍ଟିରୁ ତାଙ୍କ ଚିନ୍ତା ଏକ ଓ ଅଭିନ୍ନ ଥିଲା । କବି ମାନସିଂହଙ୍କ ଚିନ୍ତାରେ ମଧ୍ୟ ଦେବତାର ଉପାସନା ସହିତ ସଙ୍କୀର୍ଣ୍ଣ ଜାତି ଓ ଗୋଷ୍ଠୀଗତ ବିଭେଦ ଲୋପ ପାଉଁ ଅନୁରୂପ ସ୍ୱର ଅନୁରଣିତ । ସେ ରବୀନ୍ଦ୍ରନାଥଙ୍କ ପରି ବିଶ୍ୱପ୍ରେମ ଓ ମୈତ୍ରୀର ବାଣୀ ପ୍ରଚାରରେ ଉନ୍ମୁଖ ହୋଇଛନ୍ତି । ମାନସିଂହଙ୍କ 'ପାନ୍ଥଗାଥା' ତାର ଜ୍ୱଳନ୍ତ ଦୃଷ୍ଟାନ୍ତ ।

"କେ ହିନ୍ଦୁ ଖ୍ରୀଷ୍ଟାନ୍ ବୌଦ୍ଧ, କିଏ ମୁସଲ୍‌ମାନ୍/କେ ନିରାମିଷାଶୀ କିଏ ଉପବୀତଧାରୀ × × ଆସ ଭାଇ ଶ୍ୱେତକୃଷ୍ଣ, ଲୋହିତ ପିଙ୍ଗଳ/ହିନ୍ଦୁ ବୌଦ୍ଧ ପାର୍ସି ଖ୍ରୀଷ୍ଟ ମୁସଲମାନ/ବିଶୁଦ୍ଧ ଶଙ୍କର ଧର୍ମ-ପଥ ଯାତ୍ରୀଦଳ ।" (ପାନ୍ଥଗାଥା—'ଅକ୍ଷତ'—ମାନସିଂହ ଗ୍ରନ୍ଥାବଳୀ, ପୃ-୬୧୪) ରବୀନ୍ଦ୍ରନାଥଙ୍କ ପରି ମାନସିଂହ ଚିନ୍ତାରେ ଏବଂ ଚେତନାରେ ଥିଲେ ମହାଭାରତୀୟ । ଏହି ମହାଭାବର ପ୍ରେରଣା ସେ ସ୍ୱକୀୟ ଅସାଧାରଣ ପ୍ରତିଭାଦ୍ୱାରା ଲାଭ କରିଥିଲେ । କବି ମାନସିଂହ ଆଜି ନାହାନ୍ତି, ତଥାପି ତାଙ୍କର ଏହି ଶିଳ୍ପାଦର୍ଶ, ଏହି ଅନୁଚିନ୍ତା କବିଙ୍କର କାବ୍ୟଦୃଷ୍ଟି ଓ ମହାନୁଭବତାର ପରିଚୟ ଦିଏ ।

ସର୍ବଶେଷରେ ମାନସିଂହଙ୍କ କାବ୍ୟ ଶୈଳୀ କେତେ ବେଶୀ ସାଧାରଣ ଲୋକଙ୍କର କଥିତ ଭାଷାର ନିକଟବର୍ତ୍ତୀ ହୋଇପାରିଥିଲା ତାହା ବିଚାର୍ଯ୍ୟ । ମାନସିଂହଙ୍କ ସୃଷ୍ଟିରେ ତତ୍ସମ ଶବ୍ଦ ସହିତ ଦେଶଜ ଶବ୍ଦର ବ୍ୟବହାର ବହୁ ସ୍ଥାନରେ ଦେଖାଯାଏ । 'ମାଟିବାଣୀ'ରେ ଥିବା ରେଙ୍ଗୁନ୍ ଚିଠି, ଘରପଣା, ବାଲଲକ୍ଷ୍ମୀ, ଡିଅପୋଇ ବିଳାପ କମ୍ପା ସାଧବ ଝିଅ ଇତ୍ୟାଦିରେ ଏଇ ଦେଶଜ ଶବ୍ଦର ବ୍ୟବହାର ଲକ୍ଷିତ ହୁଏ ।

---

(୧୯) ହେ ମୋର ଚିତ୍ତ ପୁଣ୍ୟ ତୀର୍ଥେ, ଜାଗରେ ଧୀରେ
ଏଇ ଭାରତେର୍ ମହାମାନବେର୍ ସାଗର ତୀରେ
ଏସୋ ହେ ଆର୍ଯ୍ୟ, ଏସୋ ଅନାର୍ଯ୍ୟ, ହିନ୍ଦୁ ମୁସଲମାନ
ଏସୋ ଏସୋ ଆଜ ତୁମି ଇଂରାଜ, ଏସୋ ଏସୋ ଖ୍ରୀଷ୍ଟାନ୍ ।"
(ଭାରତ ତୀର୍ଥ—ଗୀତାଞ୍ଜଳୀ)

[illegible] ।

ମୋଟ ଉପରେ ମାନସିଂହଙ୍କ ପ୍ରତିଭା ଚିରବନ୍ଦିତ । ଓଡ଼ିଆ ପ୍ରେମ କବିତାର ପରମ୍ପରାରେ ତାଙ୍କ କବିତା ଗୋଟାଏ ଗୋଟାଏ ଉଜ୍ଜ୍ୱଳ ବର୍ତ୍ତିକା । "ଜବାହାରଲାଲଙ୍କୁ ରବୀନ୍ଦ୍ରନାଥ ଋତୁରାଜ ବୋଲି କହିଥିଲେ । ମାନସିଂହଙ୍କୁ ଆମେ ଓଡ଼ିଆ ସାହିତ୍ୟର ଧାରା ଶ୍ରାବଣ ବୋଲି ଅଭିହିତ କରିପାରୁ । କାରଣ ତାଙ୍କର ଉଚ୍ଛ୍ୱାସ ଓ ପ୍ରାଚୁର୍ଯ୍ୟ ଏ ସାହିତ୍ୟକୁ ବହୁ ଦାରିଦ୍ର୍ୟ ଓ ସଙ୍କୀର୍ଣ୍ଣତା ହାତରୁ ରକ୍ଷା କରିଛି ।" (୨୦)



---

(୨୦) କବି ମାୟାଧର ମାନସିଂହ ଏକ ସ୍ୱପ୍ନ ପ୍ରୟାଣ—ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ (ମାନସିଂହ ସ୍ମରଣିକା—ପୃ-୧୬ )

# ସପ୍ତମ ପରିଚ୍ଛେଦ

## ଓଡ଼ିଆ ସାହିତ୍ୟରେ ଡକ୍ଟର ମାୟାଧର ମାନସିଂହଙ୍କ ସ୍ଥାନ

**ବ୍ୟକ୍ତିତ୍ୱ—**

"ଯିଏ ସମ୍ମାନ ପଛରେ କେବେ ଗୋଡ଼ାଇ ନାହିଁ ଜୀବନରେ, ତାକୁ ଆଡ଼ମ୍ବର ଭିତରେ, କୋଳାହଳ ଭିତରେ, ସମ୍ମାନ ଦେବ କିଏ ? ସେ ତ ସମ୍ମାନକୁ ଗୋଇଠା ମାରି ଆଡ଼େଇ ଦେଇଛନ୍ତି ବାଟ ଉପରୁ, ଆତ୍ମ ଅଭିମାନରେ ନୁହେଁ, ଲେଖକ ଅଭିମାନରେ । ଓଡ଼ିଶାର ଜଣେ ଲେଖକ ହିସାବରେ ସମ୍ମାନର ଆଶା ରଖି ନ ଥିଲେ ସତ; କିନ୍ତୁ ଲେଖକ ହେବାର ଅଭିମାନକୁ ସେ କେବେ ଆହତ ହେବାକୁ ଦେଇନାହାନ୍ତି । ସେଥିପାଇଁ ବୋଧହୁଏ ସେ ଥିଲେ ମାନସିଂହ । ସମ୍ମାନ ତାଙ୍କର ଜନ୍ମ ଅଧିକାର ।" (୧)

କବିର ସାରସ୍ୱତ ଜୀବନ ବ୍ୟକ୍ତିବିଶ୍ୱ ଓ ବହିର୍ବିଶ୍ୱର ମିଳିତ ଯୋଗରେ ପରିବର୍ଦ୍ଧିତ ହୋଇଥାଏ । ଏଇ ଦୁଇଟି ଜଗତ ହେଉଛି ତାଙ୍କ ଅନୁଭୂତିର ସ୍ଫୁରଣଭୂମି । କବିଙ୍କର ସାରସ୍ୱତ ସୃଷ୍ଟିରୁ କବି ପୁରୁଷର ଆତ୍ମାକୁ ଚିହ୍ନିହୁଏ କିମ୍ବା କବିଙ୍କ ଜୀବନ ଚରିତ ଅନୁଧ୍ୟାନରୁ ତାହାଙ୍କ କାବ୍ୟ କୀର୍ତ୍ତିର ମୂଲ୍ୟବୋଧ କଳନା କରିହୁଏ । ଡକ୍ଟର ମାୟାଧର ମାନସିଂହ କବି । ଜୀବନ ଓ ଜନ୍ମମାଟିର କବି । ସମସ୍ତଙ୍କ ପାଇଁ ଜୀବନ ଯେପରି ପ୍ରିୟ, ତାର ଜନ୍ମମାଟି ମଧ୍ୟ ସେହିପରି ଆପଣାର । ଚିଲିକା ପରିବେଷ୍ଟିତ ଏକ ଅଖ୍ୟାତ ପଲ୍ଲୀ 'ନନ୍ଦଳା'ର ୧୩।୧୧। ୧୯୦୫ ଖ୍ରୀଷ୍ଟାବ୍ଦରେ କବିଙ୍କର ଜନ୍ମ । କବିଙ୍କର ଗାଁ ଏପଟେ ଚିଲିକା ଏବଂ ସେ ପାଖରେ ସମୁଦ୍ର । ଅପୂର୍ବ ସମାବେଶ । "ଏଇ ଶୋଭାମୟ ସ୍ଥାନରେ କବିଙ୍କର ବାସଗୃହ ନିର୍ମାଣ କଳ୍ପନା ଜଟିଆ ମୂଳରେ କବିବର ରାଧାନାଥଙ୍କ କୁଟୀର ନିର୍ମାଣ ପରି ଏକ କଳ୍ପନାରେ ହିଁ ରହିଗଲା ।" (ମାନସିଂହଙ୍କ 'ଜୀବନୀ ଓ ଜୀବନ'—ଡକ୍ଟର କୁଞ୍ଜବିହାରୀ ଦାସ – ମାନସିଂହ ପରିକ୍ରମା—ପୃ ୨୪୨)

---

(୧) ଈଶ୍ୱର ଶ୍ରୀ ମାୟାଧର ମାନସିଂହ—ଶ୍ରୀ ନିତ୍ୟାନନ୍ଦ ମହାପାତ୍ର
ମାନସିଂହ ସ୍ମରଣିକା ପୃ ୮୧

ଶ୍ରୀମତୀ ହେମଲତା ମାନସିଂହ ମଧ୍ୟ ଲେଖିଛନ୍ତି—"କବିଙ୍କର ଜନ୍ମସ୍ଥଳୀ ପୁରୁଣା ନନ୍ଦଳା ଗାଁ ବର୍ତ୍ତମାନ ନାହିଁ । ୧୯୪୩ର ଭୟଙ୍କର ତୋଫାନରେ ଗ୍ରାମ ଧ୍ୱଂସ ହୋଇଯାଇଛି । ଆମେ ସେତେବେଳେ ଆଠଗଡ଼ରେ ଥାଉଁ । କାର୍ତ୍ତିକ ମାସରେ ଝଡ଼ତୋଫାନ ଦେଖି କବିଚିତ୍ତ ଚଞ୍ଚଳ ହୋଇ ଉଠିଥିଲା । ଆଠଗଡ଼ରୁ ଚୁଡ଼ା, ଚାଉଳ, ଗୁଡ଼ଖୁଡ଼ା ଧାର କରିକରି ଶ୍ରୀ ନୀଳକଣ୍ଠ କୁମାର ଘୋଷଙ୍କୁ ସାଙ୍ଗରେ ନେଇ କବି ବାଲୁଗାଁରୁ ନୌକା ଯୋଗେ ତାଙ୍କ ଗ୍ରାମରେ ପହଞ୍ଚିଲେ । ଗ୍ରାମର ଚିହ୍ନବର୍ତ୍ତି ନ ଥିଲା । ଚତୁର୍ଦ୍ଦିଗ ଜଳମଗ୍ନ । ନିକଟସ୍ଥ ଗ୍ରାମମାନଙ୍କରୁ ପାଞ୍ଚଶତରୁ ଊର୍ଦ୍ଧ୍ୱ ମନୁଷ୍ୟ ମୃତ୍ୟୁମୁଖରେ ପଡ଼ିଥାନ୍ତି । ଗୃହପାଳିତ ପଶୁ ଓ ମନୁଷ୍ୟଙ୍କ ଶବରେ ବାୟୁମଣ୍ଡଳ ଦୁର୍ଗନ୍ଧପୂର୍ଣ୍ଣ । × × × ବ୍ୟଥିତ କବି ପଲ୍ଲୀର ଏଇ ଅବସ୍ଥାକୁ ଲକ୍ଷ୍ୟକରି 'ନଷ୍ଟପଲ୍ଲୀ' କବିତାଟି ରଚନା କରି ଯାଇଛନ୍ତି । (ପ୍ରିୟପରମ—ଶ୍ରୀମତୀ ହେମଲତା ମାନସିଂହ—ମାନସିଂହ ପରିକ୍ରମା—ପୃ ୧୬୯)

ମାନସିଂହଙ୍କ ପିତାଙ୍କ ନାମ ପଦ୍ମଚରଣ ମାନସିଂହ । ମାତାଙ୍କ ନାମ ସୁଭଦ୍ରା ଦେବୀ । ସେ ପିଲାଦିନରୁ ହିଁ ପିତୃମାତୃ ସ୍ନେହରୁ ବଞ୍ଚିତ ହୋଇଥିଲେ । ମାତ୍ର ଚାରିବର୍ଷ ବୟସ୍କ ହୋଇଥିବାବେଳେ ପିତା ସଂସାର ତ୍ୟାଗ କଲେ । ସେଇ ଦୁଃଖରେ ମାଆ ବି ଆତ୍ମହତ୍ୟା କଲେ । ସୁଭଦ୍ରା ଦେବୀଙ୍କ ବିଦାୟ ବେଳା ଗୋଟିଏ ଜୀବନର କୋଳାହଳକୁ ଲିଭେଇ ଦେଲା ଏବଂ ଆଉ ଗୋଟାଏ ପ୍ରତିଶ୍ରୁତିପୂର୍ଣ୍ଣ ଜୀବନର ଅସ୍ୱମାରମ୍ଭର ସମ୍ଭାବନା ଆଣିଦେଲା । ସେଥିପାଇଁ ଡକ୍ଟର କୁଞ୍ଜବିହାରୀ ଦାଶ କହିଛନ୍ତି—"ଯେତେ ଜୁଆରିଆ ଦିଶିଲେ ବି ତାଙ୍କ ହାସ୍ୟ ମଧ୍ୟରେ ସାରାଜୀବନ ସେ କାରୁଣ୍ୟର ଦାଗ ଲିଭିପାରି ନ ଥିଲା ।"

ମାନସିଂହଙ୍କ ସାଆନ୍ତବାପା ଅଗାଧୁ ନାୟକ ପାରିକୁଦ ରାଜାଙ୍କର ଦେବାନ ଥିଲେ । ସେ ତାଙ୍କ ଶିକ୍ଷାର ସମସ୍ତ ବ୍ୟୟ ବହନ କରିଥିଲେ । ମାନସିଂହ ପାରିକୁଦର ଗ୍ରାମ୍ୟ ପାଠଶାଳାରୁ ପାସ୍ କଲା ପରେ ଖୋର୍ଦ୍ଧା ମାଇନର ଓ ହାଇସ୍କୁଲରେ ଅଧ୍ୟୟନ କରିଥିଲେ । ସେ ୧୯୨୬ ସାଲରେ ପ୍ରଥମ ଶ୍ରେଣୀରେ ମାଟ୍ରିକ୍, ୧୯୨୮ରେ ରେଭେନ୍ସା କଲେଜରୁ ଆଇ. ଏ., ୧୯୩୦ରେ ଇଂରାଜୀରେ ଦ୍ୱିତୀୟ ଶ୍ରେଣୀ ଅନର୍ସ ସହିତ ବି.ଏ., ୧୯୩୨ରେ ଇଂରାଜୀରେ ଦ୍ୱିତୀୟ ଶ୍ରେଣୀରେ ଏମ୍.ଏ. ପାସ୍ କରିଥିଲେ । କବି ଖୋର୍ଦ୍ଧା ହାଇସ୍କୁଲରେ ପଢୁଥିବାବେଳେ ସେହି ହାଇସ୍କୁଲକୁ ଲାଗି ଗୋଟାଏ ସଂସ୍କୃତ ଟୋଲ୍ ଥାଏ । ଟୋଲ୍‌ର ଗୋଟାଏ ହଷ୍ଟେଲ ମଧ୍ୟ ଥାଏ । "× × ଟୋଲ୍ ହଷ୍ଟେଲଟିରେ ହାଇସ୍କୁଲର ପିଲାମାନେ ରହନ୍ତି । ସାଧାରଣତଃ ଗରିବ ପିଲାମାନେ ହିଁ ନିଜର ଗୋଟିଏ ମେସ୍ କରି ସେଠାରେ ଥାଆନ୍ତି । ମୋର ଖୋର୍ଦ୍ଧାରେ ଛାତ୍ରାବସ୍ଥାର

ଅର୍ଦ୍ଧାଧିକ କାଳ ଏହି ହଷ୍ଟେଲଟିରେ ହିଁ କଟି ଯାଇଥିଲା । × × × ସେଦିନ ସେଠାରେ ମୁଁ ମଧ୍ୟ ଥିଲି । ସବାଶେଷରେ ମତେ ଯେତେବେଳେ ପଚରାଗଲା ମୋର ଅଭିଳାଷ କଥା, ମୁଁ ଏଇଆ ଜବାବ ଦେଇଥିଲି—"ଯଦି ମୁଁ କୌଣସିମତେ ମାଟ୍ରିକ୍ ପରୀକ୍ଷାଟା ପାଶ୍ କରିପାରେ, ତେବେ ମୁଁ କୌଣସି ସ୍କୁଲରେ ଶିକ୍ଷକତା କରିବି । ଆହା, ଯଦି ସେଦିନର ସେହି ଅଭିଳାଷକୁ ମୁଁ ଅନ୍ତରରେ ଅନିର୍ବାଣ ପ୍ରଦୀପ ପରି ଜଳାଇ ରଖି ଥାଆନ୍ତି, ତା' ହୋଇଥିଲେ, କୌଣସି ସନ୍ଦେହ ନାହିଁ ଯେ ମୁଁ ଜଣେ ଉତ୍ତମ ଶିକ୍ଷକ ହୋଇପାରିଥାଆନ୍ତି କେବଳ ନୁହେଁ; ହୁଏତ ଜଣେ ଉତ୍ତମ ମନୁଷ୍ୟ ଓ ଉତ୍ତମ ଦେଶସେବକ ମଧ୍ୟ ହୋଇପାରିଥାଆନ୍ତି ।" (୨)

"ବିଦ୍ୟାଧର ହେବା ଯେତେ ସହଜ, ବିଦ୍ୟାନୁରକ୍ତ ହେବା ସେତେ ନୁହେଁ । ତଥାକଥିତ ଭାବରେ ମାର୍କାଧାରୀ ମାଷ୍ଟର ବୋଲାଇବା ଯେତେ ସହଜ, ଜଣେ ପ୍ରକୃତ 'ଶିକ୍ଷକ' ହେବା କୌଣସି ମତେ ସେତେ ସହଜ ନୁହେଁ । ଟ୍ରେନିଂ ସାର୍ଟିଫିକେଟ୍ ଧରି ଗୃହକୁ ଖୋଜିବା ଓ ଗୃହକୁ ପାଇଲା ପରେ କେବଳ ସ୍କେଲ୍ ଅଫ୍ ପେ ଓ ଇନ୍‌କ୍ରିମେଣ୍ଟ ଦାବୀ କରିବା ଏ ଦେଶରେ ଶିକ୍ଷକର ପ୍ରଧାନ କର୍ତ୍ତବ୍ୟ ହୋଇଉଠିଛି × × ଜାତିର ନୂତନ ବଂଶଧରଙ୍କ ଆଗରେ ଶିକ୍ଷକମାନେ ହିଁ ପ୍ରଥମ ଆଦର୍ଶ ପୁରୁଷ ରୂପେ ବିରାଜିତ ନ ରହିଲେ କୋଟି କୋଟି ମୁଦ୍ରା ବ୍ୟୟରେ ନିର୍ମିତ ସ୍କୁଲ କଲେଜ ବ୍ୟର୍ଥ ଲକ୍ଷ୍ୟ ହେବା ଧରିନେବାକୁ ହେବ । ଛାତ୍ରଙ୍କ ଆଖିରେ ଶିକ୍ଷକ ହିଁ ଦେଖାଯିବା ଉଚିତ ସବୁ ପ୍ରକାରରେ ବୀର ପୁରୁଷ ଓ ଉତ୍ତମ ପୁରୁଷ ।" (୩) ଏହାହିଁ ଥିଲା ମାନସିଂହଙ୍କ ଜୀବନାଦର୍ଶ । ପରବର୍ତ୍ତୀ ସମୟରେ ଏହି ଆଦର୍ଶକୁ ସେ ମେହେର କଲେଜରେ ପ୍ରିନ୍ସିପାଲ୍ ଥିବା ସମୟରେ ପ୍ରମାଣିତ କରିଥିଲେ ।

ମାନସିଂହଙ୍କ ପିଲାଦିନର ନାମ ଥିଲା ଘୁଷୁରିଆ, ଜଣେ ଘୁଷୁରିଆ ପିଲାଦିନେ ତାଙ୍କୁ ଦୁଃସାଧ୍ୟ ରୋଗରୁ ଆରୋଗ୍ୟ କରିଥିଲା । ଏଇ ନାମ ଦେଇ ଯମକୁ ବି ଓଡ଼ା ମୋଡ଼ା ପକେଇ ଦିଆହେଲା । ସେ ଆଉ ମାନସିଂହଙ୍କୁ ଛୁଇଁବାକୁ ସାହସ କରିଲା ନାହିଁ । ୧୯୩୬ ମେ ମାସ ୮ ତାରିଖରେ ଶ୍ରୀମତୀ ହେମଲତାଙ୍କ ସହିତ ତାଙ୍କର ବିବାହ ହେଲା । ଏଇ ପ୍ରସଙ୍ଗରେ ଶ୍ରୀମତୀ ହେମଲତା କହନ୍ତି, "ବର୍ତ୍ତମାନ ଯେଉଁ ନନ୍ଦଳା ଗ୍ରାମ ଅଛି, ସେଇ ଗାଁ କବିଙ୍କ ଜନ୍ମସ୍ଥାନ ନୁହେଁ । ମାତ୍ର ଶୈଶବର କ୍ରୀଡ଼ାସ୍ଥଳୀ ଥିଲା । ପୁରୁଣା ନନ୍ଦଳା ଘରକୁ ମୁଁ ବାହାହୋଇ ଯାଇଥିଲି ।

---

(୨) ଶିକ୍ଷାବିଦ୍‌ର ଗାଥା—ଡକ୍ଟର ମାୟାଧର ମାନସିଂହ—ପୃ-୧

(୩) ଶିକ୍ଷାବିଦ୍‌ର ଗାଥା—ପୃ. ୩

*

× × × ବିବାହ ପରେ ପରେ ମାନସିଂହ ପାଟନା ଗଲେ ଏମ୍. ଏ. ପରୀକ୍ଷା ଦେବାପାଇଁ । ତାପରେ ପଢ଼ିଲେ ବି. ଇଡ୍. । ସତ୍ୟବାଦୀ ବନବିଦ୍ୟାଳୟ ଛାଞ୍ଚାରେ ପଣ୍ଡିତ ଗୋଦାବରୀଶ ବାଣପୁର ସ୍କୁଲ ଆରମ୍ଭ କରିଥାଆନ୍ତି । ବି. ଇଡ୍. ପରୀକ୍ଷା ପରେ ମାନସିଂହ ସେଇ ସ୍କୁଲରେ ଅବୈତନିକ ଶିକ୍ଷକ ଭାବରେ ଯୋଗଦାନ କଲେ । ପରେ ସ୍କୁଲ ପରିଚାଳନା ସମିତି ସହିତ ତାଙ୍କର ମତାନ୍ତର ଘଟିବାରୁ ଇସ୍ତଫା ଦେବାକୁ ବାଧ ହେଲେ ।" ସେ ଭାଙ୍ଗିଯିବେ ପଛକେ ନଇଁବେ ନାହିଁ ଏହା ଥିଲା ତାଙ୍କର ଆଦର୍ଶ । ସେଥିପାଇଁ ତାଙ୍କୁ ଜୀବନର ବିଭିନ୍ନ ଘାତପ୍ରତିଘାତର ସମ୍ମୁଖୀନ ହେବାକୁ ପଡ଼ିଛି । ତଥାପି ସେ ଅକୁତୋଭୟ ହୋଇ ନିର୍ଭୀକତାର ସହିତ ଜୀବନର ଦୁର୍ଦ୍ଦିନକୁ ସାମ୍ନା କରିଛନ୍ତି । ସେଥିପାଇଁ ତତ୍କାଳୀନ ଡି. ପି. ଆଇ. ଡକ୍ଟର ବଳଭଦ୍ର ପ୍ରସାଦ ତାଙ୍କ ସମ୍ପର୍କରେ କହିଛନ୍ତି—"ଡକ୍ଟର ମାନସିଂହ, ତମେ ଯଦି ତମ କଲମ ଓ ବଚନକୁ ରୋକିବାର ଜାଣିଥାଆନ୍ତ ତେବେ ଏଥିରେ ସନ୍ଦେହ ନାହିଁ ଯେ ଏ ଷ୍ଟେଟରେ ତମେ 'ଟପ୍' (ସର୍ବୋଚ୍ଚ ସ୍ଥାନ)ରେ ବସିଥାଆନ୍ତ । ତମର ସବୁ ଯୋଗ୍ୟତା ଥିଲା । କେବଳ ସେତିକ ଛଡ଼ା ।" (ଶିକ୍ଷାବିତ୍‌ର ଗାଥା ପୃ ୨୪ )

କବି ବି. ଏ. ପାଶ୍ କଲାବେଳକୁ ଉତ୍କଳମଣି ଗୋପବନ୍ଧୁ ପ୍ରାଣତ୍ୟାଗ କଲେ । ଆବେଗର ତାଡ଼ନାରେ ସେ ଗୋପବନ୍ଧୁଙ୍କ ମୃତ୍ୟୁର କେତେଦିନ ଭିତରେ ଗୋଟିଏ କବିତା ଏବଂ ଇଂରାଜୀ ପ୍ରବନ୍ଧ ଲେଖି ପକାଇଥିଲେ । ଯାହାର ପରିଣତି ସ୍ୱରୂପ ତାଙ୍କୁ ଡେପୁଟୀ ଚାକିରୀ ମିଳି ନ ଥିଲା । "କିନ୍ତୁ ଡିପୋଟୀ ନ ହୋଇଛି ବୋଲି ଜୀବନରେ କେବେ ଅବଶୋଷ କରିନାହିଁ । ବରଂ ତା ନ ହୋଇ ବାଧହୋଇ ମଧ୍ୟ ଯାହା ଶିକ୍ଷା ବିଭାଗରେ ପଶିଲି ତାହାଯୋଗୁଁ ଜୀବନରେ ଅନେକ ମହାମୂଲ୍ୟ ଅଭିଜ୍ଞତା ମୁଁ ପାଇପାରିଛି । ମୋର ଯେଉଁ ସାଙ୍ଗମାନେ ଡେପୁଟୀ ଚାକିରୀ ପାଇ ଚାଲିଗଲେ, ପଢ଼ିଲାବେଳେ ସେମାନଙ୍କ ସହିତ ବେଶ୍ ବନ୍ଧୁତା ଥିଲା । × × ଫଳରେ ଦେଖିଲି ଏମାନଙ୍କ ଭିତରୁ ଅନେକେ ବାଟରେ ଦେଖାହେଲେ ଅଚିହ୍ନା ପରି ବ୍ୟବହାର କଲେ । ଏକା କଟକ ନଗରୀରେ ଥିଲେ ମଧ୍ୟ ସେମାନଙ୍କର ସାମାଜିକ ଉତ୍ସବରେ ମୋ ପରି ସାମାନ୍ୟ ଶିକ୍ଷକର ଆଉ ସ୍ଥାନ ନ ଥିଲା ।" (୪) କିନ୍ତୁ ମନେହୁଏ, ଗୋଟିଏ ଜୀବନର ସ୍ୱପ୍ନ ଓ ସେହି ସ୍ୱପ୍ନର ବ୍ୟର୍ଥତାର ମଧ୍ୟ ଯଥେଷ୍ଟ ମୂଲ୍ୟ ଅଛି । ଯଦିନେ ତାହା ଭବିଷ୍ୟତରେ କୌଣସି ନା କୌଣସି

(୪) ଶିକ୍ଷାବିତ୍‌ର ଗାଥା—ପୃ ୯

ସହପଥିକ ଓ ସତୀର୍ଥଙ୍କୁ କିଛି ହେଲେ ସାହାଯ୍ୟ ଦେବ ବୋଲି ଆଶା । ମୋର ବିଶ୍ୱାସ ମୁଷ୍ଟିମେୟ ହୁଅନ୍ତୁ ପଛେ, ଦେଶରେ ବରାବର ପ୍ରତି ପୁରୁଷରେ ଆଦର୍ଶବାଦୀ ତରୁଣର ଦଳ ବାହାରିବେ ; ଯେଉଁମାନେ ଶିକ୍ଷକ ଭାବରେ ଏ ଦେଶରେ ମାନବ ସେବା କରିବାକୁ ଜୀବନରେ ପରମ ମହତ୍ତ୍ୱ ବୋଲି ମନେକରିବେ । × × × ଡି. ପି. ଆଇ. ବା ଶିକ୍ଷାମନ୍ତ୍ରୀ ବା ପଞ୍ଝା ପଞ୍ଝା ଅଫିସର ଜଣେ ପ୍ରକୃତ ଗୁରୁ ସହିତ ସମାନ ହୋଇ ନ ପାରନ୍ତି ।" (ଶିକ୍ଷାଦଦ୍‌ର ଗାଥା )

## ଶିକ୍ଷାବିତ୍ ମାନସିଂହ :

କବି ମାନସିଂହ ବାଣପୁର ହାଇସ୍କୁଲରେ ଥିଲାବେଳେ ଗୋଦାବରୀଶ ମିଶ୍ରଙ୍କ ସହିତ ତାଙ୍କର ମତାନୈକ୍ୟ ଘଟିଲା । ଫଳରେ ସେ ସେଠାରୁ ଇସ୍ତଫା ଦେଇ ନିମାପଡ଼ା ସ୍କୁଲରେ ଶିକ୍ଷକ ଭାବରେ ଯୋଗ ଦେଇଥିଲେ ୧୯୩୪ ମସିହାରେ । "ଜୀବନରେ ସ୍ପଷ୍ଟ ମତ ଦେଇ, ଅକୁତୋଭୟ ଭାବରେ ସତ୍ୟକଥା କହିବାକୁ ଯାଇ, କର୍ତ୍ତୃପକ୍ଷଙ୍କ ହାତରୁ ମୁଁ ଯେ ମୋର ନ୍ୟାଯ୍ୟ ପ୍ରାପ୍ୟରୁ ବିଚ୍ୟୁତ ହୋଇ ବାରମ୍ବାର ଲାଞ୍ଛନା ଭୋଗ କରିଛି ; ତା ପଛରେ ମୋର ପ୍ରେରଣାର ଉତ୍ସ ସେହି ଅତୀତ ଗର୍ଭଲୀନ ନିମାପଡ଼ା ଜୀବନରେ ଆତ୍ମପରୀକ୍ଷାଜନିତ ପ୍ରତିଜ୍ଞା ।" (ଶିକ୍ଷାବିଦ୍‌ର ଗାଥା )

କବି ମାନସିଂହ ଭବାନୀପାଟଣାରେ ଶିକ୍ଷକତା କଲାବେଳେ ବିଲାତ ଯିବାର ଯୋଜନା କଲେ । ଜାହାଜ ଟିକେଟ୍ ଦାମ୍ ମାତ୍ର ୨୫୦ ଟଙ୍କା ହାତରେ ଧରି ସେ ବିଲାତ ଯିବାର ଦୁଃସାହସ କରିଥିଲେ । ଗୋଟିଏ ମାତ୍ର ସୁଟ୍, ତାକୁ ଧୋଇ ଶୁଖେଇ ସେ ପିନ୍ଧିଥିଲେ । ହାତରେ ରୋଷେଇ କରି ସେ ଖାଇଥିଲେ । ମାନସିଂହ ଓଡ଼ିଶାର ପ୍ରଥମ ପିଏଚ୍‌ଡି. ଡିଗ୍ରୀଧାରୀ । ସେ କାଳିଦାସ ଓ ସେକ୍‌ସପିଅର —ଏଇ ଉଭୟ ନାଟ୍ୟକାରଙ୍କ ମଧ୍ୟରେ ଏକ ତୁଳନାତ୍ମକ ଅଧ୍ୟୟନ କରି ଡରହାମ୍ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଡିଗ୍ରୀ ଲାଭ କରିଥିଲେ । "ନିମାପଡ଼ାରେ ଥିଲାବେଳେ ଗାନ୍ଧିଜୀଙ୍କ ଆତ୍ମଚରିତଟି ମୁଁ ପ୍ରଥମ କରି ମୂଳରୁ ଶେଷଯାଏ ପଢ଼ିଲି । ଏହି ମହାନ୍ ଗ୍ରନ୍ଥର ପାଠକମାନଙ୍କର ମନେଥାଇପାରେ ଯେ ସେ ଗ୍ରନ୍ଥରେ ବାପୁଜୀ, ହେମଚନ୍ଦ୍ର ନାମକ ଜଣେ ଗୁଜରାଟି ସାହସୀ୍ୟକର ଭ୍ରମ୍ୟମାଣ ଜୀବନ ବର୍ଣ୍ଣନା କରିଛନ୍ତି । ଡେକ୍ ପାସେଞ୍ଜର ହୋଇ, ବା ଜାହାଜରେ କାମ କରି ହେମଚନ୍ଦ୍ର, ଇଂରାଜୀ ଅନଭିଜ୍ଞ ଥାଇ ମଧ୍ୟ ପୃଥିବୀର ଅର୍ଦ୍ଧେକ ବୁଲି ଆସିଥିଲେ । ଏଇ ଲୋକଟିର କୃତୀ ହିଁ ପ୍ରକୃତରେ ମୋର ବିଲାତ ଯାତ୍ରାର ପ୍ରକୃତ ପ୍ରେରଣା ।"

ବିଲାତରୁ ଉଚ୍ଚଡିଗ୍ରୀ ପାଇ ଫେରିଲେ ମଧ୍ୟ ମାନସିଂହଙ୍କୁ କୌଣସି କଲେଜରେ ଅଧ୍ୟାପକ ଚାକିରଟିଏ ମଧ୍ୟ ମିଳି ନ ଥିଲା । ସେତେବେଳେ ପିଏଚ୍‌ଡି. କରିଥିବା ବ୍ୟକ୍ତିଙ୍କୁ ଛଅଟି ଇନ୍‌କ୍ରିମେଣ୍ଟ ଦିଆ ହେଉଥିଲା । କିନ୍ତୁ ମାନସିଂହଙ୍କ ପ୍ରତି ଭିନ୍ନ ବିବେଚନା କରାଗଲା । ସେ ସେଥିପାଇଁ ବ୍ୟଥିତ ହୋଇ ଲେଖିଛନ୍ତି—"କାଳେ ଆମପରି ଅଯୋଗ୍ୟ ଏ ସୁବିଧା ପାଇଯିବେ, ଏଥିପାଇଁ କର୍ତ୍ତୃପକ୍ଷ ସେହିବର୍ଷଠାରୁ ଏହି ନିୟମ କାମିକା ହେବ ବୋଲି ସ୍ଥିର କରିଥିଲେ ; ଯେଉଁଥିରେ କି ଭାଗ୍ୟବାନଙ୍କ ପଂକ୍ତିରେ ଆମେ ନ ଥିବୁ । ପ୍ରତିଭାବାନ୍, ଭାଗ୍ୟବାନ୍, ଜ୍ଞାନବାନ୍ ତରୁଣର ଦଳ ଉତ୍କଳ ମାତାକୁ ଜ୍ଞାନରତ୍ନର ମାଳାସବୁ ପିନ୍ଧାଇବାର ପୁରସ୍କାର ରୂପେ ଛ ଛ ଇନ୍‌କ୍ରିମେଣ୍ଟ ତେଣୁ ପାଇଗଲେ । ଆମପରି ଗୋଷ୍ଠୀହୀନ, ମୁରବୀହୀନ ଅଧମକୁ କିଏ କାହିଁକି ଲେଖାରେ ଆଣିବ ? (ଶିକ୍ଷାବିଦ୍‌ର ଗାଥା—ପୃ ୩୯) ଜୀବନର ନାନା ବ୍ୟର୍ଥତା ଓ ବିଫଳତାରେ ସେ ନିଜକୁ ଏହିପରି ଭାବରେ ସାନ୍ତ୍ୱନା ଦେଇଛନ୍ତି—"ବିଧାତାର ଚତୁର ସୃଜନ ବିଧିରେ ମୋ ଜୀବନରେ ନ ମିଳିବା ହିଁ ହୋଇଛି ପରେ ବହୁ ମିଳିବାର ମୂଳ ହେତୁ । ଲେଖକର ତେଣୁ କ୍ରମେ କ୍ରମେ ନିଜ କୃତିତ୍ୱରେ ବିଶ୍ୱାସହାନି ଓ ଅଜ୍ଞାତ ହସ୍ତର ପରିଚାଳନାରେ ଗଭୀରରୁ ଗଭୀରତର ବିଶ୍ୱାସ ବଢ଼ି ଚାଲିଛି ।" (ଶିକ୍ଷାବିଦ୍‌ର ଗାଥା—ପୃ ୪୫)

ମାନସିଂହ ପୂର୍ବଭାରତୀୟ ଗଡ଼ଜାତପୁଞ୍ଜର ଶିକ୍ଷା ପରାମର୍ଶଦାତା ରୂପେ ନିଯୁକ୍ତି ଲାଭକଲେ । ସେତେବେଳେ ସମ୍ବଲପୁରରେ ପାହାଡ଼ ଉପରର ସେହି ସର୍କିଟ୍ ହାଉସ୍‌ରେ କବି ରହୁଥିଲେ । ପରିବେଶ କବିତାର ଅନୁକୂଳ । ଗଡ଼ଜାତ ପ୍ରକୃତିର ନିବିଡ଼ ସମ୍ପର୍କରେ ଆସିବା ଫଳରେ ତାଙ୍କ ମନ ମଧ୍ୟ ସର୍ବତୋଭାବେ ଅନୁକୂଳ କ୍ଷେତ୍ର ଲାଭ କରିଥିଲା । କିନ୍ତୁ ପ୍ରକୃତି ଦର୍ଶନରେ ସୌନ୍ଦର୍ଯ୍ୟାନନ୍ଦ ଅପେକ୍ଷା ଜାତୀୟଭାବ ତାଙ୍କର ମର୍ମେ ମର୍ମେ ଫୁଟି ଉଠୁଥିଲା । ମଧ୍ୟପ୍ରଦେଶରେ ମହାନଦୀର କ୍ଷୀଣ ରୂପ ଦେଖି ସେ ଲେଖିଥିଲେ—"ସେଠି ମହାନଦୀ କ୍ଷୀଣ ଶରୀର । ତାର ସହସ୍ର ସହସ୍ର କ୍ଷୁଦ୍ର ଉପନଦୀ ମଧ୍ୟରୁ ଗୋଟିଏ ଯେପରି, ଆଉ ଦରିଦ୍ରା ସ୍ତ୍ରୀ ପରି ବେଶଭୂଷଣ ହୀନା । କିନ୍ତୁ ତାକୁଇ ଦେଖି ପ୍ରାଣ ନାଚି ଉଠିଲା । କାରଣ ସେ ଆମର ମହାନଦୀ, ଅତି ପରିଚିତା, ଅତି ଆତ୍ମୀୟା, ଅତି ନିକଟର, ଅତି ଆପଣାର ଜୀବନର ଧାରା ।" (ଶିକ୍ଷାବିଦ୍‌ର ଗାଥା—ପୃ ୭୬)

ମାନସିଂହ ପ୍ରତି ଗଡ଼ଜାତ ରାଜ୍ୟରେ ସମଜାତୀୟ ଅନୁଷ୍ଠାନ ସ୍ଥାପନ ନ କରି କେଉଁଠି କୃଷିସ୍କୁଲ, କେଉଁଠି କଳାସ୍କୁଲ ସ୍ଥାପନ କରିବା ଲାଗି ଚେଷ୍ଟିତ

ହେଲେ । ତାଙ୍କର ଏହି ମୌଳିକ ଯୋଜନା ହିଁ ତାଙ୍କ ପକ୍ଷେ କାଳ ହେଲା । ସାର୍ବଭୌମତ୍ୱ ବିନଷ୍ଟିର ଏ ଏକ ଗୂଢ଼ ପ୍ରୟାସ ବୋଲି କ୍ଷୀଣଦୃଷ୍ଟିସମ୍ପନ୍ନ ଗଡ଼ଜାତ ରାଜାମାନେ ବୁଝିଲେ ଓ ଶିକ୍ଷାପରାମର୍ଶଦାତା ଚାକିରି ଉଠାଇ ଦେଲେ । ମାନସିଂହଙ୍କୁ କିଛିକାଳ ବେକାର ଜୀବନ ଯାପନ କରିବାକୁ ପଡ଼ିଲା । ନାନା ବିଷୟରେ ତାଙ୍କ ଜୀବନ ଘଟଣାବହୁଳ । ଅନୁଭୂତିରେ ବୈଚିତ୍ର୍ୟମୟ । ସେ ଆପଣାର ସ୍ୱତନ୍ତ୍ର ମତକୁ ବଳିଷ୍ଠଭାବେ ପ୍ରକାଶ କରୁଥିଲେ । ଯେତେବେଳେ ଯାହା ତାଙ୍କୁ ଭଲ ଲାଗୁ ନ ଥିଲା, ତାକୁ ଯେପରି ସ୍ପଷ୍ଟ ଭାଷାରେ କହୁଥିଲେ, ସେପରି ସ୍ପଷ୍ଟକରି ଲେଖୁଥିଲେ । ତାଙ୍କର ଆତ୍ମବିଶ୍ୱାସ ଥିଲା ପ୍ରବଳ । କାହାର ଅପ୍ରିୟ ହେବାର ବିପଦ ଥାଉ ପଛକେ, ସେ ଶସ୍ତା ଜନରଞ୍ଜନ କରିବାକୁ ଚାହୁଁ ନ ଥିଲେ । ଶେଷ ଜୀବନ ପର୍ଯ୍ୟନ୍ତ ନିରଳସ, ନିରବଚ୍ଛିନ୍ନ ସାହିତ୍ୟ ସାଧନା ତାଙ୍କର ଅକ୍ଷୁଣ୍ଣ ଥିଲା । ସାହିତ୍ୟକୁ ସେ ଭାବୁଥିଲେ ମଣିଷ ସଭ୍ୟତାର ଶ୍ରେଷ୍ଠତମ ଉତ୍କର୍ଷ ବୋଲି । ଜୀବନର ନାନା ଅନୁଭୂତିମୟ 'ମୁଁ' ପଣ ତାଙ୍କ ଆଗରେ ମୁଖ୍ୟ । ସେ ବଳିଷ୍ଠ, ସ୍ୱତନ୍ତ୍ର, ଅନ୍ୟଠୁ ଭିନ୍ନ ସତ୍ତା ।

"ଯେଉଁମାନେ ତାଙ୍କୁ ଦେଖିଛନ୍ତି ତାଙ୍କ ବ୍ୟକ୍ତିତ୍ୱ ନିଶ୍ଚୟ ସେମାନେ ଭୁଲିପାରିବେ ନାହିଁ । ତାଙ୍କ ଲେଖା ପରି ତାଙ୍କ କଥାଭାଷା ଓ ବ୍ୟବହାର ସବୁବେଳେ ମାର୍ଜିତ । ବ୍ୟକ୍ତିତ୍ୱରେ ସଂସ୍କୃତିର ଛାପ ଥିଲା । ବ୍ୟବହାରରେ ମଧୁର ସୌଜନ୍ୟ ଥିଲା । ବେଳେବେଳେ ପରିହାସରେ ଉଚ୍ଛ୍ୱଳ ହୋ ହୋ ଅଝଲା ହସ । ବେଳେବେଳେ ଗୋଟିଏ ଅତି ସହାନୁଭୂତିଶୀଳ ସ୍ନେହୀ ହୃଦୟର କ୍ଷଣିକ ଝଲକ ବାରି ହେଉଥିଲା । ଆଉ କେତେବେଳେ ସେ କେଉଁ ଚିନ୍ତାରେ ମଗ୍ନ । କେତେବେଳେ ପାଖରେ ଥାଇ ବି ଦୂରରେ, ମୁହଁରେ ଗୋଟିଏ ନିବିଷ୍ଟ ସୌମ୍ୟ ଗମ୍ଭୀରତା । ସେ ଏ ଦୁନିଆକୁ ଭଲ ପାଉଥିଲେ । ନିଜ ଜୀବନକୁ ଉପଭୋଗ କରୁଥିଲେ ।" (୫)

ଡକ୍ଟର ମାନସିଂ କିଛିକାଳ ରେଭେନ୍‌ସା କଲେଜରେ ଓଡ଼ିଆ ଅଧ୍ୟାପକ ହୋଇଥିଲେ ଓ ସଦ୍ୟ ଉନ୍ମୋଚିତ ଓଡ଼ିଆ ଏମ୍. ଏ. ଶ୍ରେଣୀରେ ପଢ଼ାଇଥିଲେ । କିନ୍ତୁ ଓଡ଼ିଆ କ୍ଲାସରେ ଇଂରେଜୀରେ ସମାଲୋଚନା ନୋଟ୍ ଡାକିବା ମାନସିଂହଙ୍କର ଏକ ଅପରାଧ ରୂପେ ବିବେଚିତ ହୋଇଥିଲା ଏବଂ ତାଙ୍କୁ ପଦଚ୍ୟୁତ ହେବାକୁ ପଡ଼ିଥିଲା । ତା'ପରେ କିଛିକାଳ ଦକ୍ଷିଣ ଓଡ଼ିଶାର ଇନସ୍‌ପେକ୍ଟର ହୋଇଥିଲେ । ୧୯୪୮ରେ ସେ ମୌଳିକ ଶିକ୍ଷା ବିଷୟରେ ପ୍ରତିକୂଳ ମତ ପ୍ରକାଶ

---

(୫) ଡକ୍ଟର ମାୟାଧର ମାନସିଂହଙ୍କ ପ୍ରଣତି—ଶ୍ରୀ ଗୋପୀନାଥ ମହାନ୍ତି, ମାନସିଂହ ସ୍ମରଣିକା—ପୃ-୪

କରିବା'ରୁ କଂଗ୍ରେସ ନେତାମାନେ ତାଙ୍କ ଉପରେ ଖଡ୍‌ଗହସ୍ତ ହୋଇଥିଲେ । ମାନସିଂହଙ୍କର ଏଇ ଗୋଟିଏ ଗୁଣ—ଯାହା ସତ୍ୟ ବୋଲି ବୁଝନ୍ତି, ଖାଲରେ ପଡ଼ୁ ବା ଢିପରେ ପଡ଼ୁ ସ୍ପେକ୍‌ଟୋକ୍ ଭାବେ ତାକୁ ପ୍ରକାଶ କରି ଦିଅନ୍ତି । ଏହା ତାଙ୍କ ବ୍ୟକ୍ତି ସ୍ୱାର୍ଥର ପ୍ରତିକୂଳ ବା ଅନୁକୂଳ ହେବ ସେ ବିବେଚନା ନ ଥାଏ । ଜୀବନର ନାନା ଉତ୍ଥାନ ପତନ ଦେଇ ମାନସିଂହଙ୍କ ଜୀବନ ଗତିକରି ଶେଷରେ ମେହେର କଲେଜର ଅଧ୍ୟକ୍ଷ ଭାବରେ ସାତବର୍ଷ ଅବସ୍ଥାନ କରିବା ; ତାଙ୍କ ଜୀବନରେ ଏକ ସୁବର୍ଣ୍ଣଯୁଗ । ସେ ସମ୍ପର୍କରେ ମାନସିଂହ 'ଶିକ୍ଷାବିଦ୍‌ର ଗାଥା'ରେ ଲେଖିଛନ୍ତି—"ମେହେର କଲେଜକୁ ଗୋଟିଏ ସ୍ୱୟଂ ସମ୍ପୂର୍ଣ୍ଣ ସୁନ୍ଦର, ସମ୍ମାନିତ ବିଦ୍ୟାନୁଷ୍ଠାନ କରି ଗଢ଼ିବା ହିଁ ମୋର ଲକ୍ଷ୍ୟ ଥିଲା । ମୋର ଏଇ ସ୍ୱପ୍ନ ଅନେକ ପରିମାଣରେ ସାଧିତ ହୋଇଥିଲା । କୋ-ଅପରେଟିଭ୍ ଷ୍ଟୋରରେ ପିଲାଏ ତାଙ୍କର ଯାବତୀୟ ବ୍ୟବହାର୍ଯ୍ୟ ଦ୍ରବ୍ୟାଦି ପାଉଥିଲେ । ବାହାରକୁ ଯିବା ଦରକାର ନ ଥିଲା । ମେସ୍ ଓ କ୍ୟାଣ୍ଟିନ୍ ବସାଇ ଓ ସେସବୁକୁ ସୁପରିଚାଳିତ କରାଇ ପିଲାଙ୍କ ଭୋଜନ ଓ ଜଳଖିଆର ଅତି ଉତ୍ତମ ବ୍ୟବସ୍ଥା ସେହି କମ୍ପାଉଣ୍ଡ ଭିତରେ ହିଁ କରାଯାଇପାରିଥିଲା । ଏସବୁ ଏପରି ଚାଲିଥିଲା ଯେ ବାହାରର ଲୋକେ ବି କଲେଜ ମେସ୍ ଓ କ୍ୟାଣ୍ଟିନ୍‌ର ସୁବିଧା ନେଲେ । କାରଣ ଏତେ ଶସ୍ତାରେ ଏପରି ଉତ୍କୃଷ୍ଟ ଖାଦ୍ୟ ସହରରେ ଅନ୍ୟତ୍ର ମିଳିବା ଅସମ୍ଭବ ଥିଲା । ଗୋଶାଳା ପ୍ରତିଷ୍ଠା କରି ପିଲାଙ୍କୁ ଦୁଧ ଯୋଗାଇ ଦିଆଗଲା । କଲେଜର ବିଦ୍ୟାର ସମ୍ମାନ ଉପରକୁ ଉଠିଲା ଓ କଲେଜ ବିଶ୍ୱବିଦ୍ୟାଳୟର ପରୀକ୍ଷାମାନଙ୍କରେ ପ୍ରତିବର୍ଷ ନାମ ରଖିଲା ।" (ଶିକ୍ଷାବିଦ୍‌ର ଗାଥା—ପୃ ୧୩୩) ଗଙ୍ଗାଧର ମେହେର କଲେଜରେ ମାନସିଂହ ଯେତେ କାମ କରିଥିଲେ, କୌଣସି ଲୋକର ଦେଶପ୍ରୀତି, ଆନ୍ତରିକତା ଓ ଆଦର୍ଶ ନ ଥିଲେ କେହି କେବେ ତାହା କରିପାରିବେ ନାହିଁ । ଶିକ୍ଷାକୁ କେବଳ ପୁସ୍ତକ-ପାଠରେ ସୀମିତ ନ ରଖି ଦୈନନ୍ଦିନ ଜୀବନରେ କାର୍ଯ୍ୟକାରୀ କରିବାପାଇଁ ସେ ଭାରି ଚେଷ୍ଟା କରୁଥିଲେ । ଶିକ୍ଷା ବିଷୟରେ ସେ ଯେତେବେଳେ ଯାହା ଭାବିଛନ୍ତି ; ତାକୁ ସେ ଦୃଢ଼ କଣ୍ଠରେ କହିଛନ୍ତି ଏବଂ ଲୌହ କଲମ ଗାରରେ ଲେଖି ଯାଇଛନ୍ତି ।

**ସାହିତ୍ୟିକ ଦୃଷ୍ଟିଭଙ୍ଗୀ—**

"ସାହିତ୍ୟକୁ ସେ ଭାବୁଥିଲେ ମଣିଷ ସଭ୍ୟତାର ଶ୍ରେଷ୍ଠତମ ଉତ୍କର୍ଷ ବୋଲି । ସେ ଭାବୁଥିଲେ ସାହିତ୍ୟକର ମୂଲ୍ୟବୋଧ ତାର ନିଜସ୍ୱ, ତାର ରୁଚି ଓ ମତ ତା ନିଜର । ସେ ନିଜକୁ..." ( ଗୋପୀନାଥ ମହାନ୍ତି—ମାନସିଂ ସ୍ମରଣିକା )

ବୈଚିତ୍ର୍ୟମୟ ଜୀବନ ଭିତରେ ତାଙ୍କର କାବ୍ୟ କବିତାର ବୈଶିଷ୍ଟ୍ୟ କବି ସୀତାକାନ୍ତ ମହାପାତ୍ରଙ୍କର ଏହି ଉକ୍ତିରୁ ସ୍ପଷ୍ଟ ହୋଇଥାଏ । "ସେ ଓଡ଼ିଆ କାବ୍ୟ ଜଗତକୁ ଆସିଥିଲେ ଗୋଟିଏ ନୂଆ ସ୍ୱର ନେଇ । ସେ ସ୍ୱର ଥିଲା ଅତି ବ୍ୟକ୍ତିଗତ ଅନୁଭବର ସ୍ନେହ ଓ ପ୍ରେମର, ସୁନ୍ଦରର ଉପାସନାର । ମାୟକୁପ୍, କାଣ୍ଟ୍, ଗ୍ରାଟ୍, ଜଗିରଷି ଚଳିବା ଦୁନିଆଠାରୁ ସେ ସ୍ୱର ଥିଲା ଖୁବ୍ ଦୂରରେ । ସେ ସ୍ୱର ଥିଲା ଆନ୍ତରିକତାର, ଉଦ୍ଦାମ ଅନୁଭବର । ସମ୍ପୂର୍ଣ୍ଣ ନିର୍ଭୀକତାର । ଖାଲି ପ୍ରକୃତିର ବର୍ଣ୍ଣନା ନୁହେଁ, ବସ୍ତୁନିଷ୍ଠତା ନୁହେଁ, ନିଜକଥା, ନିଜ ଅଙ୍ଗେ ଲିଭେଇ ସିବା କଥା, ଇନ୍ଦ୍ରିୟାନୁଭୂତିର କଥା । ଏଇ ନଶ୍ୱର ଦେହର କଥା । 'ପ୍ରିୟାର କରକଙ୍କଣ' ଇତ୍ୟାଦି କଣୋଆର ଗୁଲ୍‌ବଦନ କଥା । ସେଥିରେ ଥିଲା ଏକ ଅଭୁତପୂର୍ବ ଶିହରଣ ଓ ଆନନ୍ଦର ସ୍ପର୍ଶ—ଯାହା ପାଠକଙ୍କୁ ସମ୍ପୂର୍ଣ୍ଣ ଅଭିଭୂତ କରୁଥିଲା । × × × ସବୁ ବାଦାନୁବାଦ, ମତାନୈକ୍ୟ ଉପରେ ରହିବ ସେଇ କବିଟି ଯିଏ ନିର୍ଭୟରେ ନିଜର ଗଭୀରତମ ଅନୁଭବକୁ ସିଧାସଳଖ ଲେଖିଯାଇଥିଲା । × × × ସେଇ 'ନନ୍ଦଲା'ରେ ମୋତେ ସେ କହିଥିଲେ ଯେ 'ଧୂପ' ତାଙ୍କର ପ୍ରିୟତମ କାବ୍ୟ ।" (୭)

"ନ ହେଲେ ଏକଇ କଣ୍ଠରୁ ଧୂପ ଓ ହେମଶସ୍ୟର ସଙ୍ଗୀତ ସମାନ ଆବେଗ, ସମାନ ଗତି ଓ ସମାନ ତାଳରେ ନିଃସୃତ ହୋଇଥାନ୍ତା କିପରି ? ଆପଣ କିଣ ସତରେ ସ୍ୱକୀୟା ଓ ପରକୀୟା ପ୍ରେମାନୁଭୂତିକୁ ସମାନ ଭାବରେ ଧରି ରଖିଥିଲେ ? କେଜାଣି ବିଶ୍ୱାସ ହୁଏନା । ଆପଣଙ୍କର ନିଷ୍ଠାପର ଦାମ୍ପତ୍ୟ ପ୍ରେମ ଗୋଟିଏ ନିରାପତ୍ତାର ଦୁର୍ଗ ମଧ୍ୟରେ ସର୍ବଦା ଆପଣଙ୍କୁ ରକ୍ଷାକରି ଆସିଥିଲା । ସେହିପରି ଭାବଜଗତରେ ମଧ୍ୟ ଆପଣ ବହୁ ବିରୋଧ ଓ ସଙ୍କଟର ସମ୍ମୁଖୀନ ହୋଇଛନ୍ତି । କିଣ ଆପଣଙ୍କର ସେହି ଗୋପନୀୟ ଚିତ୍ତମନ୍ଦିରରେ ନିତ୍ୟପୂଜିତା ପରକୀୟା ପ୍ରେମନିଷ୍ଠା ଆପଣଙ୍କୁ ଭାବଜଗତର ସେହିସବୁ ଝଡ଼ଝଞ୍ଜା ଭିତରେ ବି ଏକ ରକ୍ଷାକବଚର ଅଲୌକିକ ମାନ୍ତ୍ରିକ ଶକ୍ତିରୂପେ ଆପଣଙ୍କୁ ଧୈର୍ଯ୍ୟ, ଶକ୍ତି, ବଳ, ଉଚ୍ଛ୍ୱାସ, ଆବେଗ ପ୍ରେରଣା ଏବଂ ତତ୍ସଙ୍ଗେ ସଙ୍ଗେ ବୈରାଗ୍ୟ, ନିରାଶକ୍ତି କ୍ଷମା ଓ ତିତିକ୍ଷା ଦ୍ୱାରା ଆପଣଙ୍କୁ ସବୁବେଳେ ଆପଣଙ୍କ ଅଲକ୍ଷରେ ରକ୍ଷାକରି

(୭) ଧୂପର କବି (ମାନସିଂହ ସ୍ମରଣିକା) ଶ୍ରୀ ସୀତାକାନ୍ତ ମହାପାତ୍ର—
ପୃ ୨୮-୨୯

ଆସୁଥିଲା । ଦୁଇଟାଇ ବୋଧେ ସତ୍ୟ ; ମାତ୍ର ଏକଥା ମାନିବାକୁ ହେବ—ଆପଣ ପରକୀୟା ଜଗତରେଇ ଥିଲେ କବି, ପ୍ରେମିକ ଓ ସନ୍ନ୍ୟାସୀ ।" (୭)

ସବୁଜ ସମସାମୟିକ ଏକକ କବି ଭାବରେ ମାନସିଂହ ଥିଲେ ସମ୍ପୂର୍ଣ୍ଣ ଭାବରେ ବ୍ୟତିକ୍ରମ । ତାଙ୍କ କାବ୍ୟଚେତନାରେ ସ୍ୱଦେଶାନୁରକ୍ତି, ପଲ୍ଲୀ ଜୀବନର ଅସଂଖ୍ୟ ଭାବାନୁଭୂତି, ମାନବାତ୍ମାର କରୁଣ ସ୍ୱର ଏବଂ ଆଧିଭୌତିକ ଉଦ୍ଧରଣ ଅତ୍ୟନ୍ତ ମାର୍ମିକ । 'ଧୂପ' କାବ୍ୟ ମାନସିଂହଙ୍କ କାବ୍ୟ ପ୍ରତିଭାର ଚୂଡ଼ାନ୍ତ ସ୍ୱାକ୍ଷର ବହନ କରିଛି । ଇଂରାଜୀ ସାହିତ୍ୟର ଗ୍ରୀତ ଭାବରେ ମାନସିଂହ କୀଟସ୍, ବାଇରନ, ଓ୍ୱାର୍ଡ଼ସ୍‌ଓ୍ୱାର୍ଥ ପ୍ରମୁଖ କବିମାନଙ୍କ ପରି ନିଜର ବ୍ୟକ୍ତିଗତ ପ୍ରେମୋଚ୍ଛ୍ୱାସକୁ ଅକୁଣ୍ଠିତ ଭାବରେ ପ୍ରକାଶ କରିଛନ୍ତି । ମାନସିଂହଙ୍କ କାବ୍ୟଚିନ୍ତାରେ ଏକ ବିରୋଧାଭାସର ସଂକେତ ତାଙ୍କର 'ହିସାବ ନିକାଶ' କବିତାରୁ ସ୍ପଷ୍ଟ ହୋଇ-ଥାଏ । (୮)

"ରାଗ ଅଭିମାନ କରୁଛି ଭାବୁଛ ? ହେ ପୁରାତନୀ
ତୁମପାଇଁ ଆଜ ଘୃଣାରେ ଚମକେ ମୋର ଧମନୀ
ମିଥ୍ୟାଗୃହିଣୀ, ପାପ ବିଳାସିନୀ,
ତବ ଭୂଲଣରେ ପୂଜା ହେଲା ଯାହା କବି ଲେଖନୀ ।"

ଏ କବିତାଟି 'ସହକାର'ରେ ପ୍ରକାଶ ପାଇବା ପରେ ଶ୍ରୀ ବୈକୁଣ୍ଠନାଥ ଦାସ ସେଇବର୍ଷ ସହକାରର ୩ୟ ସଂଖ୍ୟାରେ 'ହିସାବ, ନିକାଶ, ନିଶାପ' ନାମକ ଏକ କବିତା ଲେଖି ମାନସିଂହଙ୍କ କାବ୍ୟସ୍ୱର ବିରୁଦ୍ଧରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ କରିଥିଲେ । ଏହା ସେତେବେଳେ କେତେ ବେଶୀ ଚହଳ ସୃଷ୍ଟି କରିଥିଲା ତାହା ସହକାରର ପୃଷ୍ଠାରୁ ଅନୁମିତ ହୋଇଥାଏ । 'ହିସାବ ନିକାଶ' କବିତାଟି ଲେଖି ନ ଥିଲେ ହୁଏତ ମାନସିଂହଙ୍କ କବି ବ୍ୟକ୍ତିତ୍ୱ ଅଧିକ ପ୍ରଭାବଶାଳୀ ହୋଇପାରି-ଥାଆନ୍ତା । କାରଣ ତାଙ୍କ ବ୍ୟକ୍ତିତ୍ୱକୁ ଯେଉଁମାନେ ଅତି ନିକଟରୁ ଅନୁଧ୍ୟାନ କରିଛନ୍ତି ; ସେମାନେ କହନ୍ତି "କେତେ ବିରୋଧାଭାସୀ ବିଚିତ୍ର ଗତିବୃତ୍ତିରେ ଗୋଳାଆମିଶା ବ୍ୟକ୍ତିତ୍ୱ ଆପଣଙ୍କର ! କେତେ ସୁମଧୁର, କେତେ ଉଚ୍ଚାଟକ ଆଉ କେତେ ଆକର୍ଷଣ । ଆପଣ ପ୍ରଥମ ଯୌବନରେ ଅନ୍ୟର ବିବାହିତା ଯୁବତୀ ପତ୍ନୀ ସଙ୍ଗେ ସହକାର ତଳେ ଗୁପ୍ତ ପରକୀୟା ପ୍ରଣୟରେ ମାତିଥିଲେ ବୋଲି

(୭) ମାନସିଂହ ସ୍ମରଣିକା—ଗୁଣ ସୁମର ସ୍ୱଅନ୍ତ ବିକଳ—ମହାପାତ୍ର ନୀଳମଣି ସାହୁ, ପୃ-୭୫

(୮) ହିସାବ ନିକାଶ—ସହକାର ୨୩/୧ମ ବୈଶାଖ ୧୩୪୯, ଏପ୍ରିଲ ୧୯୪୨

ଶୁଣାଯାଏ । ସେ ପ୍ରଣୟ ଶେଷ ପର୍ଯ୍ୟନ୍ତ ଆପଣଙ୍କ ଅନ୍ତରକୁ ଉଦ୍‌ବେଳିତ ଓ ଉଦ୍ଭାସିତ କରି ରଖିଥିବା ମୁଁ ଜାଣେ । ଆପଣଙ୍କର ସେହି ରସବନ୍ତ ପ୍ରେମମୟୀ ପ୍ରଣୟିମାନଙ୍କ ପ୍ରତି ଏବେ ସୁଦ୍ଧା ଆପଣଙ୍କ ଅନ୍ତର କି ଗଭୀର ସମ୍ମାନଜନକ ଭାବାବେଶରେ ପୂର୍ଣ୍ଣ ଥିଲା ; ତାହା ମଧ୍ୟ ମୋତେ ଜ୍ଞାତବ୍ୟ ଅଛି । ଅଥଚ ଆପଣଙ୍କ ଭଳି ସୁଖୀ ଶୃଙ୍ଖଳିତ ଓ ନିରାପଦ ଦାମ୍ପତ୍ୟ ଜୀବନ କେତେଜଣଙ୍କର ବା ଅଛି ? ଆପଣଙ୍କର ବହୁ ଲେଖା ଭିତରେ ଆପଣ ଆପଣଙ୍କର ପ୍ରିୟବନ୍ତା ପତ୍ନୀ ହେମଲତାଙ୍କ ପ୍ରତି ଗଭୀର କୃତଜ୍ଞତା ଓ ସମ୍ମାନଭାବ ଜ୍ଞାପନ କରିଛନ୍ତି । × × × ସବୁ ଉତ୍ତମ ପ୍ରେମିକ ପୁରୁଷଙ୍କ ଭଳି ହୃଦୟର ନିଭୃତତମ, ଗଭୀରତମ, ରସାତଳ ପ୍ରଦେଶରେ ଅତି ସଂଗୋପନରେ ଗୋପନୀୟ ଓ ଏକାନ୍ତ ବ୍ୟକ୍ତିଗତ ରୋମାଣ୍ଟିକ୍ ପ୍ରେମକୁ କପରି ଫୁଲ ତୁଳସୀ ଚନ୍ଦନ ଓ ଧୂପାଳତି ଦେଇ ପୂଜା କରାଯାଏ—ସେ ସାଧନା ଆପଣଙ୍କୁ ନିଶ୍ଚୟ ଜଣାଥିଲା । (୯)

"ସେ ବୌଦ୍ଧଧର୍ମରେ ବିଶ୍ୱାସୀ ହୋଇ ବୁଦ୍ଧଙ୍କର ଭକ୍ତ ହେଲେ । କାହିଁକି ସମାଜ ପ୍ରତି ତାଙ୍କର ବିତୃଷ୍ଣା ଆସିଲା ? ଖ୍ରୀ. ୧୯୬୦ ବେଳକୁ ମନେହେଲା ଯେପରି ତାଙ୍କର ଭାବପ୍ରବାହ କ୍ରମଶଃ କ୍ଷୀଣରୁ କ୍ଷୀଣତର ହୋଇ ଶୁଷ୍କ ହୋଇଯାଇଛି । × × × କିନ୍ତୁ ଏହା ନିଶ୍ଚିତ ଯେ ୧୯୬୦ ସାଲ ପୂର୍ବରୁ ସେ ଥିଲେ ଶ୍ରେଷ୍ଠ କବି । ଏହାହିଁ ମୁଁ ଏକ ପ୍ରବନ୍ଧରେ ବମ୍ବେରୁ ପ୍ରକାଶିତ ଏକ ପତ୍ରିକାରେ ଲେଖିଥିଲି । ଗତ କେତେବର୍ଷ ହେଲା ମନେହେଲା ସେ ଜୀବନର କୋଳାହଳରୁ ଅପସରି ଯାଉଛନ୍ତି । ସେ ନିଜେ ଆଉ ଲୋକସମ୍ପର୍କ ରଖିବାକୁ ଆଗ୍ରହୀ ହେଲେ ନାହିଁ । ତାଙ୍କୁ ଯେଉଁଠିକି ନିମନ୍ତ୍ରଣ କଲେ ସେ ଯାଆନ୍ତି । ଉଦାସୀନ ଭାବରେ ଯୋଗ ଦିଅନ୍ତି । ତାଙ୍କର ମନ ଅନ୍ତର୍ମୁଖୀ ହେବାପରି ଜଣାଯାଉଥିଲା ।" (୧୦)

ମାନସିଂହ ମଧ୍ୟ ନିଜେ ସ୍ୱୀକାର କରିଛନ୍ତି—"ଏବେ ମୁଁ ବହୁକାଳ ଧରି ଅପୌତ୍ତଳିକ । ହିନ୍ଦୁ ଦେବଦେବୀଙ୍କର ପ୍ରତିମାଙ୍କୁ ମୁଁ ନମସ୍କାର କରେନା । ମୋର ବର୍ତ୍ତମାନ ଦୃଢ଼ ଧାରଣା ଯେ ଏଇ ପୌତ୍ତଳିକତା ଓ ବ୍ରାହ୍ମଣନିର୍ଭର ସାମାଜିକ ଜୀବନ ପରିତ୍ୟାଗ ନ କଲେ ସାମଗ୍ରିକ ଭାବରେ ହିନ୍ଦୁ ସମାଜ କେବେହେଲେ ସଭ୍ୟ ବା ଉନ୍ନତ ହୋଇପାରିବ ନାହିଁ । କିନ୍ତୁ ସେହି ସୁଦୂର

(୯) ଶୁଣ ସୁନ୍ଦରି ହୃଅନ୍ତି ବିକଳ—ମହାପାତ୍ର ନୀଳମଣି ସାହୁ—ମାନସିଂହ ସ୍ମରଣିକା, ପୃ ୭୫-୭୬

(୧୦) ଆଜନ୍ମ କବି ମାନସିଂହ—ଡକ୍ଟର ହରେକୃଷ୍ଣ ମହତାବ—ମାନସିଂହ ସ୍ମରଣିକା, ପୃ-୨

ବାଲ୍ୟ ଜୀବନରେ ମୁଁ ହିନ୍ଦୁ ଦେବଦେବୀଙ୍କର ଏକାନ୍ତ ଭକ୍ତ ଥିଲି । ଗଣେଶ ଓ ସରସ୍ୱତୀଙ୍କ ସ୍ତୋତ୍ର ମୁଖସ୍ଥ କରି ପ୍ରତ୍ୟହ ପାରାୟଣ କରୁଥିଲି ।"(୧୧) ଏହି ସମୟର କବିତାରେ ମାନସିଂହ ନିଜକୁ ନିରୀଶ୍ୱରବାଦୀ ବୋଲି ପ୍ରମାଣ କରିବାକୁ ଉଦ୍ୟମ କରିଛନ୍ତି । ବୁଦ୍ଧଙ୍କୁ ଉପଲକ୍ଷ୍ୟ କରି ଗୁଣି ଗୁଣି କବିତା ଲେଖିଛନ୍ତି । ତାଙ୍କ କାବ୍ୟ-କଳାର ପୂର୍ବ ସୌକୁମାର୍ଯ୍ୟ କ୍ରମଶଃ ଅବକ୍ଷୟ ଆଡ଼କୁ ଗତି କରିଛି ।

"ଘରସଂସାର ପ୍ରତି ନିର୍ଲିପ୍ତଭାବ ଦେଖି ମୋର ଧାରଣା ଥିଲା ଯେ ସେ କେବେ ଗୃହତ୍ୟାଗ କରି ସନ୍ନ୍ୟାସୀ ହୋଇଯିବେ । × × ବୌଦ୍ଧଧର୍ମ ପ୍ରତି ତାଙ୍କର ବିଶେଷ ଅନୁରାଗ ଥିଲା । ତାଙ୍କ ମତରେ ବୌଦ୍ଧଧର୍ମ ହେଉଛି ଶ୍ରେଷ୍ଠଧର୍ମ । କବି ଶ୍ରୀ ମା ଓ ଅରବିନ୍ଦଙ୍କ ଭକ୍ତ ମଧ୍ୟ । କେତେଥର ପଣ୍ଡିଚେରୀ ବି ଯାଇଛନ୍ତି ।" (ପ୍ରିୟପରମ—ମାନସିଂହ ପତ୍ନୀ, ଶ୍ରୀମତୀ ହେମଲତା ମାନସିଂହ) ସମଗ୍ର ଜୀବନ ଧରି ସେ ଗୁରୁ ଖୋଜି ବୁଲିଛନ୍ତି । କିନ୍ତୁ ତାଙ୍କର ମନୋନୀତ ଗୁରୁ ସେ ପାଇନାହାନ୍ତି । ସେଥିପାଇଁ ମହାପାତ୍ର ନୀଳମଣି ସାହୁ କହିଛନ୍ତି—"ଆପଣ ବୁଦ୍ଧଙ୍କ ପ୍ରେମରେ ପଡ଼ି ହିନ୍ଦୁଧର୍ମ ତ୍ୟାଗ କରିଥିଲେ । ମାତ୍ର ବେଦ, ଉପନିଷଦ ଓ ଗୀତାଲାଗି ହିନ୍ଦୁ ଋଷିମାନଙ୍କୁ ପୂଜା କରୁଥିଲେ । × × ଆପଣ ମଧୁ ବାରିଷ୍ଟର ଓ ଉତ୍କଳମଣି ଗୋପବନ୍ଧୁଙ୍କ ମାର୍ଗରେ ଥିଲେ ଓଡ଼ିଆ । ଗାନ୍ଧୀ ଓ ରବୀନ୍ଦ୍ରଙ୍କ ମାର୍ଗରେ ଥିଲେ ଭାରତୀୟ । ଟଲଷ୍ଟୟ, ରସେଲ ଓ ସୋଭେକନ୍ ଆଦିଙ୍କ ଧାରାରେ ଥିଲେ ଆନ୍ତର୍ଜାତିକ ମାନବବାଦୀ ଏବଂ ଶେଷରେ ଶ୍ରୀ ଅରବିନ୍ଦ, ଶ୍ରୀମାଙ୍କ ମାର୍ଗରେ ଥିଲେ ମହାଜାଗତିକ ଓ ଅତିମାନବବାଦୀ ।" (୧୨)

କବି ମାୟାଧର ମାନସିଂହ ଦୀର୍ଘ ତିରିଶ ବର୍ଷ ଧରି ନିଜର ବଳିଷ୍ଠ ଲେଖନୀ ସାହାଯ୍ୟରେ ଓଡ଼ିଆ ସାହିତ୍ୟକୁ ଯେପରି ଋଦ୍ଧିମନ୍ତ କରିଛନ୍ତି ; ସେପରି ଉଦାହରଣ ଖୁବ୍ ବିରଳ । ଉତ୍କଳ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଜ୍ଞାନକୋଷ ସଂକଳନ ତାଙ୍କ ଜୀବନରେ ଶେଷ କୃତି । ମାନସିଂହ ଲେଖନୀ ଅଜସ୍ରସ୍ରାବୀ । ଜୀବନସାରା ସେ ଲେଖିଛନ୍ତି । ମୁଖ୍ୟତଃ ସେ କବି । ତାପରେ ନାଟ୍ୟକାର, ପ୍ରାବନ୍ଧିକ ବା ସମାଲୋଚକ । 'ଅନ୍ୱେଷଣ' ନାମକ ଖଣ୍ଡିଏ ମାତ୍ର ଉପନ୍ୟାସ ମଧ୍ୟ ସେ ଲେଖିଛନ୍ତି ।

ସେ ଜଣେ ଜ୍ଞାନତପସ୍ୱୀ, ଗବେଷକ ଓ ବିଶ୍ୱକୋଷକାର । ଯେପରି ଭାବରେ ତାଙ୍କୁ ଚିହ୍ନଣ କରାଗଲେ ମଧ୍ୟ ମାନସିଂହ ଥିଲେ ଅନବଦ୍ୟ । ସ୍ୱକୀୟତାରେ

(୧୧) ମୁଁ କାହିଁକି ଲେଖେ—ମାନସିଂହ ସୃଷ୍ଟି ସମୀକ୍ଷା, ପୃ-୩

(୧୨) ଗୁଣ ସୁନ୍ଦର ହିଅନ୍ତୁ ବିକଳ—ମହାପାତ୍ର ନୀଳମଣି ସାହୁ— ମାନସିଂହ ସ୍ମରଣିକା, ପୃ-୬୧

ଅପୂର୍ବ । "ମାନସିଂହଙ୍କ ପୂର୍ଣ୍ଣ ରୂପ ତାଙ୍କ ରଚନା ମଧ୍ୟରେ ବ୍ୟାପ୍ତହୋଇ ରହିଅଛି ; ଯେପରି ସୂର୍ଯ୍ୟ ବ୍ୟକ୍ତ ହୁଅନ୍ତି ଚତୁର୍ଦ୍ଦିଗରେ ନିକ୍ଷିପ୍ତ ରଶ୍ମି ମଧ୍ୟରେ । ସେ କେତେବେଳେ ପ୍ରେମିକ, କେତେବେଳେ ପ୍ରଣୟୀ, କେତେବେଳେ ସ୍ୱଦେଶ-ବତ୍ସଳ, ପ୍ରତୀଚ୍ଚ ପୂଜାରୀ, କେତେବେଳେ ଦାର୍ଶନିକ ଭକ୍ତ, କେତେବେଳେ ପ୍ରକୃତି ରସିକ, ଯୌବନ ପୂଜାରୀ, କେତେବେଳେ ସୌନ୍ଦର୍ଯ୍ୟ ବିଳାସୀ, ମାନବପ୍ରେମୀ, ସଂସ୍କାରକ, କେତେବେଳେ ସ୍ୱାଧୀନଚେତା, ସ୍ୱଚ୍ଛନ୍ଦବିହାରୀ, କେତେବେଳେ ଶିଳ୍ପୀ ଆତ୍ମନିଷ୍ଠ । ବହୁ ବିଭବରେ ତାଙ୍କର ଆତ୍ମାର ବିସ୍ତୃତ ରୂପ ଦିଶେ । ଏବେ ବି ସେ ଆଚ୍ଛନ୍ନ କରି ରହିଛନ୍ତି ସାହିତ୍ୟର ଅନେକ ଦିଗ୍‌ବଳୟ, ସଂସାରରୁ ତାଙ୍କ ରକ୍ତମାଂସର ଶରୀର ଅପସରି ଗଲେ ବି ।" (୧୩)



(୧୩) ମାନସିଂହଙ୍କ ଜୀବନୀ ଓ ଜୀବନ—ଡଃ କୃଷ୍ଣବିହାରୀ ଦାଶ, ମାନସିଂହ ପରିକ୍ରମା, ପୃ-୨୫୨

# ଉପସଂହାର

## (କ) ନାମାନୁକ୍ରମଣିକା


ଅ

ଅଜିତ୍ କୁମାର ଘୋଷ
ଅନନ୍ତ ପଟ୍ଟନାୟକ
ଅବକାଶ ଚନ୍ଦ୍ରା
ଅନ୍ନଦାଶଙ୍କର ରାୟ
ଅଭିମନ୍ୟୁ ସାମନ୍ତସିଂହାର
ଅଗାଧୁ ନାୟକ
ଅକ୍ଷତ
ଅରବିନ୍ଦ
ଅନନ୍ତ ଦାସ
ଅଭିଯାନ
ଅନ୍ୱେଷଣ

ଆ

ଆଇନ୍‌ଷ୍ଟାଇନ୍
ଆଲେଖିକା
ଆଗାମୀ

ଇ

ଇନ୍ଦ୍ରଧନୁ

ଉ

ଉତ୍କଳ ସାହିତ୍ୟ
ଉତ୍କଳ ମଧୁପ
ଉତ୍କଳ ଦୀପିକା
ଉତ୍କଳ ପ୍ରଭା
ଉପନିଷଦ
ଉପେକ୍ଷିତା
ଉଷା
ଉତ୍କଳ ବନ୍ଦନା
ଉର୍ବଶୀ
ଉଷାପରିଣୟ

ଏ

ଏନସାଇକ୍ଲୋପିଡ଼ିଆ

ଓ

ଓ୍ୱାର୍ଡସ୍‌ଓ୍ୱାର୍ଥ
ଓଡ଼ିଆ ସାହିତ୍ୟର ଇତିହାସ
ଓଡ଼ିଆ ସାହିତ୍ୟ ଏକାଡ଼େମୀ

## କ

ଡ. କୁଞ୍ଜବିହାରୀ ଦାସ
କାଳିନ୍ଦୀ ଚରଣ ପାଣିଗ୍ରାହୀ
କବି ଓ କବିତା
କମଳାୟନ
କାଳିଦାସ
କାବ୍ୟ ଓ କଳାକାର
କୁନ୍ତଳା କୁମାରୀ
କାଗିକବିତା
କୋଣାର୍କେ
କପିଳାସ
କଳିକା
କେଦାରଗୌରୀ
କାଳିଜାଇ
କିଶୋର କବିତା
କୀଟସ
କୃପାସିନ୍ଧୁ ମିଶ୍ର
କୃଷ୍ଣ
କୁନ୍ତଳ
କୋଣାର୍କ
କାଞ୍ଚିକାବେରୀ
କବିସୂର୍ଯ୍ୟ ବଳଦେବ ରଥ
କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ
କିଶୋରଚନ୍ଦ୍ର ଜଗଦ୍ଦେବ
କାମପାଳ ମିଶ୍ର
କୃଷ୍ଣପ୍ରସାଦ ବସୁ
କାଳିଚରଣ ପଟ୍ଟନାୟକ
କସ୍ତୁରିକା
କଳରେଇ ଫୁଲ
କଳିଙ୍ଗ କବି

## ଖ

ଖାରବେଳ

## ଗ

ଗୋଦାବରୀଶ ମିଶ୍ର
ଗାନ୍ଧିଜୀ
ଗୋପବନ୍ଧୁ ଦାସ
ଗୁରୁପ୍ରସାଦ ମହାନ୍ତି
ଗଙ୍ଗାଧର ମେହେର
ଗୌରୀଶଙ୍କର ରାୟ
ଗୋପାଳବଲ୍ଲଭ ଦାସ
ଗାଲମାଧବ
ଗୀତରେଣୁ
ଗୋପୀନାଥ ମହାନ୍ତି
ଗୋପାଳକୃଷ୍ଣ ରଥ
ଗୀତାଞ୍ଜଳି

## ଚ

ଚିତ୍ରାଙ୍ଗଦା
ଚିନ୍ତାମଣି ଆଚାର୍ଯ୍ୟ
ଚିଲିକା
କବିଶେଖର ଚିନ୍ତାମଣି ମହାନ୍ତି
ଚିନ୍ତାମଣି ବେହେରା
ଚନ୍ଦ୍ରଭାଗା
ଚିତ୍ରଣିକା
ଚନ୍ଦ୍ର ଓ ତାରା

**ଜ**

ଜଗନ୍ନାଥ ଦାସ
ଜୀବନ ଚିତା
ଯଯାତିକେଶରୀ
ଜୟଦେବ
ଜଗନ୍ନାଥ ପଣି
ଜ୍ୟୋତ୍ସ୍ନା

**ତ**

ତଅପୋଇ

**ଦ**

ଦାନ୍ତେ
ଦେଶର ଡାକ
ଦୁର୍ଗାମାଧବ ମିଶ୍ର

**ଧ**

ଧର୍ମପଦ
ଧୂପ

**ନ**

ନନ୍ଦକିଶୋର ବଳ
ନବଯୁଗ ସାହିତ୍ୟ ସଂସଦ
ନୀଳକଣ୍ଠ ଦାସ
ନବକୃଷ୍ଣ ଚୌଧୁରୀ
ଡଃ. ନଟବର ସାମନ୍ତରାୟ
ନିକ୍ୱଣ
ନନ୍ଦକେଶରୀ
ନାବକେଳି
ନରସିଂହ ଦେବ
ନଷ୍ଟନୀଡ଼
ନିତ୍ୟାନନ୍ଦ ମହାପାତ୍ର
ନବଭାରତ
ଡଃ. ନିତ୍ୟାନନ୍ଦ ଶତପଥୀ
ଡଃ. ନରେନ୍ଦ୍ରନାଥ ମିଶ୍ର
ନନ୍ଦଲା
ନଳାଙ୍ଗ

**ପ**

ପ୍ରାଣନାଥ ପଟ୍ଟନାୟକ
ପ୍ରଗତିବାଦୀ
ପଦ୍ମଚରଣ ପଟ୍ଟନାୟକ
ପାଷାଣୀ
ପ୍ରଣୟିନୀ
ପଲ୍ଲୀଗୀତି ସଞ୍ଚୟନ
ପଦ୍ମିନୀ
ପ୍ରିୟଦର୍ଶୀ
ପ୍ରାଣକୃଷ୍ଣ ସାମଲ
ପୀତାମ୍ବର ପ୍ରଧାନ
ପୂଜାରଣୀ
ପ୍ରତିଭା ଶତପଥୀ

**ଫ**

ଫ୍ଲବାର୍ଟ
ଫ୍ରଏଡ଼
ଫକୀରମୋହନ

## ବ

ବାଜି ରାଉତ
ବିବେକାନନ୍ଦ
ବ୍ରଜନାଥ ବଡ଼ଜେନା
ବନ୍ଦୀର ଆତ୍ମକଥା
ବିଜୁଳି
ବିବେକୀ
ବୈକୁଣ୍ଠ ପଟ୍ଟନାୟକ
ବାଇରନ୍
ବିଦାୟ ଅଭିଶାପ
ବାପୁ ତର୍ପଣ
ବଉଳା ଗାଈ ଗୀତ
ବ୍ରତକଥା
ବୋଦ୍‌ଲେୟାର
ବାଇରନ୍
ବାଲ୍ମୀକି
ବ୍ୟାସ
ବୁଦ୍ଧଦେବ
ବାରବାଟୀ
ବୈଷ୍ଣବ ଚରଣ ପାଣି
ବାଳକୃଷ୍ଣ ମହାନ୍ତି
ବାଲ୍ମୀକି ପ୍ରତିଭା
ବିଶ୍ୱଭାରତୀ
ବିନୋଦ ନାୟକ

## ଭ

ଭଗବତୀ ଚରଣ ପାଣିଗ୍ରାହୀ
ଭାଗବତ
ଭୁବନାନନ୍ଦ ଦାସ
ଭାସ
ଭବଭୂତି
ଭିକାରୀ ଚରଣ ନାୟକ

## ମ

ଡ଼ଃ. ମାୟାଧର ମାନସିଂହ
ମଧୁସୂଦନ ରାଓ
ମାୟାଦେବୀ
ମହାଯାତ୍ରା
ମହାତ୍ମା ଗାନ୍ଧୀ
ମିଲ୍‌ଟନ୍
ମାୟୋକୋଭସ୍କି
ମେଘଦୂତ
ମାଟିବାଣୀ
ମହାପାତ୍ର ନୀଳମଣି ସାହୁ
ମୋପାଁସା

## ଯ

ଯଯାତିକେଶରୀ
ଯାଦୁଘର
ଯୀଶୁ ଖ୍ରୀଷ୍ଟ

## ର

ରବୀନ୍ଦ୍ରନାଥ
ରମାକାନ୍ତ ରଥ
ରାଧାନାଥ ରାୟ
ରାମଶଙ୍କର ରାୟ
ରୁକ୍ମଣୀ ବିବାହ
ରଘୁନାଥ ପରିଚ୍ଛା

ରାମଚନ୍ଦ୍ର ଭଞ୍ଜ
ରାମମୋହନ ରାୟ
ରେବା ରାୟ
ରୁଦ୍ର ସୁଧାନିଧି
ରାଧାମୋହନ ଗଡ଼ନାୟକ
ରାଜକବି ଉପେନ୍ଦ୍ର
ରଘୁବଂଶ
ରାଧାଶ୍ୟାମ ବେହୁରା

## ଲ

ଲାବଣ୍ୟବତୀ
ଲଳିତ କୁମାର ଘୋଷ
ଲାଲା ରାମନାରାୟଣ

## ଶ

ଶୁଭଦୃଷ୍ଟି
ଶିକ୍ଷାବିତ୍‌ର ଗାଥା
ଶାଜାହାନ
ଶାନ୍ତିଶିଖା
ଶିବେଇ ସାନ୍ତରା
ଶିଶୁପାଳ ବଧ
ଶ୍ରୀମା
ଶ୍ରୀଚରଣ

## ସ

ସଚ୍ଚିଦାନନ୍ଦ ରାଉତରାୟ
ସୁନନ୍ଦ କର
ସେଦିନର କବିତା
ସଚ୍ଚିଦାନନ୍ଦ ତ୍ରିଭୁବନଦେବ
ସାରଳା ଦାସ
ସମ୍ବାଦ ବାହିକା
ସତ୍ୟବାଦୀ
ସ୍ୱରାଜ୍ୟାଶ୍ରମ
ସେଲୀ
ସୋରେକନ୍
ସାର୍ ଫିଲିପ୍ ସିଡ୍‌ନୀ
ସିନ୍ଧୁ ଓ ବିନ୍ଦୁ
ସାଧବ ଝିଅ
ସୁଭଦ୍ରା ହରଣ
ସ୍ୱର୍ଣ୍ଣଯୁଗର ସନ୍ଧ୍ୟା
ସୀତାକାନ୍ତ ମହାପାତ୍ର
ସବୁଜରୁ ସାଂପ୍ରତିକ
ସବୁଜଯୁଗ ଓ କାବ୍ୟ ସଞ୍ଚୟନ
ସବୁଜ କବିତା

## ହ

ହରେକୃଷ୍ଣ ମହତାବ
ହୋମାରଲେନ୍
ହେମଶସ୍ୟ
ହେମଚନ୍ଦ୍ର
ହେମପୁଷ୍ପ
ହେମଲତା ମାନସିଂହ

## କ୍ଷ

ଡଃ. କ୍ଷେତ୍ରବାସୀ ନାୟକ ।

●

## (ଖ) ସହାୟକ ଗ୍ରନ୍ଥସୂଚୀ

ଆଧୁନିକ କାବ୍ୟ ଜିଜ୍ଞାସା ; ଚନ୍ଦ୍ରକଳା—ଶ୍ରୀ ଦାଶରଥି ଦାସ, ଅଗ୍ରଦୂତ ୧୯୭୪ ।

ଆଧୁନିକ ଓଡ଼ିଆ କାବ୍ୟଧାରା (ଆଦିଯୁଗ)—ଡଃ ନରେନ୍ଦ୍ରନାଥ ମିଶ୍ର (ବିଶ୍ୱଭାରତୀ), ୧୯୬୪ ।

ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ—ଡଃ. କ୍ଷେତ୍ରବାସୀ ନାୟକ, ପୁସ୍ତକ ଭଣ୍ଡାର, ୧୯୭୭ ।

ଓଡ଼ିଆ ସାହିତ୍ୟର କ୍ରମବିକାଶ—ସୁରେନ୍ଦ୍ର ମହାନ୍ତି—ଅଗ୍ରଦୂତ ପ୍ରକାଶନୀ, ୧୯୬୮ ।

ଓଡ଼ିଆ ନାଟ୍ୟ ସାହିତ୍ୟ ଓ ରାମଶଙ୍କର ରାୟ—ଡଃ. କୁଳମଣି ରାଉତ, ଓଡ଼ିଶା ବୁକ୍‌ଷ୍ଟୋର, ୧୯୮୩ ।

ଓଡ଼ିଆ ଗୀତିକାବ୍ୟ—ଡଃ. ଜାନକୀବଲ୍ଲଭ ମହାନ୍ତି, ଗ୍ରନ୍ଥମନ୍ଦିର, ୧୯୬୬

ଓଡ଼ିଆ ସାହିତ୍ୟର ଇତିହାସ—ଡଃ. ମାୟାଧର ମାନସିଂହ, ଗ୍ରନ୍ଥମନ୍ଦିର, ୧୯୬୭

ଓଡ଼ିଶା ଇତିହାସ—ଡଃ. ହରେକୃଷ୍ଣ ମହତାବ, ପ୍ରଜାତନ୍ତ୍ର ପ୍ରଚାର ସମିତି, ୧୯୫୮ ।

କାବ୍ୟ ସମ୍ବାଦ—ଶ୍ରୀ ଦାଶରଥୀ ଦାସ, ଫ୍ରେଣ୍ଡସ୍ ପବ୍ଲିଶର୍ସ, ୧୯୭୩ ।

କାବ୍ୟ ଓ କଳାକାର—ଶ୍ରୀ ଚନ୍ଦ୍ରାମଣି ବେହେରା, ଆଲୋକ ସାହିତ୍ୟ ପ୍ରତିଷ୍ଠାନ, ୧୯୬୬ ।

କୁନ୍ତଳା କୁମାରୀ ଜୀବନ ଚରିତ—ଶ୍ରୀ ଚନ୍ଦ୍ରଧର ମହାପାତ୍ର, ଗ୍ରନ୍ଥମନ୍ଦିର, ୧୯୭୨ ।

କାନ୍ତ ସାହିତ୍ୟମାଳା (ପ୍ରଥମ ଖଣ୍ଡ)—ଓଡ଼ିଶା ବୁକ୍ ଏମ୍ପୋରିୟମ୍, ୧୯୬୪ ।

କଳ୍ପନାର ଅଭିଷେକ—ଡଃ. ପ୍ରତିଭା ଶତପଥୀ, ଓଡ଼ିଶା ବୁକ୍‌ଷ୍ଟୋର, ୧୯୮୨ ।

ଗୋଦାବରୀଶ ଗ୍ରନ୍ଥାବଳୀ—କଟକ ଷ୍ଟୁଡେଣ୍ଟ ଷ୍ଟୋର, ୧୯୬୦ ।

ଦାରୁଦେବତା—ଡଃ. ବେଣୀମାଧବ ପାଢ଼ୀ, କଟକ ଷ୍ଟୁଡେଣ୍ଟ ଷ୍ଟୋର, ୧୯୭୪ ।

ନାଟକ ବିଚାର—ଅଧ୍ୟାପକ ସର୍ବେଶ୍ୱର ଦାସ, ଉତ୍କଳ ବିଶ୍ୱବିଦ୍ୟାଳୟ, ୧୯୫୬ ।

ନୀଳକଣ୍ଠ ଗ୍ରନ୍ଥାବଳୀ—କଟକ ଷ୍ଟୁଡେଣ୍ଟ ଷ୍ଟୋର, ୧୯୬୩ ।

ପଲ୍ଲୀଗୀତି ସଞ୍ଚୟନ—ସଂଗ୍ରାହକ : ଡଃ କୁଞ୍ଜବିହାରୀ ଦାଶ, ବିଶ୍ୱଭାରତୀ, ଶାନ୍ତି-ନିକେତନ, ୧୯୫୪ ।

ମାନସିଂହ ଗ୍ରନ୍ଥାବଳୀ (ପ୍ରଥମ, ଦ୍ୱିତୀୟ ଏବଂ ତୃତୀୟଖଣ୍ଡ)—ଗ୍ରନ୍ଥମନ୍ଦିର, ୧୯୬୨ ।
ମାନସିଂହ ପରିକ୍ରମା— ଓଡ଼ିଶା ପୂଜ୍ୟ ପୂଜା ସଂସଦ, କଟକ-୪, ୧୯୭୯ ।
ମାନସିଂହ ସୃଷ୍ଟି ସମୀକ୍ଷା—ଓଡ଼ିଶା ବୁକ୍‌ଷ୍ଟୋର, ୧୯୬୮ ।
ମାନସିଂହ ସ୍ମରଣିକା—ଏକାମ୍ର ଥିଏଟର୍ସ, ଭୁବନେଶ୍ୱର, ୧୯୭୩ ।
ଶିକ୍ଷାବନ୍ଦର ଗାଥା—ଓଡ଼ିଶା ବୁକ୍‌ଷ୍ଟୋର, ୧୯୬୫ ।
ସବୁଜରୁ ସାଂପ୍ରତିକ—ଡ଼ଃ. ନିତ୍ୟାନନ୍ଦ ଶତପଥୀ—ଗ୍ରନ୍ଥମନ୍ଦିର, ୧୯୭୯ ।
ସବୁଜକଥା (୧ମ ସଂସ୍କରଣ)—ଡ଼ଃ. ଦେବୀପ୍ରସନ୍ନ ପଟ୍ଟନାୟକ ।

## ବଙ୍ଗଳା ପୁସ୍ତକ

ରବୀନ୍ଦ୍ର ପ୍ରତିଭା—କାନାଇ ସାମନ୍ତ, ଇଣ୍ଡିଆନ୍ ଆସୋସିଏଟେଡ୍ ପବ୍ଲିଶିଂ କମ୍ପାନୀ ପ୍ରାଇଭେଟ ଲିମିଟେଡ୍, କଲିକତା ।
ରବୀନ୍ଦ୍ର ସାହିତ୍ୟେର ଭୂମିକା—ନିହାରରଞ୍ଜନ ରାୟ, ଜେ. ଏନ୍. ରାୟ କଲିକତା ।
ସାହିତ୍ୟେର ପଥେ—ରବୀନ୍ଦ୍ରନାଥ ଠାକୁର ।
କଲ୍ଲୋଳ ଯୁଗ—ଅଚିନ୍ତ୍ୟ କୁମାର ସେନ୍‌ଗୁପ୍ତ, କଲିକତା, ୧୯୭୨ ।
ଆଧୁନିକ ବାଂଲା ଗୀତିକବିତା—ଜୀବେନ୍ଦ୍ର ସିହ୍ନାରାୟ, ୧ମ ସଂସ୍କରଣ ।
ରବୀନ୍ଦ୍ର ଜୀବନକଥା—ଆନନ୍ଦ ପବ୍ଲିଶର୍ସ, ପ୍ରାଇଭେଟ ଲିମିଟେଡ୍, କଲିକତା ।
ରବୀନ୍ଦ୍ର ସାହିତ୍ୟ ବିଚିତ୍ରା—ପ୍ରମଥନାଥ ବିଶି, ଓରିଏଣ୍ଟ ବୁକ୍ କମ୍ପାନୀ; କଲିକତା ।

## ହିନ୍ଦି ପୁସ୍ତକ

ଛାୟାବାଦ ଯୁଗ—ଶ୍ରୀ ଶମ୍ଭୁନାଥ ସିଂ, ବନାରସ, ୧୯୫୨
ପ୍ରଗତିବାଦ ଔର ସମାନ୍ତର ସାହିତ୍ୟ—ରେଖା ଅବସ୍ଥି
ସୌନ୍ଦର୍ଯ୍ୟତତ୍ତ୍ୱ ନିରୂପଣ—ଡ଼ଃ ଏସ୍. ଟି. ନରସିଂହାଚାରୀ, ୩୯, କମଲାନଗର, ନୂଆଦିଲ୍ଲୀ ।
ମହାଦେବୀକା କାବ୍ୟ ବୈଭବ—ଶ୍ରୀ ରମେଶଚନ୍ଦ୍ର ଗୁପ୍ତ, ୧୯୬୮, ନୂଆଦିଲ୍ଲୀ ।
ଛାୟାବାଦ କବିକୀ ପ୍ରଗତିଶୀଳ ଚେତନା—ଡ଼ଃ. ସନ୍ତୋଷ କୁମାର ତିଓ୍ୱାରୀ, ୧୯୭୪, ନୂଆଦିଲ୍ଲୀ ।

## ଇଂରାଜୀ ପୁସ୍ତକ

1. Biographia Literaria—S. T. Coleridge, Oxford, 1907.
2. English Romantic Poets—Edited by M. H. Abrahms, Modern Essays and Criticism, New York, 1960.
3. Classic, Romantic and Modern—J. Banzur Lihle Brown and Company, 1961
4. A Dictionary of Literary Terms—Principal A. N. Gupta and Professor Satis Gupta, Prakash Book Depot, Badabazar, U. P. 1976.
5. Encyclopedia of Britanica—Vol. 7 and 10, 1969.
6. Contemporary Indian Literature—1970.
7 History of English Literature—by Edward Albert, 4th Edition.
8. Literary Essays Publisher–S. Bhattacharya, 1977.
9. The Letters of John Keats 1814-1821, Vol. 1—Harvard University Press.
10. The Age of Words Worth—London : 1914 by Herford C. H.

